# ପ୍ରଫେସର କୃଷ୍ଣ ଚରଣ ସାହୁ

## ୧୯୨୯-୧୯୯୭

- ସମ୍ପାଦନା -

ସଂଘମିତ୍ରା ମିଶ୍ର
ବିରାଜ ମୋହନ ଦାସ
ବିଜୟଲକ୍ଷ୍ମୀ ସ୍ୱାଇଁ
ଉଦୟ ନାଥ ସାହୁ
ପ୍ରସନ୍ନ ମହାନ୍ତି

- ଦିଗ୍‌ଦର୍ଶକ -

ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ
ପ୍ରଫେସର ଯତୀନ୍ଦ୍ରମୋହନ ମହାନ୍ତି
ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ

ପ୍ରଫେସର କୃଷ୍ଣ ଚରଣ ସାହୁ ସ୍ମୃତି ପରିଷଦ
ଭୁବନେଶ୍ୱର

Digitized by srujanika@gmail.com

ପ୍ରଫେସର କୃଷ୍ଣ ଚରଣ ସାହୁ ସ୍ମୃତି ସଭା
ତା : ୧୪ । ୪ । ୯୭ ରିଖ
ଅବସରରେ ପ୍ରକାଶିତ


ମୁଦ୍ରଣ :

ସିଟି ପ୍ରିଣ୍ଟର୍ସ
ଆଇ.ଆର.ସି.ଭିଲେଜ୍, ଭୁବନେଶ୍ୱର - ୧୫


Digitized by srujanika@gmail.com

# ସାରସ୍ୱତ ସାଧକ କୃଷ୍ଣ ଚରଣ

ଡଃ ସଂଘମିତ୍ରା ମିଶ୍ର

ଜଣେ ଶିକ୍ଷାବିତ୍‌ର ଜୀବନଗାଥା ଗୋଟାଏ ଜାତିର ମାର୍ଗ ନିୟନ୍ତ୍ରଣ କରିପାରେ । ଶିକ୍ଷାବିତ୍ ଏକ ଅନୁଷ୍ଠାନ । ସେ ସମୟର ସ୍ପଷ୍ଟ ପ୍ରତିବିମ୍ବ ଓ ଜୀବନ୍ତ ଉଦାହରଣ-ଡଃ କୃଷ୍ଣଚରଣ ସାହୁଙ୍କ ଜୀବନୀ, କୃତି ଓ କୃତିତ୍ୱକୁ ଏହି ପର୍ଯ୍ୟାୟରେ ମୂଲ୍ୟାୟନ କରାଯାଇପାରେ । ଡଃ ସାହୁ ଜଣେ ନୀରବ ସାଧକ । 'ଗବେଷକ' କହିଲେ ଯେଉଁ ଧର୍ମସଂପନ୍ନ ପ୍ରାଜ୍ଞ, ନିରାଡ଼ମ୍ବର ବ୍ୟକ୍ତିତ୍ୱଟିଏ ଆଖି ସାମନାକୁ ଆସିଯାଏ, କୃଷ୍ଣଚରଣ ତାହାର ମୂର୍ତ୍ତିମନ୍ତ ବିଗ୍ରହ । ଗବେଷଣା, ପୋଥି ସଂପାଦନା, ସୃଜନଶୀଳ ସମାଲୋଚନା ତଥା ସାହିତ୍ୟର ଏକାଧିକ ଦିଗରେ ଲେଖନୀ ଚାଳନା କରିଥିବା ଏହି ପ୍ରତିଭା ଓଡ଼ିଆ ସାହିତ୍ୟର ଇତିହାସରେ ବିଶିଷ୍ଟ ସ୍ଥାନର ଅଧିକାରୀ ।

**ପାରିବାରିକ ଜୀବନ:**

ଅବିଭକ୍ତ କଟକ ଜିଲ୍ଲାର ଗୋବିନ୍ଦପୁର ଥାନା ଅନ୍ତର୍ଗତ ନାଟି ଗ୍ରାମରେ ୧୯୨୯ ମସିହା ଏପ୍ରିଲ ମାସ ୧୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ଏହି ବରେଣ୍ୟ ସ୍ରଷ୍ଟା ଏବଂ ସାହିତ୍ୟ ସାଧକ । ତାଙ୍କର ପିତାଙ୍କ ନାମ ନଟବର ସାହୁ ଓ ମାତାଙ୍କ ନାମ ଅଲ୍ୟଳ କୁମାରୀ ଦେବୀ । ଚାରିଭାଇ ଓ ତିନିଭଉଣୀଙ୍କ ମଧ୍ୟରେ କୃଷ୍ଣ ଚରଣ ଥିଲେ ଚତୁର୍ଥ ସନ୍ତାନ । ତାଙ୍କ ପରିବାରରେ ଜେଜେବାପା, ବାପା ଓ କକା ସମସ୍ତେ ଶିକ୍ଷକତା କରୁଥିଲେ । ସେଇଥିପାଇଁ ଗ୍ରାମବାସୀମାନଙ୍କ ମଧ୍ୟରେ ତାଙ୍କ ଘର 'ମାଷ୍ଟର ଘର' ନାମରେ ପରିଚିତ ଥିଲା । ୧୯୪୬ ମସିହାରେ ତତ୍‌କାଳୀନ ସାମାଜିକ ପ୍ରଥାନୁଯାୟୀ ସେ ତିର୍ତ୍ତୋଲ ମୂଳଗାଁର ବରଜୁ ପ୍ରଧାନଙ୍କ କନ୍ୟା ଶ୍ରୀମତୀ ସରଳା ଦେବୀଙ୍କ ପାଣି ଗ୍ରହଣ କରିଥିଲେ । ପାଞ୍ଚୋଟି କନ୍ୟା ଓ ଜଣେ ପୁତ୍ର ସନ୍ତାନଙ୍କୁ ନେଇ ଗଢ଼ିଚାଲିଥିଲା ତାଙ୍କ ଜୀବନ । ଅବସର ଗ୍ରହଣ ବେଳକୁ କିଛିଦିନ ଧରି ଅସୁସ୍ଥଥିଲେ ସରଳା ଦେବୀ । ପରିଶେଷରେ କୃଷ୍ଣ ଚରଣଙ୍କୁ ଶୋକ ସାଗରରେ ଭସାଇ କନ୍ୟା ତଥା ପରିବାରର ଦାୟିତ୍ୱ ଛାଡ଼ି ସେ ଅହ୍ୟରାଣୀ ହୋଇ ଇହଧାମ ତ୍ୟାଗକଲେ ୧୯୯୨ ଜାନୁଆରୀ ୨୪ ତାରିଖ ଦିନ ।

**ଶିକ୍ଷା :**

ନାଟି ଗ୍ରାମର ଏକ ବେରୁଆଁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଆରମ୍ଭ ହୋଇଥିଲା କୃଷ୍ଣ ଚରଣଙ୍କର ପାଠପଢ଼ା । ସେହିବିଦ୍ୟାଳୟରୁ ଉଚ୍ଚ ପ୍ରାଥମିକ ଶିକ୍ଷା ଲାଭ ପରେ ସେ ନାମ ଲେଖାଇଥିଲେ ସିଠାଳ ମାଇନର ସ୍କୁଲରେ । ୧୯୪୨ ମସିହାରେ ମାଇନର୍ ପାଶକରି ସେ କଟକ ଆସିଥିଲେ ମାଟ୍ରିକ୍ ପଢ଼ିବା ପାଇଁ । କଟକ ଉଚ୍ଚ ବିଚାରାଳୟରେ ମୋହରୀର କାମ କରୁଥିବା ତାଙ୍କର



Digitized by srujanika@gmail.com

ଜଣେ ପିଉସାଙ୍କଘରେ ରହି ସେ ପି.ଏମ୍ ଏକାଡ଼େମୀରେ ମ୍ୟାଟ୍ରିକ୍ ପଢ଼ି, ଦ୍ୱିତୀୟ ଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍ କଲେ । ଗଣିତକୁ ଅତିରିକ୍ତ ପାଠ୍ୟ ଭାବରେ ସେକେବଳ ନେଇ ନଥିଲେ ସେଥିରେ ମଧ୍ୟ ନିଜର ଦକ୍ଷତା ପ୍ରତିପାଦନ କରି ପାରିଥିଲେ । ଉଚ୍ଚଶିକ୍ଷା ଲାଭ ନିମିତ୍ତ ପୋଷଣ କରିଥିବା ଆଶାକୁ ଚରିତାର୍ଥ କରିବା ପାଇଁ ତାଙ୍କୁ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିଥିଲା । ଏହି ପରିଶ୍ରମ ତାଙ୍କ ମନୋବଳକୁ ବଢ଼ାଇବା ସଙ୍ଗେ ସଙ୍ଗେ ତାଙ୍କୁ ଭବିଷ୍ୟତରେ ଏକ ବଳିଷ୍ଠ ତଥା ଉଦାର ବ୍ୟକ୍ତି ଭାବରେ ପ୍ରତିଷ୍ଠିତ କରିବାରେ ସହାୟକ ହୋଇଥିଲା । ରେଭେନ୍‌ସା କଲେଜର ଓଡ଼ିଆ ସମ୍ମାନ ଶ୍ରେଣୀର ସ୍ନାତକ ଛାତ୍ରଥିବାବେଳେ ସେ ତେଲେଙ୍ଗା ବଜାରରେ ଥିବା ଅନାମଧେୟ ହୋଟେଲର ପଛପଟେ ଥିବା ଗୋଟିକିଆ ଘରେ ଭଡ଼ାରେ ରହୁଥିଲେ । ୧୯୫୦ରେ ଓଡ଼ିଆ ସମ୍ମାନ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀଲାଭ କରି ସେ ସ୍ନାତକ ଉପାଧି ହାସଲ କରିବା ପରେ ସେହି ବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଶ୍ରେଣୀରେ ନାମ ଲେଖାଇଲେ । ୧୯୫୨ ମସିହାରେ ସେ ଦ୍ୱିତୀୟ ଶ୍ରେଣୀ ଲାଭ କରି ଉତ୍ତୀର୍ଣ୍ଣ ହେଲେ ।

୧୯୫୧ ଛାତ୍ର ଆନ୍ଦୋଳନ ସମୟରେ କୃଷ୍ଣଚରଣ ଓଡ଼ିଶାର ରାଜନୀତି ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇଥିଲେ । ପାଠପଢ଼ା ଶେଷ ଓ ପରୀକ୍ଷା ଫଳ ବାହାରିବା ପୂର୍ବରୁ ସେ ଜଗତସିଂହପୁର ନିକଟସ୍ଥ କାଦୁଅପଡ଼ାର ଗାନ୍ଧିବ୍ରହ୍ମ ବିଦ୍ୟାପୀଠରେ ୩ । ୪ ମାସ ଶିକ୍ଷକତା କରିଥିଲେ । ପରେ ୧୯୫୨ ଡିସେମ୍ବର ମାସରେ ସେ ଅଧ୍ୟାପକ ଚାକିରିରେ ଯୋଗଦେବା ପାଇଁ ରାଞ୍ଚିଗଲେ । ଓଡ଼ିଆ ଅଧ୍ୟାପକ କୃଷ୍ଣଚରଣ । ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହକରି ଯଥେଷ୍ଟ ଅଭିଜ୍ଞତାଅର୍ଜନ କରିଥିଲେ । ରେଭେନ୍‌ସାରେ ପଢୁଥିବାବେଳେ ପ୍ରଫେସର ବିଧୂଭୂଷଣ ଦାସ, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ, ପ୍ରଭୃତିଙ୍କର ବ୍ୟକ୍ତିତ୍ୱ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ତାଙ୍କର ବନ୍ଧୁ ସଂଖ୍ୟା ଯଥେଷ୍ଟ ହେଲେ ହେଁ ସେମାନଙ୍କ ମଧ୍ୟରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି, ପଦାର୍ଥ ବିଜ୍ଞାନ ପ୍ରଫେସର ବିଭୂତି ଭୂଷଣ ଦେଓ (ପୂର୍ବତନ କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ), ଭୂଗୋଳବିତ୍ ପ୍ରଫେସର ବିଚିତ୍ରାନନ୍ଦ ସିହ୍ନା, ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷା ନୃତ୍ୟ ବିଶାରଦା ଡଃ ମିନତି ମିଶ୍ର, ବିଶିଷ୍ଟ ଐତିହାସିକ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ମହୀଶୂରସ୍ଥ ଭାରତୀୟ ଭାଷାବିଜ୍ଞାନ ସଂସ୍ଥାନର ପୂର୍ବତନ ଅଧ୍ୟକ୍ଷ ପଦ୍ମଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ ଓ ଓଡ଼ିଆ ବିଭାଗର ଅବସରପ୍ରାପ୍ତ ପ୍ରଫେସର ଡଃ ସାବିତ୍ରୀ ଦେବୀଙ୍କର ବିଶେଷ ସମ୍ପର୍କରେ ଆସିଥିଲେ । ତତ୍‌କାଳୀନ ଶିକ୍ଷାସହିତ ସଂପୃକ୍ତ ପ୍ରାୟ ପ୍ରତ୍ୟେକ ବିଶିଷ୍ଟ ବିଦ୍ୱାନଙ୍କ ସଂସ୍ପର୍ଶରେ ସେ ଆସିଛନ୍ତି ।

### ଦିଗ୍ ଦର୍ଶକ ପ୍ରାପ୍ତି :

ଶିକ୍ଷକ ଜୀବନରେ ଦିଗ୍‌ଦର୍ଶକ ପ୍ରାପ୍ତି ଏକ ସାମାନ୍ୟ ଘଟଣା ମାତ୍ର ନୁହେଁ । ଉପଯୁକ୍ତ ଦିଗ୍‌ଦର୍ଶନ ଜଣେ ଶିକ୍ଷକଙ୍କୁ କିଭଳି ସ୍ୱର୍ଣ୍ଣମଣିରେ ରୂପାନ୍ତରିତ କରିଦିଏ ତାର ଉଦାହରଣ ହେଉଛନ୍ତି କୃଷ୍ଣଚରଣଙ୍କର ଦିଗ୍‌ଦର୍ଶକ ମହାମନା ଆଚାର୍ଯ୍ୟ ଫାଦର କାମିଲବୁଲକେ । ବେଲ୍‌ଜିୟମ ଦେଶର ଏହି ମହାନ୍ ଶାସ୍ତ୍ରଜ୍ଞ ପଣ୍ଡିତଙ୍କ ସଂସ୍ପର୍ଶରେ ଆସି କୃଷ୍ଣଚରଣଙ୍କ ଭିତରେଥିବା ଗବେଷଣାଲିପ୍ସା



Digitized by srujanika@gmail.com

ଜାଗ୍ରତ ହୋଇପାରିଥିଲା । ପ୍ରଥମଥର ଗବେଷଣା ସଂକ୍ରାନ୍ତରେ ତାଙ୍କୁ ସାକ୍ଷାତ କରିବାକୁ ଯାଇ ଯୁବକ କୃଷ୍ଣଚରଣ ବିଫଳ ମନୋରଥ ହୋଇ ଫେରିଥିଲେ । ପରବର୍ତ୍ତୀ କାଳରେ ଉଭୟେ ରାମକଥା ସଂପର୍କୀୟ ଦୀର୍ଘ ଆଲୋଚନା କରୁଥିଲେ । ବର୍ଷୀୟାନ ବୁଲକେ ସାହେବ ହୁଏତ ଏହି ଯୁବକ ଭିତରେ ନିଜର ସ୍ୱପ୍ନସାକାର ହେଉଥିବା ଲକ୍ଷ୍ୟ କରିଥିଲେ । କୃଷ୍ଣଚରଣ ବୁଲକେସାହେବଙ୍କର ଅଧ୍ୟୟନ ନିଷ୍ଠା ଓ ଏକାଗ୍ରତାରୁ ହିଁ ନିଜ ଜୀବନ ଗଢ଼ିବାପାଇଁ ଗଭୀର ଆତ୍ମବିଶ୍ୱାସ ଖୋଜି ପାଇଥିଲେ ।

ପ୍ରକୃତରେ ତାଙ୍କର ପିଏଚ୍‌ଡ଼ି ନିବନ୍ଧର ଦିଗ୍‌ଦର୍ଶନକ ଥିଲେ ପ୍ରଫେସର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି । କିନ୍ତୁ କୃଷ୍ଣଚରଣ ପିଏଚ୍‌ଡ଼ି ସନ୍ଦର୍ଭ ଦାଖଲ କରିବା ପୂର୍ବରୁ ସେ ମହାଶୟ ଇହଧାମ ତ୍ୟାଗ କରିସାରିଥିଲେ । ସେ ପିଏଚ୍‌ଡ଼ି ନିବନ୍ଧର ଗୋଟିଏ ଅଧ୍ୟାୟ ମାତ୍ର ସଂଶୋଧନ କରିଥିଲେ । ପରବର୍ତ୍ତୀକାଳରେ କୃଷ୍ଣଚରଣ ନିଜେ ଏହାକୁ ସଂପୂର୍ଣ୍ଣ କରିଥିଲେ ଯାହାର ଶୀର୍ଷକଥିଲା 'Oriya Rama literature'। ଏହା ଇଂରାଜୀରେ ଲିଖିତ ହୋଇଥିଲା । ଡଃ କରୁଣାକର କର ଓ ଡଃ କୁଞ୍ଜ ବିହାରୀ ତ୍ରିପାଠୀଙ୍କ ଭଳି ବିଦ୍ୱାନ ପଣ୍ଡିତଦ୍ୱୟ ଏହାର ପରୀକ୍ଷକ ଥିଲେ ।

ରାଞ୍ଚିରେ ଅବସ୍ଥାନ କାଳରେ କୃଷ୍ଣଚରଣ ନିର୍ଦ୍ଦିଷ୍ଟ ରାଜନୀତିକ ମତବାଦରେ ବିଶ୍ୱାସ କରୁଥିଲେ । ତାହା ଥିଲା ଡଃ ରାମମନୋହର ଲୋହିଆଙ୍କ ଦ୍ୱାରା ପ୍ରବର୍ତ୍ତିତ ସମାଜବାଦୀ ଭାବଧାରା । ଜୟପ୍ରକାଶ ନାରାୟଣଙ୍କର ରାଜନୀତିକ ଚିନ୍ତାଧାରା ମଧ୍ୟ ତାଙ୍କୁ ଯଥେଷ୍ଟ ଅନୁପ୍ରାଣିତ କରିଥିଲା । କିନ୍ତୁ ଏହି ରାଜନୀତିକ ଦିଗଟି ପ୍ରତି ସେ ବିଶେଷ ଆଗ୍ରହ ପ୍ରକାଶ କରିପାରିନଥିଲେ । ଫାଦର ବୁଲ୍‌କେଙ୍କ ନିରଳସ ବ୍ୟକ୍ତିତ୍ୱଦ୍ୱାରା ପ୍ରଭାବିତ କୃଷ୍ଣଚରଣ ନେତୃତ୍ୱ ପ୍ରତି ବୀତସ୍ପୃହ ହୋଇ ଗବେଷକ ଭାବରେ ହିଁ ସାଫଲ୍ୟ ଅର୍ଜନ କରିଛନ୍ତି ଓ ଓଡ଼ିଆ ସାହିତ୍ୟର ବିସ୍ମୃତ ରତ୍ନରାଜିକୁ ଉଦ୍ଧାର କରିଛନ୍ତି ।

### ଅଧ୍ୟାପକ ଓ ପ୍ରଶାସକ କୃଷ୍ଣଚରଣ

୧୯୫୨ ଡିସେମ୍ବର ୧୮ ତାରିଖରେ ରାଞ୍ଚିରେ ଚାକିରି ଜୀବନ ଆରମ୍ଭ କରିଥିବା କୃଷ୍ଣଚରଣ ୧୯୬୪ରେ ବିଶ୍ୱଭାରତୀ, ଶାନ୍ତିନିକେତନର ଓଡ଼ିଆ ବିଭାଗର ମୁଖ୍ୟଭାବରେ ଯୋଗଦାନ କରି ଥିଲେ । ଦୁଇବର୍ଷ ପରେ ସେ ପୁନର୍ବାର ରାଞ୍ଚି ଫେରିଗଲେ । ୧୯୬୬ରୁ ୧୯୭୧ ଜୁଲାଇ ୫ ତାରିଖ ପର୍ଯ୍ୟନ୍ତ ସେ ରାଞ୍ଚିରେ ଅବସ୍ଥାନ କରିଥିଲେ । ୧୯୭୧ ଜୁଲାଇ ମାସରେ ସେ ପ୍ରାଧ୍ୟାପକ ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗଦେଇଥିଲେ । ୧୯୮୫ରେ ପ୍ରଫେସର ହୋଇ ୧୯୮୯ ପର୍ଯ୍ୟନ୍ତ ବିଭାଗୀୟ ମୁଖ୍ୟ ଦାୟିତ୍ୱ ସଂପାଦନ କରିଥିଲେ । ୧୯୮୯ ଅପ୍ରେଲ ୩୦ ତାରିଖରେ ସେ ଅବସର ଗ୍ରହଣ କରି ନିଜକୁ ସଂପୂର୍ଣ୍ଣ ରୂପେ ଅଧ୍ୟୟନ, ସଂପାଦନା, ସର୍ବୋପରି ଗବେଷଣା କାର୍ଯ୍ୟରେ ବିନିଯୁକ୍ତ କଲେ । ରାଞ୍ଚି ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ ଭାବରେ କୃଷ୍ଣଚରଣ ନିଜର ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିପାରିଥିଲେ । ଅନେକ ପରୀକ୍ଷାର୍ଥୀ ତାଙ୍କୁ ଅଭିଭାବକ ତୁଲ୍ୟ ସମ୍ମାନ ଦେଉଥିଲେ ଓ ନିଜ ନିଜ ସମସ୍ୟାର ସମାଧାନ ପାଇଁ ତାଙ୍କର ସାହାଯ୍ୟ ଲୋଡୁଥିଲେ । ତତ୍‌କାଳୀନ କେତେକ ନାମୀ ଛାତ୍ର ପରୀକ୍ଷା ନିୟନ୍ତ୍ରକଙ୍କୁ ବହୁବାର ଅସୁବିଧାରେ ପକାଇବାକୁ ଇଚ୍ଛାକରି ବିଫଳ ହୋଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ସେ ଛାତ୍ରାବାସମାନଙ୍କର ୱାର୍ଡେନ, ତତ୍ତ୍ୱାବଧାରକ (Superintdent) ତଥା ପରିଜା ପାଠାଗାରର ଦାୟିତ୍ୱ ବହନ କରି



Digitized by srujanika@gmail.com

ଅତ୍ୟନ୍ତ ସଫଳତାର ସହିତ ତାହା ନିର୍ବାହ କରିଥିଲେ । ତାଙ୍କ ସମୟରେ ଛାତ୍ରାବାସଗୁଡ଼ିକର ନାମକରଣ ହୋଇଥିଲା ଓ ସେଥିରେ କାର୍ଯ୍ୟରତ କର୍ମଚାରୀମାନଙ୍କର ଦରମା ମଧ ବୃଦ୍ଧିପାଇଥିଲା । ୧୯୮୨ ASIAD ଖେଳ ସମୟରେ ତାଙ୍କରି ପ୍ରଚେଷ୍ଟାରେ ଛାତ୍ରାବାସମାନଙ୍କୁ ଟେଲିଭିଜନ ସେଟ୍ ଯୋଗାଇ ଦିଆଯାଇଥିଲା । ୧୯୮୪ରେ ଦ୍ୱିତୀୟ ଛାତ୍ରାବାସ ସମ୍ମୁଖରେ ମଧୁସୂଦନ ଦାସଙ୍କର ଆବକ୍ଷ ମୂର୍ତ୍ତି ସ୍ଥାପିତ ହୋଇଥିଲା । ଡଃ ରାଧାନାଥ ରଥ (ସମାଜର ସଂପାଦକ) ସେହିମୂର୍ତ୍ତି ଛାତ୍ରମାନଙ୍କୁ ଉପହାର ଦେଇଥିଲେ ଓ ମୂର୍ତ୍ତି ସ୍ଥାପନ ଉତ୍ସବରେ ପୌରୋହିତ୍ୟ ମଧ କରିଥିଲେ । ଉତ୍କଳବିଶ୍ୱବିଦ୍ୟାଳୟ ଛାତ୍ରସଂସଦର ଉପଦେଷ୍ଟା ଭାବରେ ସେ ନିଜର କର୍ତ୍ତବ୍ୟ ସୁଚାରୁ ରୂପେ ସଂପାଦନ କରିଥିଲେ । ୧୯୮୯ ମସିହାରେ ଅବସର ଗ୍ରହଣ କରିବା ପରେ ସେ ଏକ ବର୍ଷ ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପରିଦର୍ଶକ ପ୍ରଫେସର ପାଇଁ ଦାୟିତ୍ୱ ନିର୍ବାହ କରିଥିଲେ ।

## ମୌଳିକ ସ୍ରଷ୍ଟା କୃଷ୍ଣଚରଣ

କେବଳ ଆଲୋଚକ, ସଂପାଦକ ବା ପ୍ରାବନ୍ଧକ ଭାବରେ ନୁହେଁ, ମୌଳିକସ୍ରଷ୍ଟା ଭାବରେ ମଧ କୃଷ୍ଣଚରଣଙ୍କର ପ୍ରତିଷ୍ଠାଯଥେଷ୍ଟ ତାଙ୍କର ପ୍ରାୟ ଅର୍ଦ୍ଧଶତାଧିକ କବିତା ଅପ୍ରକାଶିତ ଅବସ୍ଥାରେ ରହିଛି । ରାଞ୍ଚି କଲେଜ ମୁଖପତ୍ରରେ ପ୍ରାୟ ୧୯୫୧-୫୨ରେ ତାଙ୍କର ଏକ କବିତା 'ପୋଧପ୍ରିୟା' ପ୍ରକାଶିତ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ଡଃ ସାହୁ ରାଞ୍ଚି ଯିବା ପୂର୍ବରୁ ଦୁଇଟି ଉପନ୍ୟାସ ଲେଖି ଛପାଇବା ପାଇଁ କଟକ ଟ୍ରେଡ଼ିଂ କମ୍ପାନୀକୁ ଦେଇଥିଲେ । ତନ୍ମଧ୍ୟରୁ ଗୋଟିକର ନାମ ଥିଲା 'ନୀଳ କମଳ' । ପ୍ରକାଶକଙ୍କ ସହିତ ଯୋଗାଯୋଗ ଅଭାବରୁ ସେ ଦୁଇଟି ପ୍ରେସ୍‌ରୁ ହଜିଗଲା । ପ୍ରାୟ ୪୧୫ ବର୍ଷ ତଳେ ସେ 'ରଙ୍ଗାବତାର' ଶୀର୍ଷକ ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସ ଲେଖିଛନ୍ତି । ଏହି ଉପନ୍ୟାସର ନାୟକ ହେଉଛନ୍ତି ଶ୍ରୀକୃଷ୍ଣ । ଏହା ଏକ ସୁଖପାଠ୍ୟ ଉପନ୍ୟାସ । ତାଙ୍କର 'କାରାଗାର' ଶୀର୍ଷକ ନାଟକ କଟକ ଆକାଶବାଣୀ ଆନୁକୂଲ୍ୟରେ ପ୍ରସାରିତ ହୋଇଛି ।

ରମ୍ୟରଚନା କ୍ଷେତ୍ରରେ ମଧ ତାଙ୍କର ପ୍ରତିଭା ଅବିସମ୍ବାଦିତ । ଓଡ଼ିଆ ସାହିତ୍ୟରେ 'ମାର୍ଜ୍ଜାର', 'ଥକା ମନ ଚାଲିଯିବା', 'ସୁରଙ୍ଗ, ଅଧର ଟହ ଟହ ଟହ ହସେ', 'ମର ମର ପଣ୍ଡିତ ମରମ ଯେ ମିଠା ଭଳି ରମ୍ୟରଚନା ତାଙ୍କର ବହୁ ପାଣ୍ଡିତ୍ୟ ତଥା ଶାସ୍ତ୍ର ଜ୍ଞାନର ପରିଚୟ ପ୍ରଦାନ କରିଥାଏ । ପୌରାଣିକ ଘଟଣାବଳୀକୁ ସାଂପ୍ରତିକତାର ଛାଞ୍ଚରେ ଢାଳି ପାଠକକୁ ଆକର୍ଷିତ କରିବାର କଳା ତାଙ୍କୁ ଜଣା । ତେଣୁ ପୁରାଣକୁ ସାଂପ୍ରତିକ ଜୀବନ ସହିତ ଏକାତ୍ମକରି ପାଠକକୁ ସେ ଆକୃଷ୍ଟ କରିପାରନ୍ତି ।

## ସମାଲୋଚକ କୃଷ୍ଣଚରଣ :

ସୃଷ୍ଟିଶୀଳ ସମାଲୋଚନା (Creative Critism) କ୍ଷେତ୍ରରେ ଡଃ ସାହୁଙ୍କର କୃତିତ୍ୱ ମଧ ଦୃଷ୍ଟି ଆକର୍ଷଣକାରୀ । ଗତାନୁଗତିକ ଧାରାରୁ ଓହରି ଆସି ନୂତନ ଆଭିମୁଖ୍ୟ ନେଇ ପ୍ରାଚୀନ ସାହିତ୍ୟର ଆଲୋଚନା କରିବା ତାଙ୍କର ସ୍ୱାତନ୍ତ୍ର୍ୟ । ତାଙ୍କର ପ୍ରବନ୍ଧଗୁଡ଼ିକର ଭାଷା ସରଳ, ଅକୃତ୍ରିମ



Digitized by srujanika@gmail.com

ଓ ଆକର୍ଷଣୀୟ । ଏଥିରେ ପୁନରାବୃତ୍ତି ବା ଅତି କଥନର କ୍ଳାନ୍ତି ନଥାଏ ବରଂ ପାଠକକୁ ଆଗ୍ରହୀ କରାଇବାର ଶକ୍ତି ସାମର୍ଥ୍ୟ ରହିଥାଏ । ସେ ରବୀନ୍ଦ୍ର ନାଥ, I.A. Richards ଓ T.S. Eliotଙ୍କର ସମାଲୋଚନା ପଦ୍ଧତିଦ୍ୱାରା ବହୁ ଭାବରେ ଅନୁପ୍ରାଣିତ । ରବୀନ୍ଦ୍ରଙ୍କର ଅନ୍ତର୍ଦୃଷ୍ଟି, Richards ଙ୍କର Practical Criticism ଓ Eliot ଙ୍କର ବିଶ୍ୱଜନୀନ ଭାବଧାରା ତାଙ୍କର ସମାଲୋଚନା ସାହିତ୍ୟକୁ ଏକ ଉଦାର ଦୃଷ୍ଟିଭଙ୍ଗୀ ପ୍ରଦାନ କରିଛି । କୃଷ୍ଣଚରଣ ଓଡ଼ିଆ ଏମ୍.ଏ.ର ଛାତ୍ରଥିବା ସମୟରେ, ସେ ସମୟରେ ଉପଲବ୍ଧ ପ୍ରତ୍ୟେକ ଇଂରାଜୀ ସମାଲୋଚନା ପୁସ୍ତକ ଅଧ୍ୟୟନ କରି ସାରିଥିଲେ । ଏଥିପାଇଁ ସେ ତାଙ୍କର ଶ୍ରଦ୍ଧେୟ ପ୍ରଫେସର ବିଧୁଭୂଷଣ ଦାସଙ୍କ ନିକଟରେ ଋଣୀ ବୋଲି ବାରମ୍ବାର କହନ୍ତି । ୧୯୫୧ରେ ତାଙ୍କର ପ୍ରଥମ ସମାଲୋଚନା ''ଅଚ୍ୟୁତାନନ୍ଦଙ୍କ ସାହିତ୍ୟରେ ଓଡ଼ିଶା ଓ ଓଡ଼ିଶାର ଜୀବନଧାରା'' ରେଭେନ୍‌ସାଭିୟାନ୍‌ରେ ପ୍ରକାଶିତ ହୋଇଥିଲା । ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ତାଙ୍କର କୌଣସି ପ୍ରବନ୍ଧ ସଂକଳନରେ ସ୍ଥାନିତ ହୋଇନାହିଁ । Literature and Social Life in Mediaval Orissa (1971), କହେ କୃଷ୍ଣଦାସ କବି (୧୯୭୬), ପ୍ରାଚୀନ ସାହିତ୍ୟ (୧୯୮୨), ମଧ୍ୟକାଳୀନ ସାହିତ୍ୟ (୧୯୮୩), କବି ବଳରାମ ଦାସ (୧୯୮୮) ପ୍ରଭୃତି ତାଙ୍କର ସମାଲୋଚନା ଗ୍ରନ୍ଥ । ସାରଳାଦାସଙ୍କଠାରୁ ଆରମ୍ଭ କରି ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟିକ ଓ ସାଂସ୍କୃତିକ ଜୀବନଧାରା ସମ୍ପର୍କରେ ତାଙ୍କର ବିଚାର ବିମର୍ଷ ପାଠକକୁ ମୁଗ୍ଧ କରିଥାଏ । ପଞ୍ଚଦଶ ଓ ଷୋଡ଼ଶ ବିଶେଷକରି ଜଗନ୍ନାଥ, ବଳରାମ ଅଚ୍ୟୁତାନନ୍ଦ ପ୍ରଭୃତିଙ୍କର ସାହିତ୍ୟ, ୧୬ଶ, ଶତାବ୍ଦୀର ନରସିଂହ ସେଣ, ରଘୁ ଅରକ୍ଷିତ, ରସାନନ୍ଦ, ନବଘନ ଚାନ୍ଦ, ୧୭ଶ, ଓ ୧୮ଶ ଶତାବ୍ଦୀର ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ସାହିତ୍ୟ ଉପରେ ସେ ଗଭୀର ଓ ବ୍ୟାପକ ଅଧ୍ୟୟନ କରିଛନ୍ତି । 'ପ୍ରାଚୀନ ସାହିତ୍ୟ' ପୁସ୍ତକରେ ସେ ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ଛଅ ଜଣ ବିଶିଷ୍ଟ କବିଙ୍କର ସାହିତ୍ୟିକୃତି ସମ୍ପର୍କରେ ଆଲୋଚନା କରିଛନ୍ତି । ଅଚ୍ୟୁତାନନ୍ଦ, ବଳରାମ ଦାସ, ଜଗନ୍ନାଥ ଦାସ ଓ ନରସିଂହ ସେଣଙ୍କ ସମ୍ପର୍କରେ ବିଚାର କରିବା ସହିତ ଅମରକୋଷ, ରୁଦ୍ର ସୁଧାନିଧି, ବେଦାନ୍ତସାର ଗୁପ୍ତଗୀତା ପ୍ରଭୃତି ପୁସ୍ତକ ସମ୍ପର୍କରେ ବିଶେଷ ଆଲୋଚନା କରିଛନ୍ତି ।

'ମଧ୍ୟକାଳୀନ ସାହିତ୍ୟ'ର ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁ ସାହିତ୍ୟର ବୈଶିଷ୍ଟ୍ୟ ଆକଳନ କରିବା ସହିତ ତତ୍‌କାଳୀନ ଅନେକ ପ୍ରତିଭାଶାଳୀ ମାତ୍ର ବିସ୍ମୃତ କବିଙ୍କୁ ବିସ୍ମୃତି ଗର୍ଭରୁ ଉଦ୍ଧାର କରି ସାହିତ୍ୟର ଇତିହାସରେ ସ୍ଥାନିତ କରିଛନ୍ତି । ଯଥା ଗୋକୁଳ ମାନ୍ଧାତା, ସୁଦର୍ଶନ ଦାସ, ମହାଦେବ ଦାସ, ନରହରି ମହାପାତ୍ର (ଆକବରଙ୍କ ସଭା ପଣ୍ଡିତ), ପରମାନନ୍ଦ ଦାସ ପ୍ରଭୃତି । 'କହେ କୃଷ୍ଣଦାସ କବି' ଏକ ଉଲ୍ଲେଖଯୋଗ୍ୟ ସମାଲୋଚନା ଗ୍ରନ୍ଥ । ଲେଖକଙ୍କର ଗବେଷଣା ପ୍ରବୃତ୍ତି ତଥା ଗୋଟାଏ ସମୟକୁ ଭିନ୍ନ ଭାବରେ ଦେଖିବାର ଆଗ୍ରହ ଏଥିରେ ଏକୀଭୂତ ହୋଇଯାଇଛି । କାବ୍ୟକଳା ଦୃଷ୍ଟିରୁ ରସକଲ୍ଲୋଳର ସ୍ୱତନ୍ତ୍ର ମୂଲ୍ୟାୟନ, ଭାଷା, ଶୈଳୀ ଭକ୍ତି ଭାବନା ପ୍ରଭୃତି ଦୃଷ୍ଟିକୋଣରୁ 'ରସକଲ୍ଲୋଳ'ର ଏତାଦୃଶ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର । 'କବି ବଳରାମ ଦାସ' ପୁସ୍ତକରେ ୧୬ଶ ଶତାବ୍ଦୀର ଓଡ଼ିଆ ଜନଜୀବନ ତଥା ବଳରାମଙ୍କର ସ୍ୱାତନ୍ତ୍ର୍ୟରେ ଆଲୋଚନା କରାଯାଇଛି ।

ଓଡ଼ିଆ ଭାଷାକୁ ଅପଭ୍ରଂଶରୁ ମୁକ୍ତକରି ଦେଶଭାଷାରେ କବିତା ରଚନା କରିଥିବା କବି ଜଗନ୍ନାଥ ଦାସ, 'ଅଚ୍ୟୁତାନନ୍ଦ ଓ ନରସିଂହ ସେଣ ପ୍ରଭୃତି ସଂସ୍କୃତ ଭାଷାକୁ ଯଥେଷ୍ଟ ମର୍ଯ୍ୟଦା



Digitized by srujanika@gmail.com

ପ୍ରଦାନ କରିଥିଲେ । ସେମାନଙ୍କର ଧାରଣାଥିଲା ଯେ ଏହାଦ୍ୱାରା ସାଧାରଣ ଜନତା ତାଙ୍କର କାବ୍ୟ କବିତାକୁ ଆଦର କରିବେ । କିନ୍ତୁ ସେମାନେ ପଣ୍ଡିତମାନଙ୍କଦ୍ୱାରା ଗୃହୀତ ହେଲେ ନାହିଁ । ତଥାପି ଉଦାରପନ୍ଥୀ ଅଚ୍ୟୁତାନନ୍ଦ 'ଚାରିଖାନି' ବା ଶବ୍ଦବ୍ରହ୍ମ ସଂହିତାରେ କହିଲେ-

ସଂସ୍କୃତ ପରାକୃତ ଦୁଇସମସରି
କେବଳ ଗୋବିନ୍ଦ ନାମ ଅମୃତ ମାଧୁରୀ ।

ଏସମସ୍ତ ବିଷୟ ସମାଲୋଚକ କୃଷ୍ଣଚରଣ ସାମାଜିକ ପୃଷ୍ଠଭୂମିରେ ଉପସ୍ଥାପିତ କରିଛନ୍ତି । କବି ଉପେନ୍ଦ୍ରଙ୍କର ଅଳଙ୍କାର ପଟୁତା, ସୁଫୀ ଭାବଧାରାର ପ୍ରଭାବ, ମୁସଲମାନୀ ଭାବନା, ରାମକଥାର ବିକାଶରେ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ଓ ବିଦଗ୍ଧଚିନ୍ତାମଣିର ବୈଚିତ୍ର୍ୟ ପ୍ରଭୃତି ସଂପର୍କରେ ସେ ଗବେଷଣାତ୍ମକ ପ୍ରବନ୍ଧ ପ୍ରସ୍ତୁତ କରିଛନ୍ତି ।

**ସଂପାଦକ କୃଷ୍ଣଚରଣ :**

ପତ୍ରପତ୍ରିକା ସଂପାଦନା କ୍ଷେତ୍ରରେ କୃଷ୍ଣଚରଣ ନିଜର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଛନ୍ତି । 'ପ୍ରଜ୍ଞା' ପତ୍ରିକାର ସଂପାଦନା ମଣ୍ଡଳୀ ସହିତ ସଂପୃକ୍ତ ଡଃ ସାହୁ ପ୍ରାଚୀନ ସାହିତ୍ୟର ଆଧୁନିକ ଯୁଗୋପଯୋଗୀ ଆଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ପ୍ରଜ୍ଞାଗୋଷ୍ଠୀ ସତୁରି ଦଶକରେ ନିଜ ପାଇଁ ଏକ ସ୍ୱତନ୍ତ୍ର ତଥା ସମ୍ମାନଜନକ ଆସନ ସୃଷ୍ଟି କରିସାରିଥିଲେ । ଏହି ଗୋଷ୍ଠୀର ଆଲୋଚକମାନଙ୍କ ମଧ୍ୟରେ ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଯତୀନ୍ଦ୍ରମୋହନ ମହାନ୍ତି, ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । 'ପ୍ରଜ୍ଞା' ସେ ସମୟରେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ଜଗନ୍ନାଥ ପ୍ରସାଦ ଦାସ, ରାଜେନ୍ଦ୍ର କିଶୋର ପଣ୍ଡା ଚିତ୍ତରଞ୍ଜନ ଦାସ, ଶରତ କୁମାର ମହାନ୍ତି, ଦୁର୍ଗାଚରଣ କୁଅଁର, ବଂଶୀଧର ଷଡ଼ଙ୍ଗୀ ପ୍ରଭୃତିଙ୍କର ଆଲୋଚନା ଓ ସାହିତ୍ୟକୃତିକୁ ଅଗ୍ରାଧିକାର ଦେଉଥିଲା । 'ପ୍ରାଚୀନ' ନାମକ ସାମୟିକ ସାହିତ୍ୟ ପତ୍ରିକାର ସଂପାଦନ କୃଷ୍ଣଚରଣଙ୍କର ସାହିତ୍ୟ ପ୍ରୀତିର ଅନ୍ୟତମ ନିଦର୍ଶନ । ବିଭିନ୍ନ ଆଲୋଚିତ ସାହିତ୍ୟକୃତି ତଥା ସାହିତ୍ୟିକମାନଙ୍କ ସଂପର୍କରେ ଗବେଷଣାଧର୍ମୀ ପ୍ରବନ୍ଧ ପ୍ରକଶ କରି ସେ ଏକ ଆଗ୍ରହୀ ପାଠକଗୋଷ୍ଠୀ ସୃଷ୍ଟି କରାଇ ପାରିଥିଲେ । ପ୍ରାଚୀନ ସାହିତ୍ୟର ବିଭିନ୍ନ ଦିଗର ଆଲୋଚନା ସହିତ ଏଥିରେ ଏକ 'ପୁସ୍ତକସମୀକ୍ଷା' ପର୍ଯ୍ୟାୟ ରହିଥିଲା, ଯେଉଁଥିରେ ପ୍ରକାଶିତ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପୁସ୍ତକର ସମୀକ୍ଷା ସ୍ଥାନିତ ହେଉଥିଲା । ଉପଯୁକ୍ତ ପ୍ରବନ୍ଧ ଅଭାବରୁ ଏହି ପତ୍ରିକା ଦୀର୍ଘସ୍ଥାୟୀ ହୋଇପାରି ନାହିଁ, ମାତ୍ର ପୁନର୍ବାର ଏହାକୁ ଉଜ୍ଜୀବିତ କରାଇବାର ଆଗ୍ରହ ଡଃ ସାହୁଙ୍କର ଅପୂରଣୀୟ ରହିଗଲା ।

ପୋଥି ସଂପାଦନ କ୍ଷେତ୍ରରେ କୃଷ୍ଣଚରଣ 'ପ୍ରାଚୀସମିତି'ର ପ୍ରାଣ ପ୍ରତିଷ୍ଠାତା ପ୍ରଫେସର ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପଦାଙ୍କ ଅନୁସରଣ କରିଛନ୍ତି । ପ୍ରାଚୀନ ଅପ୍ରକାଶିତ ପୋଥିମାନଙ୍କର ପାଠୋଦ୍ଧାର କରି ଦୀର୍ଘ ମୁଖବନ୍ଧ ସହିତ ପ୍ରକାଶ କରିବା ତାଙ୍କର ସାହିତ୍ୟ ସାଧନାର ଏକ ବିଶିଷ୍ଟ ଦିଗ । ଏଦିଗରେ ପ୍ରଫେସର ବଂଶୀଧର ମହାନ୍ତି, ତାଙ୍କର ଅନ୍ୟତମ ପଥପ୍ରଦର୍ଶକ ବୋଲି ସେ ବାରମ୍ବାର ସ୍ୱୀକାର କରିଛନ୍ତି ।



Digitized by srujanika@gmail.com

ବିଭିନ୍ନ ସ୍ଥାନ ବୁଲି ପୋଥି ସଂଗ୍ରହ କରିବା ଏକ ଆୟାସସାଧ କାର୍ଯ୍ୟ । ଏଥିପାଇଁ କୃଷ୍ଣଚରଣଙ୍କୁ ଅନେକ ସମୟରେ କିଛି ଅନୁକୂଳ ବାତାବରଣ ସୃଷ୍ଟିକରି ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବାକୁ ପଡ଼ିଛି । ପୋଥି ସଂଗ୍ରହପରେ ସେଗୁଡ଼ିକ କାଗଜରେ ନକଲ କରିବା ମଧ ଆଉ ଏକ କଷ୍ଟ ସାଧ କାର୍ଯ୍ୟ । ଏସବୁକୁ ଏକତ୍ର କରି ଶୁଦ୍ଧପାଠ ନିର୍ଣ୍ଣୟକରିବା ତାଠାରୁ ଆହୁରି କଠିନ । ଏଥିପାଇଁ ଗୋଟିଏ ସମୟର ରାଜନୀତିକ ସାମାଜିକ ପରିସ୍ଥିତିକୁ ଦୃଷ୍ଟିନିକ୍ଷେପ କରିବା ପାଇଁ ହୋଇଥାଏ । ସର୍ବୋପରି ପୋଥିର ପ୍ରାଚୀନତା, ପରିବାର ନିର୍ଣ୍ଣୟ ଶୁଦ୍ଧ ଅଶୁଦ୍ଧ ଓ ବିଚ୍ୟୁତି ପ୍ରଭୃତିକୁ ବିଚାର କରିବାବେଳେ ତତ୍କାଳୀନ ସାମାଜିକ ପରିବେଶ ସମ୍ପର୍କରେ ସମ୍ୟକ୍ ଜ୍ଞାନ ଆବଶ୍ୟକ ହୋଇଥାଏ । ବିଭ୍ରାନ୍ତି, ଲୋପ ଓ ବୃଦ୍ଧି ପ୍ରାଚୀନ ପୋଥିର ଦୁର୍ବଳତା । ଅନେକତ୍ର ଲିପିକାରମାନେ ମୂଳଶବ୍ଦ ବୁଝି ନ ପାରି ତତ୍କାଳୀନ ପ୍ରଚଳିତ ପ୍ରିୟ ଶବ୍ଦର ଅନୁପ୍ରବେଶ କରାଇଥାଆନ୍ତି । କେତେକ ଶବ୍ଦ ବାରମ୍ବାର ବ୍ୟବହାର ହୋଇଥିବା ଲକ୍ଷ୍ୟକରି କେତେକ ପଦ ଛାଡ଼ି ଦେଇଥିବା ମଧ ଦେଖାଯାଏ । ମୂଳପୋଥିରେ ବିବାହ, ପ୍ରେମ, ନାରୀରୂପ ବର୍ଣ୍ଣନା, ନଗର ବା ଋତୁ ବର୍ଣ୍ଣନା ପ୍ରଭୃତି ଅଳ୍ପ ଥିଲେହେଁ ଲିପିକାରମାନେ ନିଜର ଆଗ୍ରହ ଏଡ଼ାଇ ନପାରି ମନରୁ ନୂତନ ପଦମାନ ସଂଯୋଜନା କରି ନକଲର କଳେବର ବୃଦ୍ଧି କରିଥାଆନ୍ତି । ଏକ ପ୍ରକାର ଏକାଧିକ ପୋଥିକୁ ତୁଳନାତ୍ମକ ଭାବରେ ବିଚାର କଲେ ଏହି ବିଚ୍ୟୁତି ଆଖିରେ ପଡ଼େ । ସଂଗୃହୀତ ଅନୁଲିପିଗୁଡ଼ିକୁ ଏକତ୍ର କରି କାଳାନୁକ୍ରମରେ ସଜାଇ ସତର୍କତାର ସହ ପ୍ରାମାଣିକ ଲିପି ପ୍ରସ୍ତୁତ କରିବାକୁ ହୋଇଥାଏ ।

ଡଃ ସାହୁ ଏହି କ୍ଳାନ୍ତିକର ମନେହେଉଥିବା କଠିନ ଶ୍ରମ ଆଗ୍ରହ ସହିତ ସମଗ୍ର ଜୀବନ କରି ଚାଲିଥିଲେ । ତାଙ୍କର ଶ୍ରମ ଓ ସମୟର ସାର୍ଥକ ଫଳଶ୍ରୁତି ହେଉଛି ସାରଳା ମହାଭାରତ ଆଦିପର୍ବ (୧୯୮୧), ଉଦ୍ଧବ ଗୀତା (୧୯୮୧) ଧର୍ମଗୀତା (୧୯୮୧), ଶ୍ରୀମଦ୍ ଭଗବତ (୧୯୮୧), ରାସ ପଞ୍ଚାଧାୟୀ (୧୯୮୨), ଚାରିଖାନି (୧୯୮୨), ପ୍ରାଚୀନ କାବ୍ୟଧାରା (୧୯୮୨), ପରିମଳା (୧୯୮୩), ଜଗମୋହନ ରାମାୟଣ ୨ଖଣ୍ଡ (୧୯୮୩), ରୁଦ୍ରସୁଧାନିଧି ୯ ୧୯୮୩), ଚଣ୍ଡୀପୁରାଣ (୧୯୮୪), ଶ୍ରୀମଦ୍‌ଭାଗବତ ୬ଖଣ୍ଡ (୧୯୮୫), ବ୍ରହ୍ମାଣ୍ଡ ଭୂଗୋଳ (୧୯୮୬), ଗୋବିନ୍ଦଚନ୍ଦ୍ର (୧୯୯୬), ଚଉପଦୀ ଭୂଷଣ ଓ ଅନ୍ୟାନ୍ୟ କବିତା (୧୯୯୪), ଜଗମୋହନରାମାୟଣ ସଂପୂର୍ଣ୍ଣ (୧୯୯୬),

ଡଃ ସାହୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C) ଓ ରାଜ୍ୟସରକାରଙ୍କ ସହାୟତାରେ 'ହରିବଂଶ' ସଂପାଦନା କାର୍ଯ୍ୟ ମଧ ସଂପନ୍ନ କରିଛନ୍ତି । ୧୬ଶ ଶତାବ୍ଦୀର ବିଶିଷ୍ଟ ଗ୍ରନ୍ଥ 'ହରିବଂଶ' ମହାପୁରୁଷ ଅଚ୍ୟୁତାନନ୍ଦଙ୍କଦ୍ୱାରା ରଚିତ । ଏହାର ପଚାଶ ଖଣ୍ଡ ପୋଥି ସଂଗୃହୀତ ହୋଇ ଶୁଦ୍ଧପାଠ ପ୍ରସ୍ତୁତ କରାଯାଇଛି । ଡଃ ସାହୁ ନିଜର ସଂପାଦିତ ଗ୍ରନ୍ଥ ଗୁଡ଼ିକରେ ଗବେଷଣା ପ୍ରସୂତ ଦୀର୍ଘ ମୁଖବନ୍ଧ ସମନ୍ୱିତ କରି ଗବେଷକମାନଙ୍କର, କାର୍ଯ୍ୟକୁ ସହଜ କରିଛନ୍ତି । ରୁଦ୍ରସୁଧାନିଧି, ପରିମଳା ସାରଳା ମହାଭାରତ (ଆଦିପର୍ବ), ଚଣ୍ଡୀ ପୁରାଣ ପ୍ରଭୃତିର ମୁଖବନ୍ଧ ଗ୍ରନ୍ଥଗୁଡ଼ିକର ଶ୍ରୀବୃଦ୍ଧି କରିବାରେ ସହାୟକ ହୋଇଛି କାରଣ ଏହାହିଁ ତାଙ୍କର ଅନୁଶୀଳନ ତଥା ବିଶ୍ଳେଷଣ ପଦ୍ଧତିର ସ୍ୱକୀୟତାର ନମୁନା ବହନ କରିବା ସଙ୍ଗେସଙ୍ଗେ ତାଙ୍କ ଅନ୍ତଦୃଷ୍ଟି ଏବଂ ଗବେଷଣା ଲବ୍ଧ ଜ୍ଞାନର ଗଭୀରତାକୁ ଉଦ୍‌ଘୋଷିତ କରିଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରୁ ଅବସର ନେବାପରେ ମଧ



Digitized by srujanika@gmail.com

ସେ ପୋଥି ସଂପାଦନା ଓ ପ୍ରକାଶ କାର୍ଯ୍ୟରେ ବ୍ୟସ୍ତ ରହିଥିଲେ । ପାଠ୍ୟ ପୁସ୍ତକ ନହୋଇପାରିଲେ ଯେ ପୁସ୍ତକ ମୁଦ୍ରିତ ହେବା କଷ୍ଟସାଧ ଏହି ମତବ୍ୟକୁ ସେ ନିଜେ ଭ୍ରମାତ୍ମକ ବୋଲି ପ୍ରମାଣ କରିଛନ୍ତି । ଦୀନକୃଷ୍ଣଙ୍କର ଅପ୍ରକାଶିତ 'ଚଉପଦୀଭୂଷଣ ଓ ଅନ୍ୟାନ୍ୟ କବିତା' ସେ ୧୯୯୪ରେ ପ୍ରକାଶ କରିଛନ୍ତି । ନିକଟ ଅତୀତରେ (ମାର୍ଚ୍ଚ ୧୭, ୧୯୯୬) ସେ ବଳରାମ ଦାସ୍ଙ୍କର ଜଗମୋହନ ରାମାୟଣର ବହୁ ପ୍ରତୀକ୍ଷିତ ପ୍ରମାଣିକରୂପକୁ ଲୋକଲୋଚନକୁ ଆଣିବା ପାଇଁ ସମର୍ଥ ହୋଇଛନ୍ତି ।

ପୋଥି ସଂପାଦନା ପାଇଁ ଅଭିରୁଚି, ଲିପି ସଂପର୍କୀୟ ଜ୍ଞାନ, ଭାଷା ଓ ଇତିହାସ ସଂପର୍କୀୟ ଜ୍ଞାନ, ବିବେକ, ଶାରୀରିକ କ୍ଷମତା, ଆର୍ଥିକ ନିଶ୍ଚିତତା, ମାନସିକଶାନ୍ତି ଓ ସଂପାଦନ ବିଧି ସଂପର୍କରେ ବିଶେଷ ଜ୍ଞାନ ଆବଶ୍ୟକ । ସର୍ବୋପରି ଯଶଲାଳସା ବା ସହଜ ପ୍ରଶଂସା ଏହି କ୍ଷେତ୍ର ପାଇଁ ଅନୁପଯୋଗୀ । ଦୀର୍ଘ ସାଧନାର ଫଳ ସ୍ୱରୂପ ଗୋଟିଏ ପୁସ୍ତକକୁ ଗୋଟିଏ ସମୟର ପ୍ରତିନିଧି ଭାବରେ ପ୍ରତିପାଦନ କରାଯାଇପାରେ । ଡଃ ସାହୁ ଏହି କଷ୍ଟକର କାର୍ଯ୍ୟଟିକୁ ବ୍ୟକ୍ତିଗତ ଆଗ୍ରହ ଓ ଜାତି ଉଦ୍ଦେଶ୍ୟରେ ନିଜର କର୍ତ୍ତବ୍ୟ ମନେକରି ସଂପାଦନ କରିଛନ୍ତି ।

## ଇଂରାଜୀ ଭାଷାରେ ଦକ୍ଷ ପ୍ରାବନ୍ଧିକ କୃଷ୍ଣଚରଣ

କୃଷ୍ଣଚରଣ ବି.ଏ. ଶ୍ରେଣୀର ଛାତ୍ର ଥିବାବେଳେ ସେ ସମୟରେ ଉପଲବ୍ଧ ଅଧିକାଂଶ ଇଂରାଜୀ ସମାଲୋଚନା ତଥା ପ୍ରବନ୍ଧ ପୁସ୍ତକ ପାଠ କରିଥିଲେ । ତାଙ୍କର ପି.ଏଚ୍.ଡି. ସନ୍ଦର୍ଭ ମଧ ଇଂରାଜୀ ଭାଷାରେ ଲିଖିତ । ସେ ଇଂରାଜୀ ଭାଷାରେ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ସେ ମଧରୁ କେତୋଟି ହେଉଛି : 'The saura Tradition in Hindu Ramayana', 'Ornaments in Medieval Orissa', 'Ramakatha in Sarala Mahavarata', 'Marriage customs in Medieval Orissa', 'Portrayal of Oriya Social Life in sarala Das', 'An Account of Kabir in Oriya literature', 'Rama Literature in Orissa and its influence on Indonesia', 'Oriya Rama literature and its relations with Rama Katha of other Indian languages', 'The date of Sarala Mahavarat'. ପ୍ରଭୃତି । ଏଗୁଡ଼ିକ ସର୍ବଭାରତୀୟ ସ୍ତରର ପତ୍ରିକା ଯଥା J.A.R., The Ramayan in Eastern India, Encyclopaedia of Indian Literature ପ୍ରଭୃତିରେ ପ୍ରକାଶିତ । ଏ ପ୍ରବନ୍ଧଗୁଡ଼ିକର ଭାଷା ସୁବୋଧ । ନୂତନ ଦୃଷ୍ଟିଭଙ୍ଗୀ ନେଇ ରଚିତ ଏହି ପ୍ରବନ୍ଧଗୁଡ଼ିକ ପ୍ରାଚୀନ ଓ ମଧକାଳୀନ ଓଡ଼ିଶାର ଜନଜୀବନକୁ ତଥା ସର୍ବଭାରତୀୟ ଆନ୍ତର୍ଜାତିକ ସ୍ତରରେ ଠିକ୍ ଭାବରେ ଉପସ୍ଥାପିତ କରିପାରିଛି । ପ୍ରତ୍ୟେକ ପ୍ରବନ୍ଧରେ ସମାଜତାତ୍ତ୍ୱିକ ଧାରାଟିଏ ପ୍ରବାହିତ, ଯାହା ସାହିତ୍ୟକୁ ତାର ପୃଷ୍ଠଭୂମିରେ ଦୃଢ଼ଭାବରେ ଦଣ୍ଡାୟମାନ ରଖିବାରେ ସମର୍ଥ ହୋଇଥାଏ । ଇଂରାଜୀ ଭାଷାରେ ବହୁସଂଖ୍ୟକ ପ୍ରବନ୍ଧ ଲେଖି, ଦେଶ ବିଦେଶର ପାଠଚକ୍ର, ସଂପାନରେ ଭାଗ ନେଇ ଡଃ ସାହୁ ନିଜ ପାଇଁ ଏକ ସମ୍ମାନଜନକ ସ୍ଥାନ ସୃଷ୍ଟି କରିଛନ୍ତି ।

## ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚକ କୃଷ୍ଣଚରଣ :

କେବଳ ପ୍ରାଚୀନ ମଧକାଳୀନ ବା ପୋଥି ସଂପାଦନ କ୍ଷେତ୍ରରେ ଯେ କୃଷ୍ଣଚରଣଙ୍କର ସାଧନା ରହିଛି ତାହାନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉପରେ ସେ ନିଜ ଦୃଷ୍ଟିରୁ ବିଶେଷ



Digitized by srujanika@gmail.com

ଆଲୋଚନା କରିଛନ୍ତି । ବିଷବୃକ୍ଷ ଓ ଛମାଣ ଆଠଗୁଣ୍ଠ, କାମପାଳ ମିଶ୍ରଙ୍କର ହରିଶ୍ଚନ୍ଦ୍ର, ଓଡ଼ିଆ ସାହିତ୍ୟର ଇତିହାସ ଓ ଡଃ ମାୟାଧର ମାନସିଂହ, ଆଦ୍ୟ ସମୀକ୍ଷକ ପଣ୍ଡିତ ନୀଳକଣ୍ଠ, ପରକଲମ ଏକ ବିଶ୍ଳେଷଣ, ସୀତାବିବାହ, କାଞ୍ଚିକାବେରୀ, ମାର୍କସବାଦ ଓ ମାଟିମଟାଳ, ଗୁରୁପ୍ରସାଦ ଓ ସମୁଦ୍ରସ୍ନାନ, ହରେରାମକୃଷ୍ଣ ଓ କାଠଘୋଡ଼ା, ଅରଣ୍ୟଫସଲ, ଭାତ, ମନୋରଞ୍ଜନଙ୍କ ଶବଲିପି, ଆଚାର୍ଯ୍ୟ ପ୍ୟାରୀମୋହନ ଭଳି ଏକାଧିକ ଆଧୁନିକ ପ୍ରବନ୍ଧରେ ଡଃ ସାହୁଙ୍କର ବୈଶିଷ୍ଟ୍ୟର ଛାପ ବାରିହୋଇପଡ଼େ । କିନ୍ତୁ ଏସବୁ ସତ୍ତ୍ୱେ କହିବା ଉଚିତ୍ ଯେ ସଂପାଦକଙ୍କର ଆଗ୍ରହ, ବାରମ୍ବାର ମନେପକାଇ ଦେବା ଓ ସଂଭ୍ରମର ସହିତ ପ୍ରବନ୍ଧଟିଏ ତାଙ୍କ ନିକଟରୁ ଆଣିବା କାର୍ଯ୍ୟ ଅତ୍ୟନ୍ତ ଦୂରୂହ । ତେଣୁ  କୌଣସି ବିଷୟରେ ଏକାଧିକ ପ୍ରବନ୍ଧ ଲେଖିଲେ ମଧ୍ୟ ଆଉ ସାହିତ୍ୟର କେଉଁ ଫର୍ମକୁ ସେ ଛୁଇଁ ମଧ୍ୟ ନାହାନ୍ତି । ତାଙ୍କର ସମାଲୋଚନାର ଦୃଷ୍ଟିଭଙ୍ଗୀ ଶାଣିତ । ଆଧୁନିକ ସାହିତ୍ୟ ଜଗତର ବିଚିତ୍ରବର୍ଣ୍ଣବିଭାମଣ୍ଡିତ ତାର ବିଭିନ୍ନ ଉଲ୍ଲେଖନୀୟ ଦିଗପ୍ରତି କୃଷ୍ଣଚରଣ ଧ୍ୟାନ ଦେଇଛନ୍ତି ।

ଏହା ସହିତ ତାଙ୍କର ବିଶେଷତ୍ୱ ହେଉଛି ଯେ ତାଙ୍କର ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀ ସର୍ବଦା ଆଧୁନିକ । ସହଜ ସରଳ ସର୍ବଜନବୋଧ ଭାଷାରେ ଜଟିଳ ଦର୍ଶନ ତତ୍ତ୍ୱ ଉପସ୍ଥାପନ ରୀତିରେ ସେ ନିଜର ସମାଲୋଚନାକୁ ସ୍ୱତନ୍ତ୍ର କରିବାରେ ଧୁରନ୍ଧର । ଗୁରୁପ୍ରସାଦଙ୍କ ସମୁଦ୍ରସ୍ନାନର ଆଲୋଚନାରେ ଯେଉଁ ନୂତନ ଦୃଷ୍ଟିକୋଣର ପରିଚୟ ନିହିତ, ସେଥିରେ ପ୍ରାଚୀନ ପୋଥିର ସଂପାଦକ ବା ପ୍ରାଚୀନ ସାହିତ୍ୟର ଗବେଷକ କୃଷ୍ଣଚରଣଙ୍କ ମୁଖ ଦିଶେନାହିଁ । ବିଶ୍ୱସାହିତ୍ୟର ଅଗ୍ରଗତି ତଥା ପରିବର୍ତ୍ତନ ପ୍ରତି ସଜାଗଦୃଷ୍ଟି ରଖିଥିବା ଏକ ଆଧୁନିକ ଚିନ୍ତାଶୀଳ ମଣିଷର ଛବି ଦିଶିଥାଏ । ଏହା ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚକ କୃଷ୍ଣଚରଣଙ୍କର ବୈଶିଷ୍ଟ୍ୟ ।

## ଗବେଷଣାର ଦିଗ୍‌ଦର୍ଶକ ଭାବରେ କୃଷ୍ଣଚରଣ :

ସାହିତ୍ୟରେ ଗବେଷଣା ସର୍ବଦା ନିଷ୍ଠା ଓ ଅଧ୍ୟବସାୟର ସମ୍ମିଳିତ ପ୍ରକାଶ । ଓଡ଼ିଆ ସାହିତ୍ୟକୁ ସ୍ୱତନ୍ତ୍ର ମର୍ଯ୍ୟାଦା ମିଳିବାର ଦୀର୍ଘ ଦିନପରେ ଏହା ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହେଲା । ୧୯୬୯ରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ପାଠ୍ୟକ୍ରମ ଆରମ୍ଭ ହୋଇଥିଲା । ୧୯୭୧ରେ ଡଃ ସାହୁ ଓଡ଼ିଶା ଆସିବାରେ ଏହି ପାଠ୍ୟକ୍ରମର ବୈଶିଷ୍ଟ୍ୟ ଉପଲବ୍ଧ ହେଲା ।

ତାଙ୍କ ଅଧୀନରେ ତୁଳନାତ୍ମକ ସାହିତ୍ୟ ସଂପର୍କୀୟ ଗବେଷଣା କରାଯାଇଛି । ଏତଦ୍ ବ୍ୟତୀତ ସାମାଜିକ ଓ ସାଂସ୍କୃତିକ ଦୃଷ୍ଟି କୋଣରୁ ସାରଳାମହାଭାରତରେ ସମାଜଜୀବନ, ଜଗମୋହନ ରାମାୟଣରେ ସମାଜ ଜୀବନ, ମଧ୍ୟକାଳୀନ ସାହିତ୍ୟରେ କୃଷ୍ଣ ଚେତନା, ଅଚ୍ୟୁତାନନ୍ଦଙ୍କ ହରିବଂଶରେ ଓଡ଼ିଆ ଜୀବନଧାରା ପ୍ରଭୃତି ଉଲ୍ଲେଖ ଯୋଗ୍ୟ । ମଧ୍ୟକାଳୀନ ସାହିତ୍ୟ ପାରାବାରରେ ଅବଗାହନ କରିଥିବା ଡଃ ସାହୁ ଯଶୋବନ୍ତ ଦାସ, ନରସିଂହ ସେଣ, ନୀଳାମ୍ବର ଦାସ, ଓଡ଼ିଆ ସଯୋଧ କାବ୍ୟ, ଶିଶୁ ଅନନ୍ତ ଦାସ ପ୍ରଭୃତି ସ୍ରଷ୍ଟା ପୁରୁଷଙ୍କ କୃତି ଓ କୃତିତ୍ୱ ସଂପର୍କରେ ଗବେଷଣା କରାଇଛନ୍ତି । ଭାଷା କ୍ଷେତ୍ରରେ ତାଙ୍କର ଦକ୍ଷତା ରହିଥିବା ଜଣାଯାଏ । ଡଃ ଦେବକାନ୍ତ ମିଶ୍ରଙ୍କ ଭଳି ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ବୈଜ୍ଞାନିକ ଭାଷାନୁସନ୍ଧାନ ଭଳି ବିଷୟ ନେଇ ଗବେଷଣା କରିଛନ୍ତି । ଆଧୁନିକ ସାହିତ୍ୟ କ୍ଷେତ୍ରରେ ରୋମାଣ୍ଟିସିଜିମ୍ ଓଡ଼ିଆ ଐତିହାସିକ ଉପନ୍ୟାସ, ନାଟ୍ୟକାର



Digitized by srujanika@gmail.com

ମନୋରଞ୍ଜନ ଦାସ, ବାସୁଦେବ ମହାପାତ୍ର, ଗୋପୀନାଥ ମହାନ୍ତି, ଓଡ଼ିଆ କ୍ଷୁଦ୍ରଗଳ୍ପ, ଗଣକବି ବୈଷ୍ଣବ ପାଣି, ଓଡ଼ିଆ କବିତାରେ ବାସ୍ତବବାଦ ତଥା ଅଖିଳମୋହନ ପଟ୍ଟନାୟକଙ୍କ କ୍ଷୁଦ୍ରଗଳ୍ପକୁ ନେଇ ଗବେଷଣା କରାଇଛନ୍ତି ।

## ପୁରସ୍କାର, ମାନପତ୍ର ଓ ଉପାୟନ

ସମଗ୍ର ଜୀବନ ଓଡ଼ିଆ ସାହିତ୍ୟର ଗୌରବ ପ୍ରତିଷ୍ଠା ପାଇଁ ନିରଳସ ଉଦ୍ୟମ କରିଥିବା ଏହି ବର୍ଷିୟାନ ସାଧକ ସେଭଳି ଉଲ୍ଲେଖଯୋଗ୍ୟ ସମ୍ମାନ ପାଇନାହାନ୍ତି ବୋଲି କହିଲେ ହୁଏତ ସତ୍ୟର ଅପଳାପ ହେବ । ସେ ୧୯୮୨ରେ ପ୍ରବନ୍ଧ ପାଇଁ ପ୍ରଜାତନ୍ତ୍ରର 'ବିଷୁବ ପୁରସ୍କାର' ପାଇଛନ୍ତି । ୧୯୮୬ରେ ନୀଳକଣ୍ଠ ସ୍ମୃତି କମିଟିଦ୍ୱାରା 'ନୀଳକଣ୍ଠ ପୁରସ୍କାର' ଓ ମାନପତ୍ର ଲାଭ କରିଛନ୍ତି । ୧୯୮୬ରେ ସେ ସାରଳା ସାହିତ୍ୟର ଗବେଷଣା ପାଇଁ ସାରଳା ସାହିତ୍ୟ ସଂସଦ ତରଫରୁ 'ସାରଳା ସମ୍ମାନ' ଲାଭ କରିଛନ୍ତି । ୧୯୯୬ରେ ଡଃ ସାହୁ ଭୁବନେଶ୍ୱର କେଦାରନାଥ ଗବେଷଣା ପ୍ରତିଷ୍ଠାନଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । ୧୯୯୬ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ମାଇକାନଗିରି ସାହିତ୍ୟ ସଂସଦର ମିଳିତ ଉଦ୍ୟମରେ ତାଙ୍କୁ ସମ୍ମାନିତ କରାଯାଇଛି । ପ୍ରଗତି ଉତ୍କଳ ସଂଘ, ରାଉରକେଲାଦ୍ୱାରା ମଧ ସେ ନିଜର ଜୀବନବ୍ୟାପୀ ସାହିତ୍ୟ ସାଧନା ପାଇଁ ସମ୍ମାନିତ ହୋଇଛନ୍ତି ।

ଏତଦ୍‌ବ୍ୟତୀତ ବାଲେଶ୍ୱରରର ବାର୍ତ୍ତା ଅନୁଷ୍ଠାନ, ଭୁବନେଶ୍ୱରର ଶତଦ୍ରୁ ସାହିତ୍ୟ ଅନୁଷ୍ଠାନ ପ୍ରଭୃତି ଡଃ ସାହୁଙ୍କୁ ସମ୍ବର୍ଦ୍ଧିତ କରିଛନ୍ତି । ସାହିତ୍ୟ କ୍ଷେତ୍ରରେ ପୁରସ୍କାର ବା ମାନପତ୍ର ଲେଖକର ଆଗ୍ରହ ବୃଦ୍ଧି କରିଥାଏ । ତାକୁ ଅଧିକ ସାହିତ୍ୟ ସାଧନା ପାଇଁ ଉତ୍ସାହିତ କରିଥାଏ । ମାତ୍ର କୃଷ୍ଣ ଚରଣ ସେ ସବୁ ପ୍ରତି ଆସକ୍ତ ନଥିଲେ । ତାଙ୍କ ମତରେ ପୁରସ୍କାର ପ୍ରଦାନ କରି ଲେଖକର ଉତ୍ସାହ ବୃଦ୍ଧି କରିବା ଉଚିତ ; ମାତ୍ର ସାହିତ୍ୟରେ ପୁରସ୍କାର ପ୍ରାପ୍ତି ପାଇଁ ବିଭିନ୍ନ ଚକ୍ରାନ୍ତ ଓ କୁତ୍ସା ଯେଉଁ ଭଳି ନ ରହେ ତାର ଚେଷ୍ଟା କରାଯିବା ଦରକାର । ପୁରସ୍କୃତ ପ୍ରତିଭା ଯେପରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିବାର ସୁଯୋଗ ପାଇବ ସେଥିପାଇଁ ପ୍ରଚେଷ୍ଟା କରାଯିବା ଆବଶ୍ୟକ । ଅନ୍ୟଥା ସାହିତ୍ୟ ଓ ସମାଲୋଚନା ଉଭୟ କ୍ଷେତ୍ର ପ୍ରଦୂଷିତ ହେବାର ଆଶଂକା ରହିଛି । ଯଦି ପୁରସ୍କୃତ ପ୍ରତିଭାଟି ବହୁମାନଙ୍କର କୁତ୍ସା ବା ଅସହିଷ୍ଣୁତାର ଶିକାର ହୁଏ, ସେଭଳି ପୁରସ୍କାର ନ ମିଳିବା ବରଂ ଭଲ ପୁରସ୍କୃତ ହେବା ଅର୍ଥ ଅନ୍ୟଠାରୁ ମର୍ଯ୍ୟାଦାବନ୍ତ ହେବା, ଅନ୍ୟର ଅସୂୟାର ପାତ୍ର ହେବା ନୁହେଁ ।

## ଜାତୀୟ ତଥା ପ୍ରାଦେଶିକ ସମ୍ମିଳନୀମାନଙ୍କରେ ଯୋଗଦାନ

ଡଃ ସାହୁ ଭାରତୀୟ କାଉନ୍‌ସିଲ୍, କଲିକତାର ସଭ୍ୟ । ଆନ୍ତର୍ଜାତିକ ରାମାୟଣ ଅଧ୍ୟୟନ ସଂସ୍ଥାର ନିର୍ଦ୍ଦେଶନାମଣ୍ଡଳୀର ଅନ୍ୟତମ ସହଯୋଗୀ ସଭ୍ୟ । ସେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱ ବିଦ୍ୟାଳୟ, ବ୍ରହ୍ମପୁର, ସମ୍ବଲପୁର, ବିଶ୍ୱଭାରତୀ ତଥା ରାଞ୍ଚି ବିଶ୍ୱବିଦ୍ୟାଳୟ ସହିତ ବହୁଭାବରେ ସଂପୃକ୍ତ । ଉଜ୍ଜୟିନୀର କାଳିଦାସ ସମାରୋହ, ଆନ୍ତର୍ଜାତୀୟ ରାମାୟଣ ସଂପାନ, ନୂଆଦିଲ୍ଲୀ, Seminar on Lexieography (ଅଭିଧାନ ପ୍ରଣୟନ ସଂପର୍କୀୟ ଭାଷାତତ୍ତ୍ୱର ଗ୍ରୀଷ୍ମକାଳୀନ ଶିବିର ପାଠ୍ୟକ୍ରମ, ମହୀଶୂର, ଉତ୍ତର ପ୍ରଦେଶର ସାଂସ୍କୃତିକ ବିଭାଗ ତରଫରୁ ଆୟୋଜିତ ରାମାୟଣ ସଂପାନ, କେନ୍ଦ୍ର ସାହିତ୍ୟ ଏକାଡ଼େମୀଦ୍ୱାରା ମଣିପୁରରେ ଆୟୋଜିତ ପୂର୍ବଭାରତୀୟ ରାମାୟଣ



Digitized by srujanika@gmail.com

ସଂପର୍କୀୟ ସେମିନାର, କେନ୍ଦ୍ରସାହିତ୍ୟ ଏକାଡ଼େମୀ, ଓ ଆସାମ ସାହିତ୍ୟ ସଭାର ମିଳିତ ଆନୁକୂଲ୍ୟରେ ଆସାମର ଜୋରହାଟରେ ଆୟୋଜିତ ଅମ୍ବିକା ପ୍ରସାଦ ମେମୋରିଆଲ ଜାତୀୟବାଦୀ ଆନ୍ଦୋଳନ ଶୀର୍ଷକ ସେମିନାରରେ ସେ ଯୋଗ ଦେଇଛନ୍ତି ଓ ପ୍ରବନ୍ଧପାଠ କରିଛନ୍ତି । ସେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C.)ର ଭାଷା ଉପଦେଷ୍ଟା ମଣ୍ଡଳୀର ସଭ୍ୟ, କେନ୍ଦ୍ରସାହିତ୍ୟ ଏକାଡ଼େମୀର ଭାଷା ଉପଦେଷ୍ଟା ମଣ୍ଡଳୀର ସଭ୍ୟ ତଥା ଅନେକ ପ୍ରାଦେଶିକ ସାହିତ୍ୟ ସଭ୍ୟମାନଙ୍କ ସହିତ ସଂପୃକ୍ତ ।

## ଜୀବନାନୁଭୂତି ଓ କୃଷ୍ଣଚରଣ

ଅନେକ ପାରିବାରିକ ଦାୟ ସତ୍ତ୍ୱେ ଡଃ ସାହୁ ଏକ ଅନାସକ୍ତ ସନ୍ୟାସୀର ଜୀବନ ଅତିବାହିତ କରନ୍ତି । ସଂସାରରେ ଥାଇ ସେ ସର୍ବଦା ଉଦାସୀନ । ଗବେଷଣା ଓ ସଂପାଦନାକୁ ନେଇ ତାଙ୍କର ଏକକ ସଂସାରଟିଏ ନିରବରେ ଏହିପରି ଦୃଶ୍ୟମାନ ସଂସାର ଅନ୍ତରାଳରେ ଗତିଶୀଳ । ସେ ନିରଳସ କର୍ମଯୋଗୀ । କିନ୍ତୁ କର୍ମ ଅନୁସାରେ ଫଳ ନପାଇ ସେ ବାରମ୍ବାର ଭାଗ୍ୟବାଦୀ ପାଲଟିଯାଆନ୍ତି । ତାଙ୍କ ଦୃଷ୍ଟିରେ ସମଗ୍ର ମାନବଜୀବନ ଦୁଃଖମୟ । ସାମୟିକ ସୁଖ ଲାଭର ଆଶାରେ ମନୁଷ୍ୟ କର୍ମ କରେ ମାତ୍ର ଛୋଟ ଛୋଟ ସୁଖ ବୃହତ୍ତର ଦୁଃଖ ପାଇଁ ବାଟ କଢ଼ାଇଦିଏ । ତୋଷାମୋଦ ଓ ମିଥ୍ୟା ତଥା କପଟାଚାରର ସେ ଘୋର ଶତ୍ରୁ । ଶ୍ରେଣୀଗୃହରେ ଶିକ୍ଷାଦାନ ତାଙ୍କପାଇଁ ଏକ ଆନନ୍ଦମୟ ଅନୁଭୂତି । ତାପରେ ଗବେଷକମାନଙ୍କୁ ଯଥାଶକ୍ତି ସାହାଯ୍ୟ କରିବା ତାଙ୍କର ଦିନଚର୍ଯ୍ୟାର ଏକ ଅଂଶ । ଦୁଃଖସୁଖକୁ ସମଜ୍ଞାନ କରି କର୍ମ କରିଯିବା ତାଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ । ପ୍ରାୟ ଦେଢ଼ ମାସତଳେ ଶାରୀରିକ ଅସୁସ୍ଥତା ତାଙ୍କ ଗବେଷଣାରେ ବାଧାସୃଷ୍ଟି କଲା । ସେ ବାଧହୋଇ ନିଜକୁ ଗଦାଗଦା ତାଳପତ୍ର ପୋଥିର ରାଇଜରୁ ମୁକ୍ତକଲେ, ଚିକିତ୍ସକମାନଙ୍କର ବିଭିନ୍ନ ପରୀକ୍ଷା, ନିରୀକ୍ଷାରେ ସହଯୋଗ କରିବାପାଇଁ । ପରିଶେଷରେ ଅଭିଜ୍ଞ ଚିକିତ୍ସକଙ୍କଦ୍ୱାରା ତାଙ୍କ ଶରୀରରେ ଅସ୍ତ୍ରୋପଚାର କରାଯାଇଥିଲା ଗତ ତା ୨୭ । ୩ । ୯୭ ଗୁରୁବାର ଦିନ । ନର୍ସିଂହୋମ୍‌ର ଶଯ୍ୟାଉପରେ ଶୋଇ ସେ ଦୃଢ଼ କଣ୍ଠରେ କହୁଥିଲେ, ଏବେ ଆଉ କଷ୍ଟ ନାହିଁ । ପରେ ଯାହା ହବହବ । ମୁଁ ଶୀଘ୍ର ଘରକୁ ଫେରି ମୋର ଅସଂପୂର୍ଣ୍ଣ କେତେଗୁଡ଼ିଏ କାମ କରିବି ।

ଲିଙ୍ଗରାଜ ମନ୍ଦିର ପାଖରେ ବିଭୀଷଣେଶ୍ୱର ମନ୍ଦିରନିକଟସ୍ଥ ନିଜର ବାସଗୃହକୁ ଫେରିଥିଲେ ତା ୪ ।୪ । ୯୭ ରିଖ ଶୁକ୍ରବାର ଦିନ । କିନ୍ତୁ ସମସ୍ତଙ୍କୁ ଚକିତ କରି ସେଇ ଘରେ ସ୍ତୂପୀକୃତ ପୋଥିମାନଙ୍କ ଗହଣରେ ଆଉ ଗୋଟିଏ ନୂଆ ପୋଥି ହୋଇ ସେ ହଜିଗଲେ ଗତ ରବିବାର ତା ୬-୪-୯୭ ରିଖ ଦିନ । ପୁରୀ ସ୍ୱର୍ଗଦ୍ୱାର ଦେଇ ତାଙ୍କ ଆତ୍ମା ଯେ ବୈକୁଣ୍ଠକୁ ଯାଇଛି ଏଥିରେ ସନ୍ଦେହ ନାହିଁ । କିନ୍ତୁ ଓଡ଼ିଆ ପୋଥିପାଠ ଯୁଗର ଯେ ଅବସାନ ଘଟିଲା ସେକଥା ସ୍ୱୀକାର କରିବାରେ ଦ୍ୱିଧା ନାହିଁ । ତେବେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଯେଉଁ ଅମୂଲ୍ୟରତ୍ନରାଜିର ଉଦ୍ଧାର ଏବଂ ତର୍ଜମାରେ କରିଯାଇଛନ୍ତି ତାହା ଓଡ଼ିଆ ସାହିତ୍ୟର ଇତିହାସରେ ଚିରଉଜ୍ଜ୍ୱଳ ହୋଇ ରହିବ ।

- ୦ -



Digitized by srujanika@gmail.com

# ପ୍ରକାଶିତ ରଚନାବଳୀ

**ପୁସ୍ତକ :**

୧। Literature and Social Life in Medieval Orissa - 1971.

୨। କହେ କୃଷ୍ଣ ଦାସ କବି - ୧୯୭୬

୩। ଧର୍ମଗୀତା - ୧୯୮୧

୪। ଶ୍ରୀମଦ୍‌ଭାଗବତ ଗୀତା - ୧୯୮୧

୫। ଉଦ୍ଧବ ଗୀତା - ୧୯୮୧

୬। ମହାଭାରତ (ଆଦିପବ) - ୧୯୮୧

୭। ପ୍ରାଚୀନ ସାହିତ୍ୟ - ୧୯୮୨

୮। ରାସ ପଞ୍ଚାଧ୍ୟାୟୀ - ୧୯୮୨

୯। ପ୍ରାଚୀନ କାବ୍ୟଧାରା - ୧୯୮୨

୧୦। ଚାରିଖାନି - ୧୯୮୨

୧୧। ଆଧୁନିକ ପ୍ରବନ୍ଧ - ୧୯୮୨

୧୨। ସାଂପ୍ରତିକ ପ୍ରବନ୍ଧ - ୧୯୮୨

୧୩। ଜଗମୋହନ ରାମାୟଣ - ୧୯୮୩

୧୪। ପରିମଳା - ୧୯୮୩

୧୫। ରୁଦ୍ରସୁଧାନିଧି - ୧୯୮୩

୧୬। ଚଣ୍ଡୀପୁରାଣ - ୧୯୮୪

୧୭। ଜଗନ୍ନାଥ ଲୀଳାମୃତ - ୧୯୮୪

୧୮। ଶ୍ରୀମଦ୍‌ଭାଗବତ - ୧୯୮୫

୧୯। ମଧ୍ୟକାଳୀନ ସାହିତ୍ୟ - ୧୯୮୫

୨୦। ବ୍ରହ୍ମାଣ୍ଡ ଭୂଗୋଳ - ୧୯୮୬

୨୧। ଗୋବିନ୍ଦଚନ୍ଦ୍ର - ୧୯୮୬

୨୨। ଚଉପଦୀ ଭୂଷଣ ଓ ଅନ୍ୟାନ୍ୟ କବିତା (୧୯୯୪)

୨୩। ଜଗମୋହନ ରାମାୟଣ (ସଂପୂର୍ଣ୍ଣ - ୧୯୯୬)

୨୪। ହରିବଂଶ - ୧୯୯୬



Digitized by srujanika@gmail.com

ଇଂରାଜୀ :

1. Alochana-Newlife-Vol. 1, No. 3, (1953)
2. The Soura tradition in a Hindu Ramayana- J.H.R. Vol. 1, No. 1, (1958)
3. Ornaments in Medieval Orissa J.H.R., Vol. II, No. 1, (1958)
4. Ramakatha In Sarala Mahabharata - J.H.R., (1959)
5. The Language spoken in Singhbhum - J.H.R., (1960)
6. Marriage Customs in Medieval Orissa -J.H.R., (1960)
7. Portrayal Of Oriya Social Life in Sarala Das- J.H.R., (1958)
8. Some important Hindu festivals in Medival Orissa as depicted in Balaram das - J.H.R., (1962)
9. Balaram Das and the various recensions of the Valmiki Ramayana- J.H.R., (1962)
10. An account of Kabir in Oriya literature - J.H.R., (1962)
11. Rama literature in Orissa and its influence on Indonesia- The Ramayan Tradition in Asia, Sahitya Akademi, (1980)
12. The description of Gayatirtha in Oriya literature- News of the world.
13. Sati worship in Orissa- Book land International. (Puja Spl.)
14. The date of Sarala Mahabharat - J.H.R., (1968)
15. Oriya Rama literature and its relations with Ramakatha of other Indian languages. (1986)
16. Jagamohan Ramayan A Study- The Ramayan in Eastern India. (1987)
17. Oriya Bhagabata, Atmajivani Charita, Baidehisa Bilas, Bhajan, Bhima Dhibara, Bichitra Ramayana, Bidagdha Chintamani, Baccha Das, Balaram Das, Banamali Das- Encyclopaedia of Indian Literature, Vol. I, Sahitya akademi, (1987)
18. Medival Oriya Literature - Encyclopaedia of Indian Literature, sahitya Akademi.

ଓଡ଼ିଆ :

୧ । ଅଚ୍ୟୁତାନନ୍ଦଙ୍କ ସାହିତ୍ୟରେ ଓଡ଼ିଆ ଓ ଓଡ଼ିଆ ଜୀବନଧାରା- The Ravensawvian, ୧୯୫୨ ।

୨ । ରସକଲ୍ଲୋଳରେ କାଳ ଓ କଉତୁକ -ଝଙ୍କାର, ୧୯୫୬ ମାର୍ଚ୍ଚ



Digitized by srujanika@gmail.com

୩। ସାରୁବେଦ-ଝଙ୍କାର, ୧୯୫୬-ଜୁନ୍
୪। ରସକଲ୍ଲୋଳରେ ଶ୍ରୀକୃଷ୍ଣ-ରାଭେନ୍ସାକଲେଜ ପତ୍ରିକା
୫। ସାରଳା ଦାସଙ୍କ ଚିଠି- ରାଭେନ୍ସାକଲେଜ ପତ୍ରିକା
୬। ବୋଇତେ କଲା ଝରଟ- ରାଭେନ୍ସାକଲେଜ ପତ୍ରିକା (୧୯୬୧-୬୨)
୭। ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ- ଝଙ୍କାର, ୧୧/୯
୮। ଅଚ୍ୟୁତ ଓ ଦୀନପାମର ଅଚ୍ୟୁତ - ନବଜୀବନ, ୧୯୬୪
୯। ଓଡ଼ିଆ ସାରୁବେଦର ଭାରତ ପର୍ଯ୍ୟଟନ - ଝଙ୍କାର, ୧୯୬୫-ଅକ୍ଟୋବର
୧୦। ଉଦ୍ଧବଗୀତା - କବିତା, ୧/୪, ୧୯୬୬-ମାର୍ଚ୍ଚ
୧୧। ବେଦାନ୍ତସାର ଗୁପ୍ତଗୀତା ଓ ବଳରାମ ଦାସ - ଝଙ୍କାର, ୧୯/୧, ୧୯୬୬-ଏପ୍ରିଲ।
୧୨। ରସକଲ୍ଲୋଳର ଶବ୍ଦାବଳୀରେ ସାମାଜିକ ଓ ସାଂସ୍କୃତିକ ସଂକେତ- କୋଣାର୍କ, ୬/୩, ୧୯୭୧
୧୩। ଜଗମୋହନ ରାମାୟଣ ଓ ବଳରାମ ଦାସ - କୋଣାର୍କ, ୧୯୭୧
୧୪। ବ୍ରହ୍ମାଣ୍ଡ ଭୂଗୋଳର ଆବିଷ୍କାର - ଚକ୍ରବାଳ, ୧/୧, ୧୯୭୪ ଏପ୍ରିଲ
୧୫। ଅଭିମନ୍ୟୁଙ୍କ କାନ୍ଦଣା- ସୃଷ୍ଟି ଓ ସମୀକ୍ଷା, ୧୯୭୫
୧୬। କାମପାଳ ମିଶ୍ରଙ୍କ ହରିଶ୍ଚନ୍ଦ୍ର- ଏକାଙ୍କିକା, ୧୯୭୬-ପୂଜାସଂଖ୍ୟା
୧୭। ଓଡ଼ିଶାରେ ବୈଷ୍ଣବ ଧର୍ମର ପଦଯାତ୍ରା ଓ ରୁଦ୍ରସୁଧାନିଧି-ମାନସ, ୧୯୭୬- ପୂଜାସଂଖ୍ୟା।
୧୮। ମହାକବି ନରହରି ମହାପାତ୍ର - ଶ୍ରୀହରି ସଂକୀର୍ତ୍ତନ, ୧୯୭୭-ମାର୍ଚ୍ଚ
୧୯। ତୁଳସୀ, ବଳରାମ ଓ ପ୍ରତାପରୁଦ୍ର-ଝଙ୍କାର, ୧୯/୫, ୧୯୭୭
୨୧। ମୁଁ ଶ୍ରୀଜଗନ୍ନାଥଙ୍କ ବେଟା- ଝଙ୍କାର, ୧୯୭୮ ଏପ୍ରିଲ
୨୨। ଓଡ଼ିଆ ସାହିତ୍ୟରେ ମାର୍କାର-ଆସନ୍ତାକାଲି, ୧୯୭୮
୨୩। ରସାନନ୍ଦ ନବଘନ ଚାନ୍ଦ - ଆସନ୍ତାକାଲି, ୧୯୭୮
୨୪। ସୁଦର୍ଶନ ଦାସ-ଆସନ୍ତାକାଲି, ୧୯୭୮
୨୫। ବଳରାମ ଦାସଙ୍କ ପାଣ୍ଡିତ୍ୟ ଓ ଅହଲ୍ୟା ଉପାଖ୍ୟାନ-ଆସନ୍ତାକାଲି, ୧୯୭୮।
୨୬। ପ୍ରାଚୀନ ଓଡ଼ିଶାରେ ଶିକ୍ଷା ଓ ଶିକ୍ଷକ- ସୋଭେନିୟର, ୧୯୭୯।
୨୭। ପ୍ରାଚୀନ ଜୀବନୀ ସାହିତ୍ୟ ଓ ବଳରାମଦାସ-ଝଙ୍କାର, ୩୧/୨ ୧୯୭୯-ମେ
୨୮। ଘନକବିଙ୍କ ନଟନଟୀ ସୁଆଙ୍ଗ ଆସନ୍ତାକାଲି, ଜୁଲାଇ - ୧୯୭୯
୨୯। ଓଡ଼ିଆ ସାହିତ୍ୟର ଇତିହାସ ଡଃ ମାୟାଧର ମାନସିଂହ-ମାନସିଂହ ପରିକ୍ରମା, ୧୯୭୯
୩୦। ଗୋକୁଳ ମାନ୍ଧାତା- ଆସନ୍ତାକାଲି, ୧୯୭୯
୩୧। କୃଷ୍ଣଦାସଙ୍କ ପହିଳ- ଆସନ୍ତାକାଲି, ୧୯୭୯
୩୨। ସାକ୍ଷାତକାର-ନବରାଗ, ୧୯୮୦
୩୩। ଆଦ୍ୟ ସମୀକ୍ଷକ ପଣ୍ଡିତ ନୀଳକଣ୍ଠ-ନୀଳକଣ୍ଠ ସ୍ମାରକୀ, ୧୯୮୦
୩୪। ମାଧବ ଉପାସନାର ପରମ୍ପରା ଓ ସାରଳାଦାସ-ଝଙ୍କାର, ୧୯୮୧-ଏପ୍ରିଲ



Digitized by srujanika@gmail.com

୩୫। ସୁରଙ୍ଗ ଅଧର ଟହଟହ ହସେ- ଜଗନ୍ନାଥ ବିଶେଷାଙ୍କ, ୧୯୮୧, (ଓଡ଼ିଶା ସାହିତ୍ୟ ଏକାଡ଼େମୀ)

୩୬। ଓଡ଼ିଶାର ଗୁଣିଗାରୁଡ଼ି- ପ୍ରାଚୀନ, ୧୯୮୧

୩୭। ବୀରସିଂହଙ୍କ ସପ୍ତାଙ୍ଗ - ପ୍ରାଚୀନ, ୧୯୮୧

୩୮। ଓଡ଼ିଆ ପ୍ରେମାଖ୍ୟାନମୂଳକ କାବ୍ୟଧାରା ଓ ମଧୁମାଳତୀ-ଝଙ୍କାର, ୧୯୮୧-ଡିସେମ୍ବର।

୩୯। ପାଠାଲୋଚନ ପ୍ରକ୍ରିୟା ଓ ପରିମଳା-ଝଙ୍କାର, ୧୯୮୨-ଏପ୍ରିଲ

୪୦। ଭାରତରେ ମୁସଲମାନ ଶାସନର ପ୍ରତିକ୍ରିୟା - (ଚଣ୍ଡୀପୁରାଣ) ବାଇଶିପାହାଚ, ୧୯୮୪-ମେ।

୪୧। ନାରୀହିଁ ଭଗବାନ - ବାଇଶିପାହାଚ, ୧୯୮୪ ପୂଜାସଂଖ୍ୟା

୪୨। ଚଣ୍ଡୀଦାସ, ଜୟଦେବ ଓ ଅଚ୍ୟୁତାନନ୍ଦ। ଝଙ୍କାର, ୧୯୮୫-ଅକ୍ଟୋବର

୪୩। ଆରଣ୍ୟକକାଣ୍ଡ ଏ ସୁଧାରସବାଣୀ- ସୃଷ୍ଟି ଓ ସମୀକ୍ଷା, ୧୯୮୫।

୪୪। ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ-ସାଂପ୍ରତିକ ଗ୍ରନ୍ଥ ସମୀକ୍ଷା, ୧୯୮୬

୪୫। ବିଦଗ୍ଧ ଚିନ୍ତାମଣିର ବିଷୟବସ୍ତୁ ଯୋଜନାରେ ସୁଫୀପରମ୍ପରାର ପ୍ରଭାବ- ଅନ୍ୱେଷା, ୧୯୮୬।

୪୬। ପରକଲମ ଏକ ବିଶ୍ଳେଷଣ- ଛୋଟରାୟ ସ୍ରଷ୍ଟାମାନସ, ୧୯୮୭

୪୭। ସାରଳା ମହାଭାରତରେ ହନୁମାନ ଜନମ-ସ୍ୱାରୋଳ କଥାସରିତ, ୧୯୮୭।

୪୮। ମହାତାବଙ୍କାଙ୍କ ପାଇଁ ଖଣ୍ଡେ ଚିଠି- ସମାବେଶ, ୧୯୮୭

୪୯। ଲକ୍ଷେକୋଟି ଚରିତ୍ର ଥୋକାଯେ ଯିବି କହି-ଓଡ଼ିଆ ଭାଷା, ସଂସ୍କୃତି ଓ ସାହିତ୍ୟ, ୧୯୮୭।

୫୦। ପ୍ରେମାଖ୍ୟାନ କାବ୍ୟଧାରା ଓ ପ୍ରେମସୁଧାନିଧି - ଶତଦ୍ରୁ, ୧୯୮୮-ପୂଜାସଂଖ୍ୟା

୫୧। ସାରଳା ମହାଭାରତରେ ଶ୍ରୀକୃଷ୍ଣ- ପାଠଚକ୍ର ପ୍ରବନ୍ଧାବଳୀ, ୧୯୮୮

୫୨। ପରମ୍ପରା ଓ ପୁରାଣର କବି ଜଗନ୍ନାଥ ପାଣି-ଜଗନ୍ନାଥ ପାଣି ସ୍ମରଣିକା, ୧୯୮୮।

୫୩। ଗୋଲୋକ ପ୍ରଧାନ- ଅଭିନନ୍ଦନିକା

୫୪। ଓଡ଼ିଆ ସାହିତ୍ୟର ଦାର୍ଶନିକ ପୃଷ୍ଠଭୂମି- ନବରାଗ

୫୫। ଧର୍ମସଂପ୍ରଦାୟ ଓଡ଼ିଶା ଓ ଭାରତବର୍ଷ- ବାଇଶିପାହାଚ, ୧୯୭୬-ନଭେମ୍ବର।

୫୬। ସାହିତ୍ୟରେ ପ୍ରିୟବିପ୍ରିୟର ସ୍ଥାନନାହିଁ-ସମ୍ବାଦ

୫୭। ବଳରାମ ଦାସ-ପ୍ରାଚୀନ

୫୮। ଷୋଡ଼ଶ ଶତାବ୍ଦୀର ସାହିତ୍ୟିକ ଚେତନା - ପ୍ରାଚୀନ

୫୯। ମନଚଉତିଶା (ଭୁଉଁରୀଦାସ) - ପ୍ରାଚୀନ

୬୦। ତପସ୍ୟା, ବେଶ୍ୟା ଓ ବର୍ଷା - ପାଠଚକ୍ର ପ୍ରବନ୍ଧାବଳୀ

୬୧। ଶ୍ରୀଜଗନ୍ନାଥ ଓ ସଦାବ୍ରତ ବୋଲି

୬୩। ରୁଦ୍ରସୁଧାନିଧିର ରଚନାକାଳ-ପାଠଚକ୍ର ପ୍ରବନ୍ଧାବଳୀ

୬୪। କ୍ଷିତିଚଉତିଶା- ଭଉଁରୀଦାସ



Digitized by srujanika@gmail.com

୬୫ । ଛନ୍ଦାଚଉତିଶା - ଭଉଁରୀଦାସ
୬୬ । ରୁଦ୍ରସୁଧାନିଧିର ରଚନାଶୈଳୀ
୬୭ । ପ୍ରମୋଦ ଚିନ୍ତାମଣି : ଏକ ଅଧ୍ୟୟନ - ଜଗନ୍ନାଥ ପାଣି ସ୍ମରଣିକା
୬୮ । ଷୋଡ଼ଶ ଶତାବ୍ଦୀର ସାହିତ୍ୟିକ ପୃଷ୍ଠଭୂମି - ପ୍ରାଚୀନ
୬୯ । ମରମର ପଣ୍ଡିତେ ମରଣ ଯେ ମିଠା
୭୦ । ଗୋଟିପୁଅ ପରମ୍ପରା - ଏକାଙ୍କିକା
୭୧ । କବି ଓ ନାଟ୍ୟକାର ଜଗନ୍ନାଥ ପାଣି - ଜଗନ୍ନାଥ ପାଣି ସ୍ମରଣିକା
୭୨ । ଓଡ଼ିଆ ସାହିତ୍ୟରେ ସାଂସ୍କୃତିକ ପରମ୍ପରା - ଶତଦ୍ରୁ
୭୩ । ସୁଫୀମତ ପରମ୍ପରା ଓ ପରିମଳା-ଝଙ୍କାର, ୧୯୮୪-ଅକ୍ଟୋବର
୭୪ । ସୀତାବିବାହ
୭୫ । କାଞ୍ଚିକାବେରୀ : ଏକ ଅଧ୍ୟୟନ
୭୬ । ମାର୍କସବାଦ ଓ ମାଟିମଟାଳ-ମୂଲ୍ୟାୟନ
୭୭ । ଗୁରୁପ୍ରସାଦ ଓ ସମୁଦ୍ରସ୍ନାନ - ମୂଲ୍ୟାୟନ
୭୮ । ଭୂପେନ୍ଦ୍ର ସାହିତ୍ୟରେ ମୁସଲମାନୀ ପ୍ରଭାବ-ମୂଲ୍ୟାୟନ/ଭଞ୍ଜ ବିଶେଷାଙ୍କ
୭୯ । ଓଡ଼ିଆ ସାହିତ୍ୟର ସାଂସ୍କୃତିକ ପୃଷ୍ଠଭୂମି
୮୦ । ହରେରାମକୃଷ୍ଣ ଓ କାଠଘୋଡ଼ା
୮୧ । ଅରଣ୍ୟ ଫସଲ
୮୨ । କାଳୀଚରଣଙ୍କ ଭାତ ।
୮୩ । ବାସୁଦେବ ମହାପାତ୍ର ସୃଷ୍ଟିସମ୍ଭାର
୮୪ । ମନୋରଞ୍ଜନଙ୍କ ଶବ୍ଦଲିପି
୮୫ । ବିଲଙ୍କାରାମାୟଣ ସାରଳାଦାସଙ୍କର କି ?
୮୬ । ଆଚାର୍ଯ୍ୟ ପ୍ୟାରୀମୋହନ
୮୭ । ପାରିବାରିକ ପ୍ରେମ ଓ ସୁଭଦ୍ରା ପରିଣୟ
୮୮ । ବଳରାମଙ୍କ ବ୍ୟକ୍ତିତ୍ୱ - ମୂଲ୍ୟାୟନ
୮୯ । ଜଗମୋହନ ରାମାୟଣରେ ସମର ବର୍ଣ୍ଣନା
୯୦ । କିଷ୍କିନ୍ଧ୍ୟାକାଣ୍ଡର ମୁଖବନ୍ଧ- ଗୋକର୍ଣ୍ଣିକା
୯୧ । ଆମଧର୍ମ ଆମପୁରାଣ-ମହାଦୀପ
୯୨ । ସାରଳା ମହାଭରତର ମଧ୍ୟପର୍ବ
୯୩ । ସାରଳା ମହାଭାରତର ସଂପାଦନା- ପ୍ରଜ୍ଞା
୯୪ । ସାରଳା ମହାଭାରତରେ ଦ୍ରୌପଦୀ-ସାରଳା ମହାଭାରତରେ ଚରିତ୍ର ଚିତ୍ରଶାଳା ।
୯୫ । ସାରଳା ମହାଭାରତରେ ସାମାଜିକ ଚେତନା
୯୬ । ଷୋଡ଼ଶ ଶତାବ୍ଦୀରେ ସାହିତ୍ୟ, ପରୀକ୍ଷା, ଗୁରୁ, ଭଗବାନ
୯୭ । ଥକାମନ ଚାଲଯିବା-ଶ୍ରୀଜଗନ୍ନାଥ



Digitized by srujanika@gmail.com

୯୮। ସାରଳାଦାସଙ୍କ ରାମାୟଣ

୯୯। ବିଲଙ୍କା ରାମାୟଣ ନା ବିଚିତ୍ର ରାମାୟଣ

୧୦୦। ଶୁଦ୍ଧଲିପିର ଲିପିସଂସ୍କାର-ମନୋରଞ୍ଜନଙ୍କ ନାଟ୍ୟଦିଗନ୍ତ

୧୦୧। ପୋଥିପଢ଼ାର ପରମଗୁରୁ ପ୍ରହ୍ଲାଦ ପ୍ରଧାନ-ପ୍ରହ୍ଲାଦ ପ୍ରଧାନ ବିଶେଷାଙ୍କ

୧୦୨। ରଘୁଅରକ୍ଷିତ ବଂଶେ ନିପୁଣ ବଡ଼ଜେନା ପରିକ୍ରମା

୧୦୩। ଲକ୍ଷଣବନ୍ତ ସୁଲକ୍ଷଣା-ଅଭିମନ୍ୟୁ ସ୍ମରଣିକା : ସଂ. ଦୁଃଖୀଶ୍ୟାମ ପଟ୍ଟନାୟକ

୧୦୪। ତନ୍ତ୍ରସାହିତ୍ୟ-ପ୍ରାଚୀନ

୧୦୫। ଓଡ଼ିଆ ଶାକ୍ତସାହିତ୍ୟ-ବାର୍ତ୍ତାଭର୍ମି

୧୦୬। ପଞ୍ଚସଖା ପ୍ରବଞ୍ଚନା ନୁହେଁ-ଦିଗନ୍ତ

୧୦୭। ଜଗନ୍ନାଥ ଦାସଙ୍କ ଗୁରୁପରଂପରା-କୋଣାର୍କ (ପ୍ରବନ୍ଧ ବିଶେଷାଙ୍କ)

୧୦୮। ଗୋପକାବ୍ୟର ନାଟକୀୟ ତତ୍ତ୍ୱ - ପାଠଚକ୍ର ପ୍ରବନ୍ଧାବଳୀ

-୦-



Digitized by srujanika@gmail.com

# ପୋଥି ସମ୍ପାଦନା ଓ ପ୍ରଫେସର କୃଷ୍ଣଚରଣ

ଡ. କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ

ଯେକୌଣସି ଜାତିର ସାଂସ୍କୃତିକ ଐତିହ୍ୟ ସମ୍ବନ୍ଧରେ ଅବବୋଧ ହେବା ନିମିତ୍ତ ପରମ୍ପରା, ଧାର୍ମିକ ଅନୁଷ୍ଠାନ, ଶିଳାଲେଖ ଶିଳା ଲିପି, ଉପରେ ଗୁରୁତ୍ୱ ଆରୋପ କରିବା ସଦୃଶ ପ୍ରାଚୀନ ପାଣ୍ଡୁଲିପିକୁ ମଧ ଗ୍ରହଣ କରାଯାଇଥାଏ । ଏଥିରୁ ସେହି ଜାତିର ସାଂସ୍କୃତିକ ଚେତନା ସଂବନ୍ଧରେ ପ୍ରକୃତ ତଥ୍ୟ ମିଳିଥାଏ ।

ପ୍ରାଚୀନ ପାଣ୍ଡୁଲିପି ଦୀର୍ଘକାଳ ପର୍ଯ୍ୟନ୍ତ ସଂରକ୍ଷିତ ଅବସ୍ଥାରେ ରହିବା ସମୟ ତଥା ପରିବେଶ ଦୃଷ୍ଟିରୁ ସମ୍ଭବ ନୁହେଁ । ତେଣୁ ବହୁ ପୂରାକାଳରେ ଲିଖିତ ପାଣ୍ଡୁଲିପି ପରବର୍ତ୍ତୀ ସମୟରେ ମୂଳରୂପରେ ଉପଲବ୍ଧ ହୁଏ ନାହିଁ । ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ବ୍ୟବଧାନରେ ମୂଳଗ୍ରନ୍ଥ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଲିପିକାରମାନଙ୍କ ଦ୍ୱାରା ନୂତନ ରୂପ ପରିଗ୍ରହଣ କରିଥାଏ । ଯୁଗ ଯୁଗଧରି ପ୍ରାଚୀନ କବି ଲେଖକମାନଙ୍କ କୃତୀ ଏହିପରି ଅନୁଲିପି ବା ନୂତନ ଅନୁଲିପି ମାଧମରେ ତିଷ୍ଠି ରହିଛି । ଲିପିକାରମାନଙ୍କର ଏହି ପ୍ରକ୍ରିୟାରେ ସେମାନଙ୍କ ଜ୍ଞାତସାରରେ ବା ଅଜ୍ଞାତସାରରେ ବହୁ ଅପପାଠ ଏଥିରେ ପ୍ରବେଶ କରିଥାଏ । ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଲିପିକାରମାନଙ୍କଦ୍ୱାରା ଲିଖିତ ଗୋଟିଏ ମୂଳ ପାଣ୍ଡୁଲିପିର ଭିନ୍ନଭିନ୍ନ ଅନୁଲିପିକୁ ଏକତ୍ରକରି ତହିଁରୁ ଆପାତତଃ ଶୁଦ୍ଧପାଠ (ଯାହାକି ମୂଳଗ୍ରନ୍ଥର ନିକଟବର୍ତ୍ତୀ) ନିର୍ଣ୍ଣୟ କରିବା ହିଁ ସମ୍ପାଦନାର ମୌଳିକ ଲକ୍ଷଣ । ସମ୍ପାଦନାର ଅର୍ଥ ସାଧାରଣ ଭାବରେ ବ୍ୟାପକ । ଏହା ଗଳ୍ପ କବିତା ସଂକଳନଠାରୁ ପତ୍ର ପତ୍ରିକା ବା ସମ୍ବାଦପତ୍ରର ସଂପାଦନାପର୍ଯ୍ୟନ୍ତ ବୁଝାଇଥାଏ । ମାତ୍ର ପ୍ରାଚୀନ ପାଣ୍ଡୁଲିପି ସଂପାଦନା ଏହି ପର୍ଯ୍ୟାୟଭୁକ୍ତ ନୁହେଁ । ଇଂରାଜୀ ସାହିତ୍ୟରେ ସଂପାଦନା ନିମିତ୍ତ ବ୍ୟବହୃତ ହେଉଥିବା Textual Criticism ସଦୃଶ ଓଡ଼ିଆରେ ଉକ୍ତ ପାଣ୍ଡୁଲିପି ସଂପାଦନା କାର୍ଯ୍ୟକୁ 'ପାଠାଲୋଚନା ଭାବରେ ଗ୍ରହଣ କରାଯାଇପାରେ ।

ପ୍ରାଚୀନ ତଥା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ପୋଥି ସଂପାଦନାରେ କୃତିତ୍ୱ ଅର୍ଜନ କରିଥିବା ଡକ୍ଟର କୃଷ୍ଣଚରଣ ସାହୁଙ୍କ ସଂଗୃହୀତ ପ୍ରଥମ ପୋଥି 'ଶିଶୁବେଦ' ପୋଥି ସଂଗ୍ରହ କରିବାର ପ୍ରେରଣା ସେ ପାଇଛନ୍ତି ଡକ୍ଟର ବଂଶୀଧର ମହାନ୍ତିଙ୍କଠାରୁ । କିନ୍ତୁ ପୋଥି ପଢ଼ିବା ପଦ୍ଧତି ଶିଖିଛନ୍ତି ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନଙ୍କଠାରୁ । ତାଙ୍କରି ପ୍ରେରଣାରେ ସେ ପୋଥି ଉତାରିବାବେଳେ ପୋଥିରୁ ପ୍ରଥମ ପୃଷ୍ଠାର ସମ୍ମୁଖ ପାଖ ୧କ ଓ ପଛପାଖ ୧ଖ ଲେଖିବା ପ୍ରଣାଳୀରେ ଗୁରୁତ୍ୱ ଦେଇଛନ୍ତି । ପୋଥି ଉତାରିବାବେଳେ ସେଥିରେ ଯେଉଁ ଅକ୍ଷର ଯେଉଁ ଭାବେ ଲେଖାହୋଇଥିବ ତାକୁ ସେହିଭାବେ ନକଲ କରିଛନ୍ତି । ଡକ୍ଟର ସାହୁ କହନ୍ତି : 'ଅମରକୋଷ' ନାଥ ସଂପ୍ରଦାୟ ତଥା ସାହିତ୍ୟର ଏକ



Digitized by srujanika@gmail.com

ବିଶିଷ୍ଟ ଗ୍ରନ୍ଥ । ଏହି ପୋଥିର ଗୋଟି ପଙ୍କ୍ତିରେ ଥିଲା 'ବିସ...ପରାଏ ଠାଣି ।' କିଛି ବୁଝି ହେଉନଥାଏ । ବିଇସ, 'ବିକସ, 'ବି'କୁ 'କ' କରି କଳସ, କର୍କସ, କଇସ, ଏହିପରି ବହୁ ଶବ୍ଦ ମନକୁ ଆସୁଥାଏ ଓ ଯାଉଥାଏ । ବହୁଲୋକଙ୍କୁ ଦେଖାଇ ନିରାଶ ହୋଇଥାଏ । ଦିନେ ଯାଇ ପହଞ୍ଚିଲି ଅଧ୍ୟାପକ ପ୍ରଧାନଙ୍କ ପାଖରେ । ଦେଖିବାକ୍ଷଣି କହିଲେ, ବିକ୍ରମସିଂହ ପରାଏ ଠାଣି । ଆଶ୍ଚର୍ଯ୍ୟ ହୋଇଗଲି । ସେ ପରେଦେଖିଲେ ଏହି ପ୍ରୟୋଗକୁ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବହୁକବି ବ୍ୟବହାର କରିଛନ୍ତି । ପାଠ ସମସ୍ୟାର ସମାଧାନ ହେଲା । ବସ୍ତୁତଃ କେବଳ ଡକ୍ଟର ସାହୁଙ୍କ ପାଇଁ ନୁହେଁ, ପୋଥି ସମ୍ପାଦନା ନିମିତ୍ତ ଆପାତତଃ ଏହା ହିଁ ବିଶିଷ୍ଟ ପଦକ୍ଷେପ । କେବଳ ପୋଥି ସହିତ ପୋଥି ତୁଳନା କରିବା ବଦଳରେ ବିଜ୍ଞତ, ପାଣ୍ଡିତ୍ୟ ଓ ବିଚାରବୋଧରେ ଅଧିକ ଗୁରୁତ୍ୱ ପ୍ରଦାନ କରିବା ଆବଶ୍ୟକ । ପାଠାଲୋଚନା ପ୍ରକ୍ରିୟା ବିକୃତିରୁ ମୁକ୍ତହେବା ପାଇଁ ଲୋଡ଼ା ବିଚକ୍ଷଣ ମେଧା । ଡକ୍ଟର ସାହୁ ଏହି ଗୁଣର ଅଧିକାରୀ ।

ପାଠାଲୋଚନ ପ୍ରକ୍ରିୟାରେ ଗ୍ରନ୍ଥର ବିଭିନ୍ନ ପ୍ରତିଲିପି ସଂଗ୍ରହକରି ତୁଳନାତ୍ମକ ଆଲୋଚନା ସାହାଯ୍ୟରେ ମୂଳପାଠର ଅନୁସନ୍ଧାନକରିବା ସମୟରେ ସାଧାରଣତଃ ତିନିଗୋଟି ବିଭିନ୍ନତା ପରିଲକ୍ଷିତ ହୁଏ ଯଥା- ବିଭ୍ରାନ୍ତି, ଲୋପ, ବୃଦ୍ଧି । ଲିପିକାର ବା ନକଲକାରମାନେ ଏକ ପ୍ରାଚୀନ ପାଣ୍ଡୁଲିପିର ନକଲକରିବା ସମୟରେ କେତେକ ଅକ୍ଷରକୁ ସ୍ପଷ୍ଟଭାବରେ ପଢ଼ି ନପାରିବା ହେତୁ ଅଥବା କେତେକ ଶବ୍ଦକୁ ବୁଝିନପାରିବା ହେତୁ କିମ୍ବା ନିଜର ପ୍ରିୟଶବ୍ଦକୁ ଅନୁପ୍ରବେଶ କରାଇବାର ଆଗ୍ରହ ନେଇ ମୂଳପାଠରେ ବିଭ୍ରାଟି ସୃଷ୍ଟିକରିଥାନ୍ତି । କେତେକ ସମୟରେ ଅସାବଧାନତାବଶତଃ ବା ଭ୍ରମବଶତଃ ଅଥବା ନିଜର ବୁଦ୍ଧି ପ୍ରୟୋଗକରି ଉକ୍ତ ଶବ୍ଦ ବା ପଦଗୁଡ଼ିକୁ ଅନାବଶ୍ୟକ ମନେ କରି ଲୋପ କରିଦେଇଥାନ୍ତି । ପୁନଶ୍ଚ ଗ୍ରନ୍ଥରେ ଯେଉଁଠି ପ୍ରସଙ୍ଗକ୍ରମେ ବିବାହ ବର୍ଣ୍ଣନା ଯୁଦ୍ଧବର୍ଣ୍ଣନା, ଋତୁବର୍ଣ୍ଣନା ବା ରୂପବର୍ଣ୍ଣନା ପ୍ରଭୃତିଥାଏ, ତାହା ଯଦି ସଂକ୍ଷିପ୍ତ ଆକାରରେ ଦିଆଯାଇଥାଏ, ଲିପିକାର ବା ନକଲକାର ନିଜର ବୁଦ୍ଧି ପ୍ରୟୋଗକରି ନୂତନପଦ ସଂଯୋଜନକରି ଏହାକୁ ବୃଦ୍ଧି କରିଥାନ୍ତି । ଗ୍ରନ୍ଥର ବିଭିନ୍ନ ପ୍ରତିଲିପିକୁ ତୁଳନା କଲେ ଏହିସବୁ ବିଚ୍ୟୁତି ଦେଖିବାକୁ ମିଳେ ।

ପୋଥିସଂଗ୍ରହ ପାଠାଲୋଚନ ପାଇଁ ମୁଖ୍ୟକାର୍ଯ୍ୟ । ଦେଶର ବିଭିନ୍ନ ସ୍ଥାନରୁ ଗ୍ରନ୍ଥର ଅନୁଲିପି ସଂଗ୍ରହକରିବା ଆବଶ୍ୟକ । ସାଧାରଣତଃ ତାଳପତ୍ରପୋଥି ଶହେବର୍ଷରୁ ଅଧିକକାଳ ସଂରକ୍ଷିତ ହୋଇ ରହିପାରେ ନାହିଁ । ତେଣୁ ଓଡ଼ିଶାରେ ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀରେ ଲିଖିତ ତାଳପତ୍ର ପୋଥିଗୁଡ଼ିକର ଦୀର୍ଘ ପାଞ୍ଚଶହବର୍ଷ ବ୍ୟବଧାନରେ ଅନ୍ୟୁନ ତିନିରୁ ଚାରିଥର ପ୍ରତିଲିପି କରାଯାଇଥିବ । ଅନୁଲିପିକାର ଅସାବଧାନତା ହେତୁ ପ୍ରତ୍ୟେକ ପୋଥି ଅନ୍ୟଠାରୁ ଭିନ୍ନ ହୋଇଯାଉଥିବା ସ୍ୱାଭାବିକ । ଅଧିକନ୍ତୁ ତିନିରୁ ଚାରିଟି ପ୍ରତିଲିପି ଭିନ୍ନ ଭିନ୍ନ ସମୟରେ ହେବାପରେ ମୂଳପାଠର ମୌଳିକତା କ୍ରମଶଃ ପରିବର୍ତ୍ତିତ ହୋଇଯାଏ । ତେଣୁ ପୋଥି ସଂପାଦନା କରିବା ସମୟରେ ପୋଥିର ପରିବାର ନିର୍ଣ୍ଣୟ କରିବା ଆବଶ୍ୟକ । ଏହା ଫଳରେ ତୁଳନା କରିବା ଅପେକ୍ଷାକୃତ ସହଜ ହୋଇଥାଏ ।

ପୋଥି ସଂପାଦକ ହେବା ନିମିତ୍ତ ଡକ୍ଟର ସାହୁଙ୍କ ମତାନୁଯାୟୀ କେତେଗୁଡ଼ିଏ ଯୋଗ୍ୟତା ଆବଶ୍ୟକ । ସେଗୁଡ଼ିକ ହେଉଛି -



Digitized by srujanika@gmail.com

୧। ଅଭିରୁଚି
୨। ଲିପିଜ୍ଞାନ
୩। ଭାଷାଜ୍ଞାନ
୪। ଇତିହାସଜ୍ଞାନ
୫। ହସ୍ତଲେଖ-ପରୀକ୍ଷଣ କ୍ଷମତା
୬। ଚିତ୍ରକଳାର ଜ୍ଞାନ
୭। ବିବେକର ପ୍ରୌଢ଼ତା
୮। ଶାରୀରିକ କ୍ଷମତା
୯। ଆର୍ଥିକ ନିଶ୍ଚିତତା
୧୦। ମାନସିକ ଶାନ୍ତି
୧୧। ଯଶକାମନାର ଅଭାବ
୧୨। ସଂପାଦନ ବିଧିର ଜ୍ଞାନ।

ଏହିସବୁ ଗୁଣନଥିଲେ କେବଳ ବହି ପ୍ରକାଶିତ ହୋଇଯାଏ, ଅଥଚ ଜାତିର ପ୍ରକୃତ ଇତିହାସ ଜାଣିହୁନାହିଁ।

F.W. Hall ପାଠାଲୋଚନା ସମ୍ବନ୍ଧରେ କହନ୍ତି- "Many people tend to regard textual criticism as a disease but it is neither a disease nor a science but simply the application of commonsense to a class of problems which connect all imaginaries whose evidence rest upon the authority of manuscript document,"

ଏହି ଉକ୍ତି ଅନୁଯାୟୀ ପାଠାଲୋଚନର ପ୍ରଥମ ଉପାଦାନ ହେଉଛି ଉପଲବ୍ଧ ବା Manuscript ଅନ୍ୟ ଅନୁଲିପିର ସାହାଯ୍ୟରେ ଏହାର ଅପପାଠ ବା ଅନ୍ୟପାଠ ଦୂରକରାଯାଇଥାଏ। କେବଳ ସାଧାରଣ ବିଚାରବୋଧ ବା common senseର ପ୍ରୟୋଗରେ ପୋଥିରେ ଥିବା ପ୍ରମାଦ ବା desease ଦୂରକରାଯାଇପାରେ। ମୂଳ ପାଣ୍ଡୁଲିପିର ନକଲରେ ପ୍ରମାଦର ସଂଖ୍ୟା ବୃଦ୍ଧି ପାଇଥାଏ। ଏହି ପ୍ରମାଦଗୁଡ଼ିକୁ ସାଧାରଣତଃ ତେରଭାଗରେ ବିଭକ୍ତ କରାଯାଇପାରେ।

୧। ଅକ୍ଷର ସାଦୃଶ୍ୟ-ଶ-ଣ, କଃହ, ଗ-ସ, ହ-ଇ, ପ-ଗ, ଜ-ପ, ର-ଉ-କ।
୨। ଶବ୍ଦ ସାଦୃଶ୍ୟ- ଏକ ଶବ୍ଦାସ୍ଥାନରେ ଅନ୍ୟ ଶବ୍ଦ ଗ୍ରହଣ ରୁଚିତ-ରଚିତ, ବୁଦ୍ଧ-ବୁଧ
୩। ସଂଯୁକ୍ତ ଶବ୍ଦର ଅପବ୍ୟାଖ୍ୟାନ-ପ୍ରମାଦବଶତଃ ଦୁଇଟି ଶବ୍ଦର ସଂଯୋଗ ବା ସ୍ୱତନ୍ତ୍ରୀକରଣ। ଗୋଟିଏ ବାକ୍ୟ ସହ ଅନ୍ୟଗୋଟିଏ ବାକ୍ୟର ମିଶ୍ରଣ। ଅକ୍ଷର, ଶବ୍ଦ ବା ବାକ୍ୟର ସ୍ଥାନ ପରିବର୍ତ୍ତନ।
୪। ଉଚ୍ଚାରଣଗତ ପ୍ରମାଦ
୫। ସଂଖ୍ୟାଗତ ପ୍ରମାଦ



Digitized by srujanika@gmail.com

୬। ନାମଗତ ପ୍ରମାଦ
୭। ପର୍ଯ୍ୟାୟବାଚୀ ଶବ୍ଦର ପ୍ରୟୋଗ
୮। ଅପରିଚିତ ଶବ୍ଦ ସ୍ଥାନରେ ପରିଚିତ ଶବ୍ଦର ବ୍ୟବହାର
୯। ପ୍ରାଚୀନ ବନାନ ସ୍ଥାନରେ ଆଧୁନିକ ବନାନ
୧୦। ଶବ୍ଦ ସଂଶୋଧନ
୧୧। ପାଠ, ଶବ୍ଦ ବା ପଦ ପରିତ୍ୟାଗ
୧୨। ପୁନରାବୃତ୍ତିଜନିତ ସାମ୍ୟ
୧୩। ନିଜ ରୁଚି ଅନୁଯାୟୀ ଶବ୍ଦର ବ୍ୟବହାର

ପାଠାଲୋଚନ ସମୟରେ ଉପରୋକ୍ତ ପ୍ରମାଦଗୁଡ଼ିକୁ ଦୂରକରିବା ନିମିତ୍ତ ଚାରିଗୋଟି ପଦ୍ଧତି ଅବଲମ୍ବନ କରିବା ଆବଶ୍ୟକ-

(କ) ସଂଗୃହୀତ ଅନୁଲିପିଗୁଡ଼ିକୁ ଏକତ୍ର କରି କାଳାନୁକ୍ରମରେ ସଜାଇବା ଓ ସାବଧାନତା ସହ ଅନୁଲିପି ପ୍ରସ୍ତୁତ କରିବା।
(ଖ) ଉକ୍ତ ଉପାଦାନରୁ ପ୍ରକୃତ ପାଠର ସନ୍ଧାନକରିବା
(ଗ) ଗ୍ରନ୍ଥକାରଙ୍କ ସମ୍ଭାବିତ ପାଠର ପୁନରୁଦ୍ଧାର କରିବା
(ଘ) ସମ୍ଭାବିତ ପାଠ ଓ ଅପପାଠ ବା ପାଠାନ୍ତରର ବିଶ୍ଳେଷଣ କରିବା।

ପୋଥି ସଂଗ୍ରହ କରିବାପରେ କାଳାନୁକ୍ରମିକ ତଥା ପରମ୍ପରାନୁଯାୟୀ ସେଗୁଡ଼ିକ ବିଭାଗୀକରଣ କରି ଅନ୍ତରଙ୍ଗ ଓ ବହିରଙ୍ଗ ବିଶ୍ଳେଷଣ ଦ୍ୱାରା ପାଣ୍ଡୁଲିପିର ଶୁଦ୍ଧ ସଂପାଦନା ପାଇଁ ସ୍ଥିର କରାଯାଇଥାଏ। ଏଥି ନିମିତ୍ତ ବିଭିନ୍ନ ପୋଥିର ଏକ ନିର୍ଦ୍ଦିଷ୍ଟ ଅଂଶକୁ ନେଇ ତୁଳନାତ୍ମକ ବିଚାରଦ୍ୱାରା ଆଦର୍ଶ ପୋଥି ନିର୍ଣ୍ଣୟ କରାଯାଏ। ତା'ପରେ ପାଠାଲୋଚନ ପ୍ରକ୍ରିୟା। ଏଥିରେ ସଂପାଦକ ନିଜର ବିଜ୍ଞତା, ପାଣ୍ଡିତ୍ୟ, ବିଚାରବୋଧ ଓ ମେଧାଶକ୍ତି ପ୍ରୟୋଗ କରି ପୋଥି ସଂପାଦନା କରିଥାଏ। ସାଧାରଣତଃ ପାଠାଲୋଚନ ପ୍ରକ୍ରିୟାରେ ଅନୁଦାରବାଦୀ ବା conservative ଆଲୋଚକରଣ ବିଜ୍ଞାନ ସମ୍ମତ ବ୍ୟାଖ୍ୟାକୁ ଆଧାରକରି ଅନୁଲିପିରୁ ଭ୍ରଷ୍ଟ ଅଂଶକୁ ପରିତ୍ୟାଗ କରି ସଂଶୋଧନ କରିଥାନ୍ତି। ଏମାନେ ପାଠାଲୋଚନରେ ପାଠର ବ୍ୟାଖ୍ୟାରେ ଅଧିକ ଗୁରୁତ୍ୱ ଆରୋପ କରିଥାନ୍ତି। ଅନ୍ୟପକ୍ଷରେ ଉଦାର ଆଲୋଚକମାନେ ବ୍ୟାଖ୍ୟା ଅପେକ୍ଷା ଅନୁଲିପି ସଂଶୋଧନରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି। ଡକ୍ଟର ସାହୁଙ୍କ ମତାନୁଯାୟୀ ''ସମସ୍ତ ଉପଲବ୍ଧ ହସ୍ତଲିଖିତ ପ୍ରତିଲିପିର ବିଭିନ୍ନ ପାଠାନ୍ତରକୁ ବୈଜ୍ଞାନିକ ବ୍ୟାଖ୍ୟାକରି ଯେଉଁ ପାଠ ଅତ୍ୟନ୍ତ ଭ୍ରଷ୍ଟ ସେ ସ୍ଥଳରେ ସବୁ ପ୍ରତିଲିପିରେ ଥିବା ଯଥାର୍ଥ ପାଠକୁ ଗ୍ରହଣକରି ଏହାକୁ ଅନ୍ତଃସାକ୍ଷ୍ୟ ଅନୁଯାୟୀ ଗ୍ରହଣ କରିବା ଆବଶ୍ୟକ। ସେତେବେଳେ ଆହୁରି ଅଧିକ ପୋଥି ସଂଗ୍ରହକରି ଏହି ପାଠକୁ ପରୀକ୍ଷାକଲେ ପ୍ରାୟ ପ୍ରକୃତ ପାଠ ନିର୍ଣ୍ଣୟରେ ଏହାହିଁ ପ୍ରକୃତ ପନ୍ଥା।''

ପୋଥି ସଂପାଦନାରେ ଡକ୍ଟର ସାହୁ କିପରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିପାରିଛନ୍ତି। ତାହା ନିମ୍ନରେ ପ୍ରଦତ୍ତ କେତେଗୋଟି ଉଦାହରଣରୁ ସ୍ପଷ୍ଟ ବାରିହୋଇପଡ଼େ-



Digitized by srujanika@gmail.com

(କ) ସାରଳା ମହାଭାରତ :

''ଅଗ୍ନିକାର ଋଷି ବୋଇଲେ ତାହିଁ ଅପାର ଆମ୍ଭେ କଲୁ ।
ତେମନ୍ତେହେଁ ପ୍ରତ୍ରକ୍ଷାତ କରି ତ ନୂଆରିଲୁ ।'' *ଆଦି - ୩୪।୮୭ (ଆର୍ତ୍ତବଲ୍ଲଭ ସଂପାଦିତ)*

''ଅଗ୍ନିକାର ମହରଷି ବୋଇଲେ ଆମ୍ଭେ ତାହା ପାରକଲୁ,
ତେମନ୍ତେହେଁ ପ୍ରତ୍ରକ୍ଷାତ କରି ତ ନୂଆରିଲୁ ।'' *(ଡଃ ସାହୁଙ୍କ ସଂପାଦିତ)*

(ଖ) ଭାଗବତ :

''ସେ ଘୋର ଚିନ୍ତାରେ କାତରେ,
ରୋଦନ କଲେ ଉଚ୍ଚସ୍ୱରେ ।'' *୧୦।୩୧।୧୧ - (ରାଧାରମଣ ପୁସ୍ତକାଳୟ)*

''ଘୋର ଚିନ୍ତାରେ କାତରରେ
ରୋଦନ କଲେ ଉଚ୍ଚସ୍ୱରେ ।'' *୧୦।୩୧।୧୧ - (କପିଳେଶ୍ୱର ବିଦ୍ୟାଭୂଷଣ)*

''ଚିନ୍ତା ସାଗର ମହାଘୋରେ
ରୋଦନ କଲେ ଉଚ୍ଚସ୍ୱରେ ।'' *୧୦।୩୧।୧୧ - (ଡଃ ସାହୁଙ୍କ ସମ୍ପାଦିତ)*

(ଗ) ପରିମଳା :

''ବେଦନ ସଂପୂର୍ଣ୍ଣ ଚନ୍ଦ୍ରମଣ୍ଡଳ,
ବାମ ଅଙ୍ଗେତ ଲୁଚାଇ କୁଣ୍ଡଳ ।'' *(କେଦାର ନାଥ ମହାପାତ୍ର ସଂପାଦିତ)*

କୁଣ୍ଡଳକୁ ବାମ ଅଙ୍ଗରେ ପିନ୍ଧିଲେ ଡାହାଣ ଅଙ୍ଗର ଅବସ୍ଥା କ'ଣ ହେଲା ? ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥିରେ ଉଲ୍ଲେଖ ଅଛି - ''କର୍ଣ୍ଣରେ ଶୋହଇ ବେନି କୁଣ୍ଡଳ ।'' ଏଠି ମଧ ଅର୍ଥ ସ୍ପଷ୍ଟନୁହେଁ । ବେନି କୁଣ୍ଡଳ କ'ଣ ଗୋଟିଏ କର୍ଣ୍ଣରେ ନା ଦୁଇ କର୍ଣ୍ଣରେ ? ଏହିପରି ପ୍ରଶ୍ନ ପଚାରିବାପରେ ସମ୍ଭାବିତ ପାଠଟି ମନକୁ ଆସିଥାଏ ।

''ବଦନ ସଂପୂର୍ଣ୍ଣ ଚନ୍ଦ୍ରମଣ୍ଡଳ,
ବେନିକର୍ଣ୍ଣରେ ଶୋହଇ କୁଣ୍ଡଳ ।'' *(ଡ: ସାହୁଙ୍କ ସଂପାଦିତ)*

(ଘ) ଲାବଣ୍ୟବତୀ :

କ - ''ଏବେ ଚିତ୍ର ରୁଚିତ ସୁମଧୁର,
ଶ୍ରୁତି ବଦନରେ ପାନକର ବୁଧ ନର ହେ ।'' *(ଆର୍ତ୍ତବଲ୍ଲଭଙ୍କ ପାଠ)*

ଖ- ''ଏବେ ଚିତ୍ର ରଞ୍ଜନ ଚରିତ ସୁମଧୁର,
ଶ୍ରୁତିବଦନରେ ପାନକର ବୁଦ୍ଧ ନର ହେ ।'' *(ନୀଳକଣ୍ଠଙ୍କ ପାଠ)*

ଗ- ''ଏ ବିଚିତ୍ର ଚରିତ ରଚିତ ସୁମଧୂର,
ଶ୍ରୁତିବଦନରେ ପାନକର ବୁଦ୍ଧ ନର ହେ ।'' *(ବଜାର ପୁସ୍ତକର ପାଠ)*



Digitized by srujanika@gmail.com

କ ଓ ଘ ପାଠକୁ ତୁଳନା କରାଯାଉ । ଏଥିରେ ପ୍ରଥମ ପାଦର ଶେଷାଂଶରେ ସାମ୍ୟ ଅଛି - 'ରଚିତ ସୁମଧୁର' । ଖ ଓ ଗ ପୋଥିରେ ମଧ୍ୟ ଚରିତ ଶବ୍ଦର ସାମ୍ୟ ପରିଦୃଷ୍ଟହୁଏ । ତେଣୁ 'ଚରିତ ରଚିତ ସୁମଧୁତ' ପାଠ ଗ୍ରହଣ କଲାପରେ ଦେଖାଯିବ ବାକୀଥିବା 'ଏ ବିଚିତ୍ର' (ଗ-ପାଠ) ପାଠକୁ କୌଣସି ଲିପିକାର 'ବି'କୁ ବେ ପାଠ କରିବାଫଳରେ ଚିତ୍ରର କୌଣସି ଅର୍ଥରହିଲା ନାହିଁ ଏବଂ ଲିପିକାର ଅର୍ଥରେ ସଂଗତି ଆଣିବାପାଇଁ ଚିତ୍ରକୁ ଚିଉ କଲା । ଚିତ୍ର ଶବ୍ଦପରେ ରୁଚିତ ବା ରଞ୍ଜନ ଶବ୍ଦ ସୃଷ୍ଟି ହେଲା । ଏଇଥିରୁ ପୋଥିର ପରିବାର ନିର୍ଣ୍ଣୟ କରାଯାଇପାରେ । 'ଗ' ପୋଥି ଏକ ପରିବାରର ଏବଂ 'କ' ଓ 'ଖ' ପୋଥି ଅନ୍ୟ ଏକ ପରିବାରର । ଅନ୍ୟପଦକୁ ତୁଳନାରୁ ଏହି ପରିବାର ନିର୍ଣ୍ଣୟ କାର୍ଯ୍ୟ ସମାପନ କଲାପରେ ଦେଖାଯିବ ଯେ 'ଗ' ପୋଥିର ଉକ୍ତ ପଦଟି ହିଁ ପ୍ରକୃତ ପାଠ ଦେବାପାଇଁ ସମର୍ଥ । ତେଣୁ ଡ. ସାହୁଙ୍କ ସଂପାଦିତ ପାଠ ହେଉଛି -

" ଏ ବଚିତ୍ର ଚରିତ ରତ ସୁମଧୁର
ଶ୍ରୁତିବଦନରେ ପାନକର ବୁଦ୍ଧ ନର ହେ ।"

କେବଳ ପୋଥିରେ ଅଛି ବୋଲି ଉଚ୍ଚାରିଦେଲେ ସଂପାଦନା ହୁଏନାହିଁ, ଆବଶ୍ୟକବେଳେ ସଂଶୋଧନ ମଧ୍ୟ ଆବଶ୍ୟକ ହୁଏ । ଉପରୋକ୍ତ ଚାରିଗୋଟି ଉଦାହରଣରୁ ଡକ୍ଟର ସାହୁଙ୍କ ସଂପାଦନାର ମୌଳିକତା ସହଜରେ ଜାଣିହୁଏ । ଦୀର୍ଘ ତିନି ଦଶନ୍ଧିଧରି ପୋଥି ସହ ସଂପୃକ୍ତ ଏହି ସାଧକ ବିଭିନ୍ନ ତାଳପତ୍ର ପୋଥି ସଂଗ୍ରହକରି ରହିଁରୁ ଶୁଦ୍ଧପାଠ ନିର୍ଣ୍ଣୟ କରି ଚଉଦଟି ମୂଲ୍ୟବାନ ଗ୍ରନ୍ଥ ସଂପାଦନା କରିଛନ୍ତି । ସେଗୁଡ଼ିକ ହେଉଛି-

୧ । ସାରଳା ମହାଭାରତ (ଆଦିପର୍ବ)- ୧୯୮୧, (୨) ଉଦ୍ଧବ ଗୀତା- ୧୯୮୧, (୩) ଧର୍ମଗୀତା- ୧୯୮୧, (୪) ଶ୍ରୀମଦ୍ ଭଗବଦ୍ ଗୀତା- ୧୯୮୧, (୫) ରାସ ପଞ୍ଚାଧ୍ୟାୟୀ- ୧୯୮୨, (୬) ଚାରିଖାନି- ୧୯୮୨, (୭) ପ୍ରାଚୀନ କାବ୍ୟଧାରା- ୧୯୮୨, (୮) ପରିମଳା ୧୯୮୩ (୯) ଜଗମୋହନ ରାମାୟଣ-୧୯୮୩ (ଦୁଇଖଣ୍ଡ ପ୍ରକାଶିତ), (୧୦) ରୁଦ୍ରସୁଧାନିଧି- ୧୯୮୩, (୧୧) ଚଣ୍ଡୀପୁରାଣ- ୧୯୮୪, (୧୨) ଶ୍ରୀମଦ୍ ଭାଗବତ-୧୯୮୫ (ଛଅଖଣ୍ଡ ପ୍ରକାଶିତ), (୧୩) ବ୍ରହ୍ମାଣ୍ଡ ଭୂଗୋଳ-୧୯୮୬, (୧୪) ଗୋବିନ୍ଦ- ଚନ୍ଦ୍ର ୧୯୮୬।

ଡକ୍ଟର ସାହୁ ଦୀର୍ଘକାଳଧରି ସଂଗ୍ରହ କରିଥିବା ପୋଥିଗୁଡ଼ିକ ୧୯୭୦ ମସିହାରେ ୩୧୫ଟି ପୋଥିର ପରିଚୟ ରାଭେନ୍ସା କଲେଜଦ୍ୱାରା ପ୍ରକାଶିତ 'Descriptive catalouge of Oriya manuscripts'ରେ ପ୍ରକାଶ ପରିଥିଲେ । ପରବର୍ତ୍ତୀ ସମୟରେ ସହସ୍ରାଧିକ ପୋଥି ସଂଗ୍ରହ କରିଛନ୍ତି । ତାଙ୍କ ନିକଟରେ ଥିବା ସଂସ୍କୃତ, ଓଡ଼ିଆ ତଥା ଚିତ୍ରପୋଥିଗୁଡ଼ିକ ଅତୀତ ଓଡ଼ିଶାର ଜୀବନଧାରା, ସମାଜ, ସାହିତ୍ୟ, ସଂସ୍କୃତି ତଥା ଇତିହାସ ଦୃଷ୍ଟିରୁ ଅମୂଲ୍ୟ ସଂପଦ । ଉକ୍ତ ପୋଥିଗୁଡ଼ିକର ଶୁଦ୍ଧ ସଂପାଦନା ନିମିତ୍ତ ସେ ବ୍ୟକ୍ତିଗତ ଭାବରେ ଦୀର୍ଘକାଳ ଧରି କାର୍ଯ୍ୟ କରିଯାଇଛନ୍ତି ।



Digitized by srujanika@gmail.com

# ଶ୍ରଦ୍ଧାଞ୍ଜଳି

**ପ୍ରଫେସର ଗୌର କିଶୋର ଦାସ**

ଗତ ଏପ୍ରିଲ ଛ’ ତାରିଖରେ ପ୍ରଫେସର କୃଷ୍ଣ ଚରଣ ସାହୁଙ୍କର ତିରୋଧାନ ଫଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବିପୁଳ କ୍ଷତି ଘଟିଲା । ସେ ଗତ କିଛିଦିନ ଧରି ଅସୁସ୍ଥଥିଲେ । କିନ୍ତୁ ଏତେ ଶୀଘ୍ର ତାଙ୍କର ତିରୋଧାନ ହୋଇଯିବ ବୋଲି କେହି ଭାବି ନଥିଲେ ।

ପ୍ରଫେସର ସାହୁ ୧୯୭୧ ରୁ ୧୯୮୯ ଯାଏ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପନା କରିଥିଲେ । ତାହା ପୂର୍ବରୁ ସେ ବିଶ୍ୱଭାରତୀ ଓ ରାଞ୍ଚି ବିଶ୍ୱବିଦ୍ୟାଳୟର ଅଧ୍ୟାପକଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କରିବା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସେ visition professor ପରିଦର୍ଶକ ଅଧ୍ୟାପକ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ । ଅଧ୍ୟାପକ ଜୀବନରେ ସେ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ନିଜର ଅସାଧାରଣ ନିଷ୍ଠାର ପରିଚୟ ଦେଇ ଯାଇଛନ୍ତି । ପ୍ରାଚୀନ ଓ ମଧ୍ୟଯୁଗର ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ ତାଙ୍କର ସମକକ୍ଷ ଜଣେ ବ୍ୟକ୍ତିତ୍ୱ ଖୋଜି ପାଇବା ସହଜ ନୁହେଁ ।

ପ୍ରାଚୀନ ତାଳ ପତ୍ର ପୋଥିରୁ ପାଠୋଦ୍ଧାର କରିବା ତଥା ପ୍ରାଚୀନଗ୍ରନ୍ଥ ଗୁଡ଼ିକର ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରିବାରେ କୃଷ୍ଣ ଚରଣ ସାହୁ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଉତ୍ତରାଧିକାରୀଥିଲେ । ମୃତ୍ୟୁ ପୂର୍ବରୁ ସେ ବଳରାମ ଦାସଙ୍କ ଜଗମୋହନ ରାମାୟଣର ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରି ପ୍ରକାଶ କରିଥିଲେ । ଏହା ତାଙ୍କୁ ସ୍ମରଣୀୟ କରି ରଖିବ ।

ଗତ ନଭେମ୍ବର ସତେଇଶ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାଦିବସ ଅବସରରେ ଅନୁଷ୍ଠିତ ପୁସ୍ତକ ପ୍ରଦର୍ଶନୀରେ ପ୍ରଫେସର ସାହୁଙ୍କ ସଂପାଦିତ ‘ହରିବଂଶ’ ଉନ୍ମୋଚିତ ହୋଇଥିଲା । ଏହା ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ପ୍ରକାଶିତ ହୋଇଛି । ଏହି ଉନ୍ମୋଚନ ଉତ୍ସବରେ ପ୍ରଫେସର ସାହୁ ଉପସ୍ଥିତ ଥିଲେ । ତାଙ୍କର ଉତ୍ସାହ ଓ କର୍ମ ଚଞ୍ଚଳତା ଆମ ସମସ୍ତଙ୍କୁ ବିଶେଷ ଅନୁପ୍ରାଣିତ କରୁଥିଲା । ତାଙ୍କର ଅପ୍ରକାଶିତ ବା ଅସମ୍ପୂର୍ଣ୍ଣ ରହିଥିବା ଲେଖା ଇତ୍ୟାଦିକୁ ସଂଗ୍ରହ କରି ପାଠାଗାରରେ ରଖିବା ଦାୟିତ୍ୱ ବିଶ୍ୱବିଦ୍ୟାଳୟ ବହନ କରିବା ଉଚିତ୍ । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଓ ମୋ ନିଜ ପକ୍ଷରୁ ସ୍ୱର୍ଗତ ସାହୁଙ୍କ ଆମର ଆତ୍ମା ପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ।

❒ କୁଳପତି,
ଉତ୍କଳ ବିଶ୍ୱବିଦ୍ୟାଳୟ



Digitized by srujanika@gmail.com

# କୁଳଗୁରୁ କୃଷ୍ଣ ଚରଣ ସାହୁ

ପ୍ରଫେସର ସରୋଜ କୁମାର ମିଶ୍ର

ଠିକ୍ ମନେ ନାହିଁ - ୧୯୫୭ କିମ୍ବା ୧୯୫୮ ମସିହା ହେବ । ଆମେ କେତେଜଣ ବିଭାଗ ତରଫରୁ ରାଞ୍ଚି ଯାଉଥିଲୁ । ରାଞ୍ଚି ମହାବିଦ୍ୟାଳୟରେ ଦୁଇଜଣ ଓଡ଼ିଆ ବ୍ୟକ୍ତିଙ୍କୁ ଦେଖି ବହୁତ ଖୁସି ହୋଇଥିଲୁ । ଜଣେ ଥିଲେ ଏ ମହାବିଦ୍ୟାଳୟରେ ଅଧକ୍ଷ, ଶ୍ରୀଯୁକ୍ତ ବିଧୁଭୂଷଣ ଦାସ । ଆଉ ଜଣେ ଅଧାପକ ଶ୍ରୀଯୁକ୍ତ କୃଷ୍ଣ ଚରଣ ସାହୁ । କୃଷ୍ଣ ସାର୍‌ଙ୍କ ସାଙ୍ଗରେ ଏ ଥିଲା ମୋର ପ୍ରଥମ ସାକ୍ଷାତ୍ । ଏହାପରେ ତାଙ୍କ ସାଙ୍ଗରେ ବାଣୀ ବିହାରରେ ଦେଖା ୧୯୭୧ ମସିହାରେ । ସେହଦିନଠାରୁ ଏ ପର୍ଯ୍ୟନ୍ତ ମୋର ତାଙ୍କ ସାଙ୍ଗରେ ଗଭୀର ସମ୍ପର୍କ ।

କୃଷ୍ଣସାର୍ ଥିଲେ ମୋ ପାଇଁ ଏକ ଆଦର୍ଶ ସ୍ଥାନୀୟ ପୂଜନୀୟ ବ୍ୟକ୍ତି । ମୁଁ ତାଙ୍କୁ ଥଟ୍ଟାରେ କୁଳଗୁରୁ କୃପାଚାର୍ଯ୍ୟ ବୋଲି ସମ୍ବୋଧନ କରେ । ପକ୍ୱକେଶ, ବଳିଷ୍ଠ ଶରୀର, ଋଷି ପ୍ରତିମ ବ୍ୟବହାର, ଏକନିଷ୍ଠ କର୍ମ ସାଧନା, ନିରାଡ଼ମ୍ବର ଜୀବନଯାତ୍ରା, ଗଭୀର ଆତ୍ମୀୟତା, ପିତୃତୁଲ୍ୟ ଉପଦେଶ ଇତ୍ୟାଦିଥିଲା ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର କେତୋଟି ଅଳଙ୍କାର । ଅହଙ୍କାର, ଗର୍ବ, କ୍ରୋଧ, କାମନା ବାସନାର ସେ ଥିଲେ ଅନେକ ଉର୍ଦ୍ଧ୍ୱରେ । ପରଚର୍ଚ୍ଚା, ପରନିନ୍ଦା, ପରଶ୍ରୀ କାତରତା ତାଙ୍କୁ ସ୍ପର୍ଶ କରି ନଥିଲା । କେବେ ସେ କିଛି ଅଭିଯୋଗ କରିବାର ମୁଁ ଜାଣେ ନାହିଁ । ତାଙ୍କର ଅନେକ ପ୍ରାପ୍ୟଥିଲେ ମଧ ସେ କେବେ କିଛି ସେ ବିଷୟରେ ପ୍ରକାଶ କରି ନାହାନ୍ତି । ଦୃଢ଼ ଆତ୍ମବିଶ୍ୱାସ ଓ ପ୍ରଗାଢ଼ ମନୋବଳ ଯୋଗୁଁ ସେ କେବଳ ୧୫ ଦିନ ପାଇଁ କ୍ୟାନସର ଭଳିଆ ରୋଗ ଆଗରେ ପରାଜୟ ସ୍ୱୀକାର କରିଥିଲେ । ହେ ମହାତ୍ମା, ଏ ବନ୍ଧୁର ପ୍ରଣାମ ସ୍ୱୀକାର କରନ୍ତୁ ଏବଂ ସ୍ୱର୍ଗରେ ଥାଇ ଆପଣଙ୍କର ଆଦର୍ଶରେ ଆମକୁ ଉଦ୍‌ବୁଦ୍ଧ କରନ୍ତୁ ।

❒ ସ୍ନାତକୋତ୍ତର ମନସ୍ତତ୍ତ୍ୱ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ



Digitized by srujanika@gmail.com

# କାହିଁରେ ନ ଲାଗେ ମନ

ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ ।

ବାରାଣସୀରୁ ଫେରି ୨୭ ମାର୍ଚ୍ଚ ସକାଳେ ଭୁବନେଶ୍ୱରରେ ପହଁଚିଲି । ପ୍ରାୟ ଦଶଟା ବେଳକୁ ଯତି ଫୋନ୍ କଲା, ''ତୁ ଆସିଥିବୁ କାଳେ ବୋଲି ଫୋନ୍ କଲି । ଶୁଣ୍, କୃଷ୍ଣଦେହ ବହୁତ ଖରାପ । ଆଜି ସଂଜରେ କଟକରେ ଅପରେସନ୍ ହବ ।'' କ'ଣ ସେଇ ଗଲ୍‌ଷ୍ଟୋନ୍ ? ପଚାରିଲି ସିନା, ମାତ୍ର ମନକୁ ପାପ ଛୁଇଁଲା । ଯତି ନାହିଁକରି ସେ ଯାଏ ଚିହ୍ନାଟ ହେଇଥିବା କଥାଗୁଡ଼ିକ କହିଲା । ରାତି ଦଶଟାସୁଦ୍ଧା ଅପରେସନ ଫଳାଫଳ ଜାଣିହେବ ଜଣେଇ ସେ ଖବର ପାଇଲେ ଫୋନ୍ କରିବ କହି ଫୋନ୍ ରଖିଲା । ରାତିରେ ଫୋନ୍ କଲି । ନାଇଁ, ଖବର ନାହିଁ । ପରଦିନ ୨୮ ସକାଳୁ ଫୋନ୍‌କଲା ''କାଲି ରାତି ଦଶଟାପରେ ଅପରେସନ ହେଇଚି । ଡିଟେଲ୍‌ସ ଜଣାନାହିଁ । ଯିବା, ଦେଖି ବୁଝାବୁଝି କରି ଫେରିଆସିବା ।'' ଦେବୀ ଗଣେଶ୍ୱର ଓ ଯତିକୁ ଧରି ଆସିଲା । ମୁଁ ସାଙ୍ଗ ହେଲି । ଗଲୁ, ଦେଖିଲୁ । ଫେରିଲୁ । ଜାଣିଲି ଆମର ଚରମ ଆଶଙ୍କା ସତ । କୃଷ୍ଣ ଚାଲିଗଲା ।

ଛ ତାରିଖ ଅପ୍ରେଲ୍ ରବିବାର ଖରାବେଳେ ଆମେ ତିନିସାଙ୍ଗ ଦେବୀବସାରେ ବସିଛୁ । କୃଷ୍ଣ କରିଯାଇଥିବା ନାମଗୁଡ଼ିକ କିମିତି ପ୍ରକାଶ ଓ ପ୍ରସାର କରିବୁ ଆଲୋଚନା କରୁଥାଉ । କଥାଭିତରେ କହିଲି-ଆଉକେହି ନାହିଁ, ଯାହାକଥା ଆମେ ଅଭ୍ରାନ୍ତ ବୋଲି ଗ୍ରହଣ କରିବା ଚାଲିଗଲା, ଯତି ସମାହିତ ହେଇ କହିଲା- ଆମପାଇଁ ସେ ଯାଇନାହିଁ, ଅଛି, ରହିବ । ଯତିର ଏକଥା ଏପରି ଏକ ସ୍ଥିତିର କଥା ଯୋଉଟା କେବଳ ଅନୁଭବ କରିହେବ ।

ସଂଘମିତ୍ରା ଜଗନ୍ନାଥ ଲଗେଇଛନ୍ତି-ସ୍ମରଣିକା ବାହାରିବ, ଲେଖାଦିଅନ୍ତୁ । ଯେତେ କହିଲି, ଲେଖି ହଉନି, ପାରୁନି, କୁନିଲେଖା ସରିଯାଇଚି, ମୁଁ ଉତାରୁଚି, ସେଇଟି ଦେବି, ମତେ ମାଫ୍‌କର, ଶୁଣିଲେ ନାହିଁ । ଏ ଭିତରେ ଦିନେ କୁନି କହିଲେ ଝିଅକୁ - ବାପାବଡ଼ ମନ ଦୁଃଖରେ ଅଛନ୍ତି ରାତିରେ ବିଳିବିଳେଇ ହଉଛନ୍ତି କୋଉଥିରେ ହେଲେ ମନ ନାହିଁ । ଝିଅ କହିଲା- ''ହବନେଇଁ, ଆମ ଆଗରୁ ଏପରିକି ତୋ ଆଗରୁ ବି ଏମାନେ ସବୁ ସାଙ୍ଗ । ବାଧିବତ ।'' ସମୟ ମାପରେ ୫୩ ବର୍ଷ, ୧୯୪୪ରୁ ପିଆରୀମୋହନ ଏକାଡ଼େମୀର ଦଶମଶ୍ରେଣୀ ବର୍ଷରୁ ଏଯାଏ । ମାତ୍ର ଖାଲି ସମୟ କଥା ନୁହେଁ । ଆମେ ଚାରିହେଁ । ପରସ୍ପରର ଅଙ୍ଗୀଭୂତ, ଆତ୍ମସ୍ଥ ହେଇଯାଉଛୁ । ଚାରିହେଁ, ନିଜ ନିଜ କାମରେ ଲାଗିଛୁ । ପ୍ରତ୍ୟେକ ଅନ୍ୟକାମର ଖବର ଓ ମର୍ମ ବୁଝିବାକୁ ଚେଷ୍ଟାକରିଛୁ । ପରସ୍ପରକୁ ନିର୍ଭର ହେଇଛୁ । ଆମର ପରିସର ବାହାରେ ଅନ୍ୟର ପରିସର ସହ ସଂପୃକ୍ତ ହେଇଛୁ ଆଉ ତଥ୍ୟ, ପ୍ରମାଣ ବା ଖବର ଲୋଡ଼ିଲେ ଅନ୍ୟକୁ ପଚାରିଚୁ ଓ ପ୍ରାୟତଃ ତଥ୍ୟକୁ ଗ୍ରହଣ କରିନେଇଛୁ ନିଜକାମରେ ବ୍ୟବହାର କରିଛୁ ।



Digitized by srujanika@gmail.com

କୃଷ୍ଣତ କୋଉକାଳୁ ବଳରାମଙ୍କ ଜଗମୋହନ ରାମାୟଣ ସଂପାଦନା ସାରିଛି । ନିଜେ ଛାପିବାକୁ ବାହାରିଲା । ପ୍ରୁଫ୍ ଦେଖୁଥାଏ । ଦିନେ ପଚାରିଲି, ହଇରେ କୃଷ୍ଣ, ବଳରାମ ଆମ ଚଳଣିର ଏତେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଦେଲେ, ଦେଉଳ କଥା କିଛି ଲେଖିନାହାନ୍ତି ? କହିଲା, ''ଠାଆକରେ ପୁରୀଦେଉଳ କଥା ଟିକିଏ ଲେଖିଛନ୍ତି, ଏଇତ ଏଇ ପ୍ରୁଫ୍‌ରେ ଅଛି । କହିଲି, ପଢ଼ ! ସେ ପଢ଼ିଲା ଆନନ୍ଦ ବିସ୍ମୟରେ ମୋ ପାଟିକୁ କଥା ଆସୁନାହିଁ । କୃଷ୍ଣ ପଢ଼ିସାରି କହିଲା, ବାସ୍, ଏତିକ ! କହିଲି, କୃଷ୍ଣ, ଆମ ମନ୍ଦିରସ୍ଥାପତ୍ୟର ମଂଜ କଥାଟି କି ସୁନ୍ଦର ଭାବରେ କହିଛନ୍ତି ବଳରାମ ! ଏଇ ଯଥେଷ୍ଟ । ମୁଁ ତ ଦେଉଳର ଉପରଠାଉରିଆ ବର୍ଣ୍ଣନାରେ- ଏତେ ଫୁଟ ଉଚ୍ଚ, ଏଇ ଏଇ ମଣ୍ଡଣି ହେଇଛି, ଏଇ ରଜା ତୋଳିଛି - ଏଥିରେ ଆଗ୍ରହୀ ନୁହେଁ । ଅର୍ଥ ଖୋଜୁଛିରେ କୃଷ୍ଣ । ସେଇଥିପାଇଁ ଶିଳ୍ପଶାସ୍ତ୍ର ଚର୍ଚ୍ଚା । କ'ଣ ଏ ଗଢ଼ା, କ'ଣ କହୁଥିଲେ ସେମାନେ ? କୋଉ ଭାବନାକୁ, କୋଉ ଦିବ୍ୟ ଦୃଷ୍ଟିକୁ ସ୍ଥୂଳରୂପ ଦେଉଥିଲେ ମନ୍ଦିର ତୋଳାଳୀ - ରଜା, ସୂତ୍ରଧର, ପୁରୋହିତ, ବିନ୍ଧାଣି ? ତତେ ତ କହିଛି, ଆମେ ବଡ଼ ଦେଉଳ ବାବ ବିମାନକୁ 'ରେଖ' ଦେଉଳ କହୁଁ । ରେଖା ସ୍ତ୍ରୀ ଲିଙ୍ଗ । ରେଖ ପୁ ଲିଙ୍ଗ । ବଡ଼ଦେଉଳ ପୁରୁଷ, ତମ ଆମ ମର୍ଦ୍ଦ ନୁହେଁରେ, ସେଇ ମୂଳ, ଆଦିପୁରୁଷ, ଇଂରାଜିରେ ପ୍ରାଇମର୍ଡ଼ିଆଲ ମ୍ୟାନ୍ । ଆଉ ସାମ୍‌ନାର ସାନଦେଉଳ, ପୀଢ଼ଚାଳମୁଣ୍ଡେଇ ଠିଆ ହେଇଥିବା ଶାଳା, ଜଗମୋହନ ବା ମୁଖଶିଆଳୀ ସ୍ତ୍ରୀ । ସେଥିପାଇଁ ଉଭୟକୁ ଯୋଡୁଥିବା ଅଂଶର ସଂସ୍କୃତ ନାମ । 'ସନ୍ଧିସ୍ଥଳ' ବା 'ଅନ୍ତରାଳ' ହେଲାବେଳେ ଓଡ଼ିଆରେ 'ଗଇଁଠାଳ' । ବିମାନ ଓ ଶାଳାର ଏ ଚିରାୟତ ସଂପର୍କ ହିଁ ଓଡ଼ିଶା ମନ୍ଦିରସ୍ଥାପତ୍ୟର ମର୍ମ କଥା । ଏଇଟା ଯେ ଖାଲି ଶାସ୍ତ୍ରରେ ନୁହେଁ, ଲୋକରେ ବି ସଂଚରିଥିଲା ତାରି ସୁନ୍ଦର ପ୍ରମାଣ ବଳରାମଙ୍କର ଏଇ କଥା ଗୁଡ଼ିକ :

''ମାୟା ପ୍ରାସାଦ ଯେ ଶ୍ରୀହରିର ଭୁଜ ।
ଯତନେ ବିସ୍ତାର କଲେ ଅଧୋକ୍ଷଜ ।। (୩୩)

ବାବୁ ସେ ଦେଉଳ ବିଚିତ୍ର ପିତୁଳି ।
କଳସୁ ପଦ ପୀଢ଼ (୦) ପର୍ଯନ୍ତ ଅଛି ଝଳି ।। (୩୪)

ଅସାଂ ଶିରା ଠେକ କମ ମାହାତୁଲ ।
ଅପୂର୍ବ ପ୍ରାସାଦ ଘଟଣ ଅମୂଲ୍ୟ ।। (୩୫)

ନାରାୟଣ କୋଳେ ଯେହ୍ନେ ମହାଲକ୍ଷ୍ମୀ ବସଇ ।
ସାନଦେଉଳ ଗୋଟି ତେସନେକ ଦିଶଇ ।। (୩୬)

କି ଅବା ହରପାର୍ବତୀ ବସିଛନ୍ତି ।
କି ଅବା କାମଦେବ କୋଳେ ବିଜେ ରତି ।। (୩୭)

(କୃଷ୍ଣଚରଣସାହୁ ସଂପାଦିତ ବଳରାମଦାସଙ୍କ ରଚିତ ଜଗମୋହନ ରାମାୟଣ, ଉତ୍ତରାକାଣ୍ଡ)

ଏବେ ଏମିତି ଏକ ପ୍ରଶ୍ନ ମନକୁ ଆସିଲେ କାହାପାଖକୁ ଯିବି ? ଏମିତି ସିଦ୍ଧ ସାଧକ ଆଉ କିଏ ?



Digitized by srujanika@gmail.com

ଆମେ ଏବେ ଇଣ୍ଟରଡ଼ିସିପ୍ଲିନାରି ଗବେଷଣା ଓ ଅଧୟନ କଥା କହୁଛେ । ସଂସ୍କୃତ-ଅଧୟନ କଥା କହୁଛେ । ସଂସ୍କୃତି-ଅଧୟନ ପାଇଁ ଏହାର ପ୍ରୟୋଜନୀୟତା କିପରି ଫଳପ୍ରଦ ହୋଇପାରିବ ଏହା ତାରହାର ଏକ ବଳିଷ୍ଠ ଉଦାହରଣ । ସାହିତ୍ୟରେ ସଂସ୍କୃତି ଶବ୍ଦମାଧ୍ୟମରେ ରୂପାୟିତ ହୁଏ । ଶିଳ୍ପରେ ଏହା ଦୃଶ୍ୟରୂପ ଗ୍ରହଣ କରେ । ଶିଳ୍ପ ଓ ସାହିତ୍ୟ ଉଭୟ ସାହାଯ୍ୟରେ ସଂସ୍କୃତିର ମୌଳଦୃଷ୍ଟି ଓ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୋଇଥାଏ । ଆମ ଚାରିଙ୍କର ଅନ୍ୱେଷା ସେଇଥିପାଇଁ ପରସ୍ପର ପରିପୂରକ ।

ଆଜି ଆଉ ପାରିବି ନାହିଁ ।



# ସନ୍ଥ

ଶ୍ରୀମତୀ ଉତ୍କଳିକା ଦାସ

୧୯୫୮ ନଭେମ୍ବର । ମୁଁ ମୋ ଶାଶୁଘର ଗାଁରେ ଥିଲି । ମୋ ଝିଅ ଜନ୍ମହେଇ ୫ଦିନର ହେଇଥାଏ । କାର୍ତ୍ତିକ ମାସ ଶୀତଦିନ । ଦିନ ୪ଟା ବେଳକୁ କୃଷ୍ଣବାବୁ ରାଜେନ୍ଦ୍ରବାବୁ ଯତୀନ୍ଦ୍ରବାବୁ ବୈରୀଷ୍ଟେସନରୁ ଓହ୍ଲେଇ ଚାଲି ଚାଲି ଆସି ଗାଁ ଘରେ ପହଞ୍ଚିଲେ । ଶୀତ ବେଶ ହଉଥାଏ । ମାଟିଘର । ତଳେ ଶାଶୁ ଅଙ୍ଗୁଡ଼ି ଲଗାଇଥାନ୍ତି । ନିଆଁପାଖରେ ମୁଁ ଝିଅକୁ ଧରି ତଳେ ବସିଥାଏ । ମୋ ଖଟ ଉପରେ ଯାଇ ବସିଲେ । ପୁଅ ମୋର ମୋ ପାଖକୁ ଆସୁଥାଏ ବାହାରକୁ ଯାଉଥାଏ । ତାକୁ ପଚାରିଲେ, ଇଏ କିଏ ? ସେ କହିଲା ଇଏ ନିଆଁବୋଉ । ସିଏ କିଏ ? 'ଭାଇ'; ତା ବାପାଙ୍କୁ କହିଲା । ଯତିବାବୁ କୃଷ୍ଣବାବୁ ଉଭୟେ ପଚାରୁଥାନ୍ତି । ଝିଅକୁ ଦେଖାଇ ପଚାରିଲେ, ଇଏ ? ସିଏ ଝିଅ । ରାତିହେଲା । ମୁଁ ଭାବୁଥିଲି ରୋଷେଇ କିଏ କରିବ । ଶାଶୁଙ୍କ ଦେହ ଭଲ ନ ଥାଏ । ଚୁଲି ପାଖେ ବସିଲେ । ନଣନ୍ଦଙ୍କୁ ବତାଇ ଦେଲେ, ସେ ରାନ୍ଧିଲେ । ଶାଶୁ ବାଢ଼ିଲେ । ତିନିହେଁ ଖାଇବାକୁ ବସିଲେ । ବୋଉ କହିଲେ, ଚୁନିଆ ସବୁ ରାନ୍ଧିଛି । ଯତିବାବୁ କହିଲେ, ହଁ ! ଚୁନିଆ ରାନ୍ଧିଛି ! ଖାଇସାରି ଶୋଇବାକୁ ଗଲେ । ସକାଳୁ ଉଠି ନିତ୍ୟକର୍ମ ସାରି କଟକ ଗଲେ ।

ରାଜେନ୍ଦ୍ରବାବୁ ତା ପୂର୍ବରୁ କୃଷ୍ଣବାବୁଙ୍କ କଥା କେତେଥର କହିଛନ୍ତି । ସେଥର ତାଙ୍କୁ ମୁଁ ପ୍ରଥମେ ଦେଖିଲି । ରାଜେନ୍ଦ୍ରବାବୁ ରେଭେନ୍‌ସାକଲେଜରୁ ରିଲିଭ ହେଇ ଦିଲ୍ଲୀ ଯିବାକୁ ଥାଏ । ଝିଅ ୧୮ ଦିନର ହେଇଥାଏ । ସେ ପୁଣି ଗାଁକୁ ଆସି ଦିଲ୍ଲୀଗଲେ । ତାପରେ ଦିଲ୍ଲୀ ଦେରାଦୁନ କଲିକତାରେ ରହି ଆମେ ଛ' ବର୍ଷପରେ ଓଡ଼ିଶା ଫେରିଲୁ । ବାରିପଦା, ବାଲେଶ୍ୱରରେ ୪ ବର୍ଷ କଟେଇ ପୁରୀ ଗଲୁ । ଥରକର କୃଷ୍ଣବାବୁ ଯତିବାବୁ ପୁରୀଗଲେ । ସେଥର ମୁଁ ଭଲକରି କୃଷ୍ଣବାବୁଙ୍କୁ ଦେଖିଲି । ମୁଁ



Digitized by srujanika@gmail.com

ଲେଖାଲେଖି ଆରମ୍ଭ କରିଥାଏ । ରାଜେନ୍ଦ୍ରବାବୁ ମୋ ଲେଖା ତାଙ୍କ ବନ୍ଧୁ ଦିହିଙ୍କି ଦେଖାଉଲେ । ସେମାନେ ଭଲ ବୋଲି କହି ମତେ ସାହସ ଦେଲେ, ଲେଖୁଥାଅ ବୋଲି କହିଲେ । ମୋର କେତେଟି ଗପ ପତ୍ର ପତ୍ରିକାରେ ପ୍ରକାଶ ପାଇଲା । କୃଷ୍ଣବାବୁ ସବୁଥର ଦେଖାହେଲେ ପଚାରିବେ ଆଉ କ'ଣ ଲେଖିଲ । ମୋ ଗପ ସଂକଳନ 'ଭାବକୁ ନିକଟ' ୧୯୯୦ରେ 'ମହାନନ୍ଦୀ ବୁକ୍ସ' ପ୍ରକାଶକଲେ । ଉନ୍ମୋଚନ ଉତ୍ସବ ଗଡ଼ଗୋପୀନାଥ ପ୍ରସାଦଠାରେ ପ୍ରଫୁଲ୍ଲ କୁମାର ଜଗଦେବଙ୍କ ଘରେ ହେଲା । ସଭାପତି କୃଷ୍ଣବାବୁ । ଯତିବାବୁ ବହିସଂପର୍କରେ ଆଲୋଚନା କଲେ । କୃଷ୍ଣବାବୁ ମତେ ଡାକିଲେ କହିବାପାଇଁ । ମୁଁ କେବେହେଲେ କୋଉସଭାରେ ଠିଆହୋଇ କହିନାହିଁ । ରାଜି ହଉନଥିଲି ଯତିବାବୁ ରାଜେନ୍ଦ୍ରବାବୁ ପ୍ରଫୁଲ୍ଲବାବୁ ଓ ଉପସ୍ଥିତ ଅନ୍ୟବନ୍ଧୁମାନେ ମତେ ସାହସ ଦଉଥାନ୍ତି । ଯାହା ମନକୁ ଆସୁଛି ଦିପଦ କୁହ । ଠିଆହେଲି । ମୋ ଦଦାଙ୍କ କଥା ମନେ ପଡ଼ିଲା ।ସେ ହିଁ ମତେ ଲେଖିବାପାଇଁ କହୁଥିଲେ । ମୁଁ ପଦେ କହିଛି ଦଦାଙ୍କ କଥା, ଜୋର୍ କାନ୍ଦିପକାଇଲି । ସେମିତି ଠିଆହେଇଥାଏ, କାନ୍ଦୁଥାଏ । କୃଷ୍ଣବାବୁ କହିଲେ, ''ହଉ ହେଲା ହେଲା, ବସ, ବସିପଡ଼ ।'' ବସି ପଡ଼ିଲି । ସଭାପରେ ଯତିବାବୁ କୃଷ୍ଣବାବୁ ଦିହେଁ ରାଜେନ୍ଦ୍ରବାବୁଙ୍କ ସଙ୍ଗରେ ଲଗେଇଲେ, ତାର ଆର ବହିଟା କୋଉକାଳୁ ସରିଲାଣି, ପକେଇରଖିଛ କାହିଁକି । ଶୀଘ୍ର ବାହାର କର । ଛଏ ପଇସା ଅଭାବ କଥା କହି ବସିଥାଆନ୍ତି । ଅନ୍ୟଜଣେ କିଏ ପଚାରିଲେ, ମାଡ଼ାମଙ୍କର ଆଉ ବହି ଅଛି ନା କ'ଣ ? କୃଷ୍ଣବାବୁ କହିଲେ, ''ଅଛି ଯେ, ଛଏତ ଗଦିତଳେ ଥୋଇ ମାଡ଼ିବସିଛି । କେବେ ବାହାରକରିବ କେଜାଣି ?'' ସେଇମାନଙ୍କ ଜିଗରରେ 'ପୁଣ୍ୟାମନ୍ଦାକିନୀ' ବାହରିଲା, ଚାରିବର୍ଷପରେ ୧୯୯୪ରେ । ଏଥର ନାଁକୁ ପ୍ରକାଶକ ଆଉ ଏକ ସଂସ୍ଥା । ଉନ୍ମୋଚନ ଉତ୍ସବ ମୋ ବହି ଭାଗ୍ୟରେ ଜୁଟିଲାନାହିଁ ।କୃଷ୍ଣବାବୁ ନିଜେ ଆମଘରକୁ ଆସି ବହିଟିଏ କିଣିନେଲେ ରାଜେନ୍ଦ୍ରବାବୁଙ୍କ ବହିସବୁ ଓ ମୋ ପୁଅ ନଚିକେତାର ଦୁଇଖଣ୍ଡଯାକ ବହିର ଉନ୍ମୋଚନକୁ କୃଷ୍ଣବାବୁ ଆସି, ବହି କିଣିନେଲେ ।

୧୮ ଏପ୍ରିଲ ୧୯୯୩ରେ କୋଣାର୍କଠାରେ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ 'ବିଶ୍ୱ ଐତିହ୍ୟ ଦିବସ' ପାଳନ କରାଯାଉଥାଏ । ରାଜେନ୍ଦ୍ରବାବୁଙ୍କର ଯିବାରଥାଏ । ସେ କୃଷ୍ଣବାବୁଙ୍କୁ ଫୋନ୍‌କଲେ ଯିବାପାଇଁ । କୃଷ୍ଣବାବୁ ଏମାନଙ୍କସାଙ୍ଗରେ ଯିବାପାଇଁ କେବେ ଅମଙ୍ଗ ହୁଅନ୍ତି ନାହିଁ । ରାଜିହେଲେ । ରାଜେନ୍ଦ୍ରବାବୁ ପ୍ରତ୍ନତତ୍ତ୍ୱ ବିଭାଗର ଅଧକ୍ଷ ଚାଉଲେଙ୍କୁ ପଚାରିଲେ । ସେ ବି କୃଷ୍ଣବାବୁଙ୍କୁ ଅତିଥି କରିନେବାପାଇଁ ଖୁସିରେ ରାଜିହେଇଗଲେ । ରଜେନ୍ଦ୍ରବାବୁ ଓ ମୁଁ ଆମବସାରୁ ବାହାରି, କୃଷ୍ଣବାବୁଙ୍କୁ ତାଙ୍କଘରୁ ସାଙ୍ଗରେ ଘେନି କୋଣାର୍କ ଗଲୁ । ସେଠା ସଭାରେ ରାଜେନ୍ଦ୍ରବାବୁ ଗୋଟିଏ 'ଓଡ଼ିଶା ଶିଳ୍ପ ସଂସ୍ଥାନ' ଗଠନକରି ପାରମ୍ପରିକ ଓଡ଼ିଶା ସ୍ଥାପତ୍ୟରେ ଲୋକମାନଙ୍କୁ ଶିକ୍ଷାଦେବାପାଇଁ ପ୍ରସ୍ତାବ କଲେ । କୃଷ୍ଣବାବୁ ତାଙ୍କ ବକ୍ତୃତାରେ ଏ ପ୍ରସ୍ତାବକୁ ସମର୍ଥନ କଲେ ଓ ଆମ ପରମ୍ପରାର ପ୍ରକୃତ ରୂପ ଜାଣିବାପାଇଁ ଆହୁରି ଆହୁରି ଗବେଷଣା ହେବା ଉଚିତ୍ ବୋଲି କହିଲେ । ସେଠା କାମ ସରିଲା ବେଳକୁ ଦୁଇଟା ବାଜିଲା । ମୁଁ ବିଚାରୁଥିଲି ଘରକୁ ଫେରିଆସିବି । ଏ ଦିହେଁ ଚାଉଲେଙ୍କ ସହ କଥାହେଇ ପୁରୀ ବାହାରିଲେ । ଜଗନ୍ନାଥ ଦେଉଳ ମରାମତି ଚାଲିଥାଏ । ଗର୍ଭମୁଦ ଘେନି ଖବର ବାହାରୁଥାଏ । ପୁରୀ ଗଲୁ । ଖରାବେଳଟା ।



Digitized by srujanika@gmail.com

ଚାଉଲେସାହେବ ଆମକୁ ବିମଳାମନ୍ଦିର ଆଉ ଜଗନ୍ନାଥମନ୍ଦିରରୁ ଓପର ପଲସ୍ତରା ସଫାକରିବାପରେ ବାହାରିଥିବା ମୂର୍ତ୍ତି, ଚିତ୍ର ଆଦି ବୁଲାଇ ଦେଖାଇଲେ । ଜଗନ୍ନାଥମନ୍ଦିରର ପଞ୍ଚକର୍ମର ତୃତୀୟ କର୍ମ 'ପଟ' ଅଂଶରେ ଥିବା ଗୋପଲୀଳା ଚିତ୍ରସବୁ ରାଜେନ୍ଦ୍ରବାବୁ ଦେଖେଇଲେ । କୃଷ୍ଣବାବୁ ଆଉ ସିଏ କୋଉ ଚିତ୍ରଟି କୋଉ ଲୀଳା ଚିହ୍ନଟ କରିବାରେ ଲାଗିଗଲେ । ଚାରିପଟ ବୁଲିଆସିଲାପରେ ରାଜେନ୍ଦ୍ରବାବୁ ବାହାରିଲେ ଦେଉଳମୁଦ ଦେଖିବାକୁ । ଦେଉଳ ଚାରିପିଠି ଲୁହାପାଇପ୍‌ରେ ଚାର ବନ୍ଧାହେଇଥାଏ । ତାରି ସାହାଯ୍ୟରେ ଉପରକୁ ଉଠିବାକୁ ହେବ । ଦକ୍ଷିଣପଟ ରାହାଓପର ମୁଣ୍ଡରେ ଥିବା ଜଳାବାଟେ ଗର୍ଭମୁଦ ଭିତରକୁ ଯିବାକୁ ହେବ । ରାଜେନ୍ଦ୍ରବାବୁ କହିଲେ, ଶିଳ୍ପଶାସ୍ତ୍ରରେ ଏବିଷୟ ପଢ଼ିଛି । ଏ ଜଳାକୁ 'ରାହାଶ୍ୱାସ' କୁହନ୍ତି । ମୁଦକଥାବି ସେଇ ଶାସ୍ତ୍ରରୁ ପଢ଼ିଛି । ମାତ୍ର ଦେଖିବା ସୁଯୋଗ ହେଇନାହିଁ । ଏ ସୁଯୋଗ ଛାଡ଼ିବି ନାହିଁ । କୃଷ୍ଣବାବୁଙ୍କୁ ଡାକିଲେ । କୃଷ୍ଣବାବୁ ଚଢ଼ିପାରିବେନାହିଁ ବୋଲି କହି, କହିଲେ ତୁ ଯା, ମୁଁ ଏଇଠି କୁନିପାଖରେ ରହୁଛି । ତତେ ଦେଖୁଥିବୁ ଏଇଠୁ ।'' ଚାଉଲେ ସାହେବ ଦେଉଳର କୋଉ ଅଧିକାରୀଙ୍କଠାରୁ ଅନୁମତି ଆଣି ଆସିଲେ, ରାଜେନ୍ଦ୍ରବାବୁ ପଛେ ପଛେ ଚଢ଼ିବାକୁ ଲାଗିଲେ । ମୁଁ ତଳେ ବସିଥାଏ । ପାଖରେ  କୃଷ୍ଣବାବୁ । ଆମେ ଏମାନଙ୍କ ଚଢ଼ିବା ପଥକୁ ଅନାଇଁ ରହିଥାଉ । ଚଢ଼ି ଚଢ଼ି ଚାଉଲେ ଆଗ ଭିତରକୁ ପଶିଗଲେ । ତାପରେ ରାଜେନ୍ଦ୍ରବାବୁ ମଧ ଅଦୃଶ୍ୟ ହେଇଗଲେ । ଭିତରେ  ସବୁ ଦେଖାଦେଖି କରିବାରେ ଏମାନଙ୍କୁ ଅଧଘଣ୍ଟାକରୁ ବେଶି ଲାଗିଗଲା ମୁଁ ବସିଥିବା ପାଖରେ କେଇଜଣ ଦୋ ଅକ୍ଷର ଗାଳି ବର୍ଷି ଚାଲିଥାନ୍ତି । ଏ କିଏ ପ୍ରଫେସର ଆସିଚି । ତାକୁ ନେଇ ମନ୍ଦିର ଓପରେ ଚଢ଼େଇଲାଣି । ମୁଁ ସବୁ ଶୁଣୁଥାଏ । ଚୁପ୍ ଚାପ୍ ବସିଥାଏ । କୃଷ୍ଣବାବୁ ଟିକିଏ ଦୂରରେ ବସିଥାନ୍ତି । ଶୁଣି ନଥାନ୍ତି । ମୁଁ ଯେମିତି ନିର୍ଜୀବ ହେଇ ବସିଥାଏ ଇଏତ ଚଢ଼ିକରି ଗଲେ, ଆସିବେ । କୃଷ୍ଣବାବୁ ଉଠିକରି ଚଲାବୁଲା କଲେ । ଲକ୍ଷ୍ମୀମନ୍ଦିରକୁ ଗଲେ, ଦୀପ ଜାଳିକରି ଆସିଲେ ମୁଣ୍ଡିଆ ମାଇଲେ । ମତେ ଦିଶୁଥାଏ । ଆସିଲେ, ମୋ ପାଖରେ ବସିଲେ । କହିଲେ, କେତେବେଳେ ଆସିବେ ? ବହୁତବେଳୁ ଗଲେଣି । ମୁଁ ଲକ୍ଷ୍ମୀ ମନ୍ଦିର ଯିବିକି ପଚାରିଲି । କୋଉବାଟେ ଯିବି ? ସେ ବାଟ ବତେଇ ଦେଲେ- ସେବାଟେ ଯାଅ । ମୁଁ ଗଲି । ଲକ୍ଷ୍ମୀମନ୍ଦିରରେ ଦୀପ ଜାଳିଲି । ମୁଣ୍ଡିଆ ମାଇଲି । ଆସିଲାବେଳକୁ ଦେଖିଲି କୃଷ୍ଣବାବୁ ଠିଆ ହେଇଛନ୍ତି ମୁଁ ଆସିଲି । ଯୋଉଠି ବସିଥିଲି ସେଠିକି ଗଲି । ମୋ ପଛେ ପଛେ କୃଷ୍ଣବାବୁ ଆସିଲେ, ପାଖରେ ବସିଲେ । କହିଲେ, ଓହୋ ଏତେବେଳଯାଏ ଆସିଲେ ନାହିଁ ! ଚାଉଲେ ଆଗେ ଆଗେ ଆସିଲେ । ରାଜେନ୍ଦ୍ରବାବୁ ପଛେ ପଛେ ଓହ୍ଲଉଥାନ୍ତି । କୃଷ୍ଣବାବୁ କହିଲେ, ଆସିଲେ । ସଂଜ ହେଇ ଆସୁଥାଏ । ମୁଁ ଦେଖିପାରୁନଥାଏ । କୃଷ୍ଣବାବୁ କହିଲେ, ହେଇ ଦେଖ, ଏଡ଼େ ବଡ଼ ବିରାଟ ସିଡ଼ିରୁ ଯେମିତି ଛୋଟ ଛୋଟ କଣ୍ଢେଇ ଓହ୍ଲାଉଛନ୍ତି ଦିଶୁଥାଏ । କୃଷ୍ଣବାବୁ ହସିଲେ ।

ସେମାନେ ତଳେ ପହଞ୍ଚିଲେ । ଆମେ ପୁରୀ ଛାଡ଼ିଲୁ । କୃଷ୍ଣବାବୁ ଆଉ ରାଜେନ୍ଦ୍ରବାବୁଙ୍କ ସାଙ୍ଗରେ କେତେଥର କେତେଆଡ଼େ ଯାଇଛି- ସଭାକୁ, ନହେଲେ କୋଉ ଅପଟରା ଗାଁକୁ ପୋଥି ଖୋଜି । ଏମାନେ ନିଶାଖାଇଲାପରି ଛୁଟୁଥିବେ । ଥରକର ବୈଶାଖମାସ ଉଦୁଉଦିଆ ଖରାବେଳେ ଗୋପପାଖ ଗୋଟେ ଗାଁକୁ ଚାଲିଲେ । କୋଉଠୁ ଖବର ପାଇଥାନ୍ତି । ବଡ଼ମଠରେ ପୋଥିଅଛି । ଦେଖିଲାବେଳକୁ ମଠ ଓ ପୋଥି କୁଆଡ଼େ ଗଲେଣି । ସେଠି ଜଣେ ଖବର ଦେଲେ ପାଖଗାଁରେ ବଡ଼



Digitized by srujanika@gmail.com

ପ୍ରତ୍ୟକ୍ଷ 'ଗାଦି ଅଛି ' ସେଉଲୋକକୁ ସାଙ୍ଗ କଲେ । ସେମାନଙ୍କ ସାଙ୍ଗରେ ଗୋପକଲେଜ ଅଧ୍ୟାପକ ଓ କୃଷ୍ଣବାବୁଙ୍କ ମଧୁର ସଂପର୍କ କୈଳାସବାବୁ ଗାରଡ୍ ହେଉଥାନ୍ତି । ଜଣେ କହିଲେ, ସିଧା ଚାଲିଗଲେ ପାଏ ବାଟ, ଗାଁଟା ଦୁଉଚି । କୃଷ୍ଣବାବୁ ଓ ରାଜେନ୍ଦ୍ରବାବୁ ମୁହଁ ଚୁହାଁ ଚୁହିଁ ହେଲେ । ସେମାନେ ଜାଣନ୍ତି, ହେଉ ଦୁଉଚି ବା ପାଏ ବାଟମାନେ ଚାରିପାଞ୍ଚ କିଲୋମିଟର ହବା ବିଚିତ୍ର ନୁହେଁ । କୃଷ୍ଣବାବୁ ମତେ କହିଲେ, ତମେ ଯିବା ଦରକାର ନାହିଁ- ଏଇଠି ଏଇ ପୋଖରୀ ହୁଡ଼ାରେ ବରଗଛତଳେ ଗାଡ଼ିରେ ଶୋଇପଡ଼ । ଆମେ ଆଉଚୁ । ମୁଁ ଚାହିଁ ରହିଲି । ବିଲମାଳ । ହଳହେଉ ଟେକାଉଠିଥାଏ । ତା'ରି ଭିତରେ ଏମାନେ ନାକ ସଳଖା ଚାଲିଥାନ୍ତି । ଗୋଟେ ବାଙ୍କ ବୁଲିଗଲେ । ଆଉ ଦେଖାଗଲେ ନାହିଁ । ଗଛୁଟେ ବି ଆଖିରେ ପଡୁନଥାଏ । ପେଣ୍ଟ, ଜାମା, କାନ୍ଧରେ ଝୁଲାମୁଣି, ମୁଣ୍ଡଉପରେ ଗାମୁଛା, ଭରା ଦିପହରେ ଡିମାକିଆରି ଚଷି ପକେଇ ଚାଲିଛନ୍ତି - ପୋଥି ଖୋଜି, ଶାସ୍ତ୍ର ଖୋଜି, ଖବର ଲୋଡ଼ି । ଏ ଗାଁ, ନ ହେଲେ ସେ ଗାଁ । ସେଥର ଦିଘଣ୍ଟାପରେ ଫେରିଲେ ଖାଲିହାତରେ ମୁହଁରେ କିନ୍ତୁ କଥାର ଖଇ ଫୁଟୁଥାଏ । ଇଏ ଗାଦି ଗାଦି ପୋଥି ମାଟିଗଦା ହେଉଥିବାରୁ ରାଗରେ ଫଁ ଫଁ ହଉଥାନ୍ତି । ଇଆଡ଼େ ଥଟ୍ଟା ବି କରୁଥାନ୍ତି - କୋଉ - ଆମକୁ କହିଛିକିରେ କୃଷ୍ଣ, ଏମିତି ବାବନାଭୂତ ହବାକୁ ! କୃଷ୍ଣବାବୁ ହସୁଥାନ୍ତି - ଆମ ପ୍ରକୃତି ! ରାଜେନ୍ଦ୍ରବାବୁ କୃଷ୍ଣବାବୁଙ୍କ ସାଙ୍ଗରେ ବା କେବେ ଆଉକାହା ସାଙ୍ଗରେ ଯାଇ ସେ ଖୋଜୁଥିବା ପୋଥି ନପାଇ ଫେରିଆସି ମତେ କହନ୍ତି, କୃଷ୍ଣ ଠିକଣା କଥା କହିଛି, ଏଇ ଖୋଜାଟା ଅନ୍ଧାରରେ ବାଡ଼ି ବୁଲେଇବା କୋଉଦିନ କୋଉଠି ବାଜିବି ଯାଇପାରେ । ମୁଁ ଅପେକ୍ଷା କରେ, ପୁଣି କେବେ ବାହାରିପଡ଼ିବେ ।

କୃଷ୍ଣବାବୁ, ଯତିବାବୁ, ଦେବୀବାବୁ ଆଉ, ଇଏ, ଏ ଚାରିସାଙ୍ଗ ଏକାଠି ହେଇଗଲେ କଥା ସଇଲା । ଯତିବାବୁଙ୍କ ମୁଣ୍ଡରେ ସବୁବେଳେ ନୂଆ ନୂଆକାମକଥା ବାହାରୁଥିବ । ଦେବୀବାବୁଙ୍କ ଫାଇଲରୁ ପୁରା ବା ଅଧାଲେଖା ରଚନାଟିଏ ବାହାରିବ - ସେ ପଢ଼ି ଶୁଣେଇବେ ଆଉ ପଚାରିବେ କେମିତି ହେଲା ? ଆର ତିନିହେଁ ଯାହା ଯେମିତି ଭାବରେ କହିବେ । ଆଉ ତା'ରି ଭିତରେ କୃଷ୍ଣବାବୁଙ୍କୁ ପରିହାସ କରୁଥିବେ । କୃଷ୍ଣବାବୁ ଟିକିଏ ଟିକିଏ ହସିଦଉଥିବେ । କୋଉ କଥାରୁ ଖୁଅ ବାହାରକରି ରାଜେନ୍ଦ୍ରବାବୁ ବିଗୁଡୁଥିବେ । ଦେବୀବାବୁ ଓ କୃଷ୍ଣବାବୁ ଜମାରୁ ରାଗନ୍ତି ନାହିଁ । ତେବେ ଦେବୀବାବୁ ବେଳେବେଳେ ଗମ୍ଭୀର ହେଇ ଯାଆନ୍ତି । କୃଷ୍ଣବାବୁ କିନ୍ତୁ ହସୁଥାନ୍ତି । ଏମାନେ ଆସିଲେ ମତେ ଡକରା ପଡ଼ିବ ଓ ସେଠୁ କୁହାଯିବ - ବସ । ବସିଥିବି । ମଝିରେ ଦେବୀବାବୁ ପଚାରିବେ ତମେ କ'ଣ ବିଚାରୁଚ, କି ନୂଆ କ'ଣ ଲେଖିଲ ? କୃଷ୍ଣବାବୁ କେବେକେବେ କହିବେ - ସେ ଯାଉ, ତାର କାମଧନ୍ଦାଥିବ ! ଚାରିହେଁ ଚାଲିବେ ଆଉ କୁଆଡ଼େ, ମତେ ପଚାରିବେ - ତମେ ଆସୁଚ ନା !

ଯାଙ୍କର ସାଙ୍ଗମାନଙ୍କ ଭିତରୁ କେହି ଆମଘରକୁ ଆସିଲେ ମତେ ଲାଗେ- ଆଜି ଗୋଟାଏ ଶୁଭଦିନ, ଆଜି ସବୁ ଭଲହେଇଯିବ । କୃଷ୍ଣବାବୁ ମତେ ଲାଗନ୍ତି ଜଣେ ସାଧୁ ମହାତ୍ମା । ଥରେ ଯାଙ୍କୁ କହିଲି, କେଡ଼େ ଭଲ ଏଇ କୃଷ୍ଣବାବୁ । ଇଏ ସାଧାରଣତଃ ଥଟ୍ଟାପରିହାସ କରନ୍ତି । କିନ୍ତୁ କୃଷ୍ଣବାବୁଙ୍କୁ କହନ୍ତି, ସିଏ ସତରେ ସନ୍ଥ ।





Digitized by srujanika@gmail.com

# ଶ୍ରଦ୍ଧାଞ୍ଜଳି

**ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)**

ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରାକ୍ତନ ପ୍ରଫେସର କୃଷ୍ଣଚରଣଙ୍କର ଏତେ ଶୀଘ୍ର ଦେହାନ୍ତ ହୋଇଯିବ ବୋଲି କାହାରି ଧାରଣା ନଥିଲା । ଗତବର୍ଷ କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ତାଙ୍କର ଜନ୍ମଦିବସ ଏହି ସମୟରେ ପାଳିତ ହୋଇଥିଲା । ପ୍ରାୟ ଏକମାସ ପୂର୍ବେ 'ଶ୍ରୀକ୍ଷେତ୍ର ଲେଖକ ସାମୁଖ୍ୟ' ପକ୍ଷରୁ ତାଙ୍କୁ 'ଅତିବଡ଼ୀ ସମ୍ମାନ' ପ୍ରଦାନ କରାଯାଇଥିଲା । ଏହି ଦୁଇ ଅନୁଷ୍ଠାନ ସହ ମୁଁ ସଂପୃକ୍ତ । ଅସୁବିଧାବଶତଃ ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟର ଉତ୍ସବରେ ଯୋଗ ଦେବାଲାଗି ମୁଁ ସେଦିନ ପୁରୀ ଯାଇପାରିନଥିଲି । କୃଷ୍ଣବାବୁଙ୍କ ହାତେ ମୋର ଶୁଭେଚ୍ଛାସୂଚକ ପତ୍ରଟି ସାମ୍ମୁଖ୍ୟର ସଂପାଦକଙ୍କ ନିକଟକୁ ପୁରୀ ପଠାଇଥିଲି । ଏହାର ଦୁଇଦିନ ପରେ ପ୍ରାତଃଭ୍ରମଣ ଅବକାଶରେ ଏଚିଠିଟି ସେ ସଂପାଦକଙ୍କୁ ଦେଇଥିବା ବିଷୟ ମୋତେ କହିଥିଲେ । ଦେଖିବାକୁ ସେ ଥିଲେ ବେଶ ହୃଷ୍ଟପୁଷ୍ଟ, କର୍ମତତ୍ପର । ମାତ୍ର ଅନେକ ଦିନରୁ ତାହାଙ୍କ ଅନ୍ତଃନାଳୀରେ କର୍କଟ ରୋଗର ଜୀବାଣୁ ଗୋପନରେ କବଳିତ କରିସାରିଥିଲା । ମାତ୍ର ଅଳ୍ପ କେତେଦିନପୂର୍ବରୁ ଏହାର ବ୍ୟାପକ ସଂକ୍ରମଣ ଓ ଭୟାବହତା ଜଣାପଡ଼ିଲା । ସେତେବେଳକୁ ରୋଗ ଆୟତ୍ତର ବାହାରକୁ ଚାଲିଯାଇଥିଲା । ସମ୍ବାଦ ପାଇ ଡଃ କାହ୍ନୁ ଚରଣ ମିଶ୍ର ଓ ମୁଁ ତାଙ୍କୁ ଦେଖିବା ଲାଗି କଟକରେ ସେ ଚିକିତ୍ସିତ ହେଉଥିବା ନର୍ସିଂହୋମ୍‌କୁ ଯାଇଥିଲୁ । ତାହାହିଁ ଥିଲା ଆମର ତାଙ୍କ ସହ ଶେଷ ସାକ୍ଷାତ । ସେତେବେଳେ ଖୁବ୍ ଜୋରରେ ସେ ନିଶ୍ୱାସ ନେଉଥିଲେ । ଏହାପରେ ଯେତେବେଳେ ଦେଖିଲୁ । ସେତେବେଳକୁ ସେ ଏ ଧରଣୀର ଶେଷ ନିଶ୍ୱାସ ନେଇ ସାରିଥିଲେ । ବଡ଼ ଅବିଶ୍ୱାସୀ କ୍ରୂରକାଳ ଆଚମ୍ବିତ ଭାବରେ ଆସି ତାଙ୍କ ପାଖରେ ହାବୁଡ଼ି ଯାଇଥିଲା ।

୧୯୫୫ ମସିହାରେ ସେ ରେଭେନ୍‌ସାରେ ଏମ୍.ଏ. ଶେଷ ବର୍ଷର ଛାତ୍ରଥିବାବେଳେ ମୋର ତାଙ୍କ ସହ ପରିଚୟ । ମୁଁ ସେ ବର୍ଷ ବଦଳି ହୋଇ ରେଭେନ୍‌ସା କଲେଜରେ ଯୋଗ ଦେଇଥିଲି । ମୋର ସହପାଠୀ ବନ୍ଧୁ ୰ ବଂଶୀଧର ମହାନ୍ତି ମୋତେ ସାଂଗରେ ନେଇ ଯାଇଥିଲେ ତାଙ୍କ ରହିବା ସ୍ଥାନକୁ । ନିଶ୍ଚିତଭାବେ ସେ ଥିଲେ ବଂଶୀବାବୁଙ୍କ ପ୍ରିୟପାତ୍ର । ପ୍ରିୟପାତ୍ର ହେବାର ସମସ୍ତଗୁଣ ତାଙ୍କରଥିଲା । ସେ ଥିଲେ ଶାନ୍ତ, ସୁବୋଧ, ପଠନାନୁରାଗୀ । ରାଞ୍ଚି କଲେଜରେ ଅଧାପକ ଭାବେ ସେ କର୍ମ ଜୀବନ ଆରମ୍ଭ କରିଥିଲେ । ଏହାପରେ ସେ ଆସି ବାଣୀବିହାରରେ ଅଧାପକଭାବେ ଯୋଗ ଦେଇଥିଲେ । ସେହି ସମୟରୁ ମୃତ୍ୟୁପର୍ଯ୍ୟନ୍ତ ତାଙ୍କ ସହ ମୋର ସଂପର୍କ ରହିଆସିଛି । ନାନା କ୍ଷେତ୍ରରେ ଆମେ ଏକତ୍ର କାମ କରିଛୁ । ମନେ ପଡୁଛି, ତାଙ୍କ ସହ ଥରେ ମୁଁ ରାଞ୍ଚି ଯାଇଥିଲି ଅଧାପକ



Digitized by srujanika@gmail.com

ମନୋନୟନ ବୋର୍ଡ଼ର ସଦସ୍ୟଭାବେ । ସେଠାରେ ଥିବାବେଳେ ସେ ସହକର୍ମୀ ଓ ଛାତ୍ରମାନଙ୍କ ମଧ୍ୟରେ ଯେ ଖୁବ୍ ଜନପ୍ରିୟତା ଅର୍ଜନ କରିଥିଲେ ଏହାମୁଁ ସେଠାକୁ ଯାଇ ପ୍ରତ୍ୟକ୍ଷ ଭାବେ ଜାଣିପାରିଥିଲି । ସେଠାରେ ସେ ରହିବା ଲାଗି ଯେଉଁ ଗୃହଟି ନିର୍ମାଣ କରିଥିଲେ ତାହା ମୋତେ ଦେଖାଇଥିଲେ ।

ପ୍ରଫେସର ଥିବାବେଳେ ତାଙ୍କୁ ବିଭିନ୍ନ ପରିସ୍ଥିତିରେ ଦେଖିବାର ଅବକାଶ ମୋତେ ମିଳିଥିଲା । ଆପଣାର ବ୍ୟବହାର ଦ୍ୱାରା ସେ ଯେପରିଥିଲେ ଛାତ୍ରବତ୍ସଳ ସେହିପରି ସହକର୍ମୀଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ରକ୍ଷାକରିବାରେ ଥିଲେ ନିପୁଣ । ଅନୁଦ୍ୱେଦିତ ଭାବରେ ହିଁ ସେ କାମ କରିଯାଇଥିଲେ । ଧୈର୍ଯ୍ୟ ଓ ସହିଷ୍ଣୁତା ଥିଲା ତାଙ୍କର ଅନ୍ୟତମ ସଦଗୁଣ । କେବେ କାହାବିରୁଦ୍ଧରେ ସେ କିଛି କହିବା ମୁଁ ଶୁଣିନାହିଁ । ଯୋଗ୍ୟତା ଥାଉ ବା ନଥାଉ ଅନେକଙ୍କୁ ସେ ସାହାଯ୍ୟ କରିଛନ୍ତି । ସମ୍ଭବତଃ ସେଥିପାଇଁ ସେ କେତେକେ କ୍ଷେତ୍ରରେ ଜନପ୍ରିୟତା ଅର୍ଜନ କରିଥିଲେ । ତାଙ୍କର ଥିଲେ କେତେକ ଅନୁରାଗୀବନ୍ଧୁ । ସେମାନଙ୍କଦ୍ୱାରା ସେ ବହୁକ୍ଷେତ୍ରରେ ଉପକୃତ ହୋଇଛନ୍ତି । ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟ ପ୍ରତି ସେ ଥିଲେ ଅତୀବ ଶ୍ରଦ୍ଧାଶୀଳ । ଏଥିପାଇଁ ସେ ଅନେକଙ୍କୁ ଯେପରି ଅନୁରାଗୀ କରାଇ ପାରିଛନ୍ତି ସେହିପରି ନିଜେ ମଧ୍ୟ ଏ କ୍ଷେତ୍ରରେ ପ୍ରଶଂସନୀୟ ସାଧନା କରିଯାଇଛନ୍ତି । ପ୍ରାଚୀନ ପୁରାଣ ଓ କାବ୍ୟର ସଂପାଦନା ତାଙ୍କର ଉଲ୍ଲେଖଯୋଗ୍ୟ କୀର୍ତ୍ତି । ଏଥିପାଇଁ ନିଜ ବ୍ୟୟରେ ଜଗମୋହନ ରାମାୟଣ ଭଳି ପୁରାଣକୁ ମଧ୍ୟ ଛପାଇବାକୁ ସେ ପଶ୍ଚାତ୍‌ପଦ ହୋଇନାହାନ୍ତି ।

ଅବସର ନେବାପରେ ମଧ୍ୟ ନିରଳସ ଭାବରେ ସେ ତାଙ୍କର କର୍ମସଂପାଦନ କରିଚାଲିଥିଲେ । ଗ୍ରନ୍ଥ ସଂପାଦନା, ପାଣ୍ଡୁଲିପିର ଶୁଦ୍ଧପାଠ ନିର୍ଣ୍ଣୟ । ଗବେଷଣାଧର୍ମୀ ପ୍ରବନ୍ଧ ରଚନା ପ୍ରଭୃତି କାର୍ଯ୍ୟରେ ସେଥିଲେ ମୁଖ୍ୟତଃ ନିୟୋଜିତ କନିଷ୍ଠ ଅଧ୍ୟାପକଙ୍କୁ ଗବେଷଣାଂପାଇଁ ଦେଉଥିଲେ ପରାମର୍ଶ ଓ ଦିଗ୍‌ଦର୍ଶନ । ସଂସାରରେ ମନୁଷ୍ୟର ସବୁ ଆଶା ଆକାଙ୍କ୍ଷା ପୂର୍ଣ୍ଣହୁଏନା । ସବୁ ଉଦ୍ୟମ ସଫଳ ହୋଇନଥାଏ । ଅନେକ ସ୍ୱପ୍ନ ଉଦ୍ୟମ ଅସମାପ୍ତ ଅଚରିତାର୍ଥ ହୋଇ ରହିଯାଏ । କୃଷ୍ଣବାବୁଙ୍କର ସେହିପରି କେତେ କାର୍ଯ୍ୟ ଅପୂର୍ଣ୍ଣ ରହିଯାଇଛି । ଏ ଗୁଡ଼ିକ ତାହାଙ୍କର ଗୁଣମୁଗ୍ଧ ବନ୍ଧୁ ଅନୁରାଗୀ ଓ ଛାତ୍ରମାନଙ୍କଦ୍ୱାରା ସଫଳ ହେଉ । ଏହାହିଁ କାମନା କରୁଛି ଓ ଅନୁଜକଳ୍ପ କୃଷ୍ଣଚରଣଙ୍କ ଉଦ୍ଦେଶ୍ୟରେ ମୋର ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ଜଣାଉଛି ।

❒ ଗୀତିକା,

ଜୟଦେବ ନଗର , ଭୁବନେଶ୍ୱର



Digitized by srujanika@gmail.com

# ସାତ୍ତ୍ୱିକର ନଥାଏ ନାମେ ପ୍ରୟାସ

ପ୍ରଫେସର ଗଣେଶ୍ୱର ମିଶ୍ର

୧୯୭୧ରେ କୃଷ୍ଣଚରଣ ସାହୁ ରାଞ୍ଚିରୁ ଆସି ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗରେ ଯୋଗଦେଲେ । ସେ ଯାଏଁ ମୁଁ ତାଙ୍କ ସମ୍ପର୍କରେ ପ୍ରାୟ କିଛି ଜାଣି ନଥିଲି । ଏପରିକି ଉତ୍କଳ ବିଶ୍ୱବିଦ୍ୟାଳୟରେ ସେ ଯୋଗଦେବା ପରେ ଅନେକ ଦିନଯାଏଁ ତାଙ୍କ ସମ୍ପର୍କରେ ମୋର କିଛି ଧାରଣା ନଥିଲା ।

ଏପରି ହେବାର କାରଣ ଥିଲା ସହଜ । ନିଜର ଉପସ୍ଥିତି ଓ କୃତିତ୍ୱକୁ ସେ କେବେ ବିଜ୍ଞାପିତ କରୁ ନଥିଲେ । ହୁଏତ ନିଜକୁ ବିଜ୍ଞାପିତ କରିବାର କୌଶଳଟି ତାଙ୍କୁ ଜଣାନଥିଲା । ଜଣାଥିଲେ ସେ ଜୀବନରେ ଅଧିକ ଆର୍ଥିକ ସଫଳତା ଲାଭ କରିପାରିଥାନ୍ତେ ; ତାଙ୍କ ନାମ ଓଡ଼ିଶା ଓ ଓଡ଼ିଶା ବାହାରେ ଅଧିକ ପ୍ରସାରିତ ହୋଇଥାଆନ୍ତା । କିନ୍ତୁ ମୁଁ ତାଙ୍କୁ ଯେପରି ଜାଣେ, ସେ ସେପରି ନ ହୋଇ ଅନ୍ୟ ଏକ କୃଷ୍ଣ ଚରଣ ସାହୁ ହୋଇଥାଆନ୍ତେ ହୁଏତ ।

ନିହାତି ସାଧାସିଧା ମଣିଷ- କଥାରେ, ଆଚାର-ବ୍ୟବହାରରେ । ସରଳ, ଅମାୟିକ । ତାଙ୍କୁ ଦେଖିଲେ ତେଣୁ ବୁଝିବା ସହଜ ନଥିଲା - ଯେ ସେ ଜଣେ ଏତେ ଜ୍ଞାନୀ ଓ ଗୁଣୀ ବ୍ୟକ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟର ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରେ କୃଷ୍ଣଚରଣ ସାହୁଙ୍କ ସ୍ଥାନ । ପ୍ରାଚୀନ ସାହିତ୍ୟର ଆଲୋଚନା-ସମାଲୋଚନା ତଥା ପୋଥିସମ୍ପାଦନା ଥିଲା ତାଙ୍କର ଏକ ମାତ୍ର ବିଳାସ ଓ ତପସ୍ୟା ବିଶେଷତଃ ଭାରତର ରାମାୟଣ ପରମ୍ପରା ସମ୍ପର୍କରେ ତାଙ୍କର ଯେତିକି ଅଧ୍ୟୟନ ଓ ଗବେଷଣା ଥିଲା । ଅନ୍ତତଃ ଓଡ଼ିଶାରେ ଆଉ କାହାର ସେପରି ଥିଲାବୋଲି ମନେ ହୁଏ ନାହିଁ ।

ଗବେଷଣା, କୃଷ୍ଣଚରଣ ସାହୁଙ୍କର ବୃତ୍ତି ନଥିଲା, ଥିଲା ଜୀବନଯାପନର ପ୍ରଣାଳୀ । ଜୀବନର ଶେଷ କେତେ ବର୍ଷ ସେ କଟାଇଥିଲେ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ'ର ଶୁଦ୍ଧ ସମ୍ପାଦନାରେ । ଶେଷରେ ନିଜର ଜମି ବିକ୍ରିକରି  ସେଇ ଶୁଦ୍ଧ ସଂସ୍କରଣ ପ୍ରକାଶ କଲେ । କହିବା ଅନାବଶ୍ୟକ, ଏହାର ପରିଣାମ ହେଲା ତାଙ୍କପାଇଁ ବିପୁଳ ଆର୍ଥିକ କ୍ଷତି । ସେଥିପାଇଁ ତାଙ୍କର କ୍ଷୋଭ ନଥିଲା ।

ପ୍ରତିଭା ବା କୃତିତ୍ୱକୁ ସାମାଜିକ ବା ଆର୍ଥିକ ସ୍ୱୀକୃତିରେ ପରିଣତ କରିବାକୁ ହେଲେ ଲୋଡ଼ା କିଛି ହିସାବୀ ମନୋବୃତ୍ତି । ଏଇ ମନୋବୃତ୍ତିର ଅଭାବ ଥିଲା । କୃଷ୍ଣଚରଣ ସାହୁଙ୍କଠାରେ । ଅବସର



Digitized by srujanika@gmail.com

ପରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ପ୍ରଦତ୍ତ ଅବସର କାଳୀନ ଆର୍ଥିକ ସାହାଯ୍ୟ ସେ ଲାଭ କରିପାରିନଥିବଲେ । ଅଥଚ ତାଙ୍କଠାରୁ ଯଥେଷ୍ଟ କମ୍ ଯୋଗ୍ୟବ୍ୟକ୍ତିଗଣ ଅକ୍ଳେଶରେ ସେପରି ସାହାଯ୍ୟ ଯୋଗାଡ଼ କରିପାରୁଥିବାର ଲକ୍ଷ୍ୟ କରାଯାଇପାରେ ।.

ପ୍ରାଚୀନ ଓଡ଼ିଆ ସାହିତ୍ୟର ବହୁ ଗବେଷକଙ୍କ ଭଳି ସେ ପ୍ରାଚୀନତାର ଅନ୍ଧ ସ୍ତାବକ ବା ଭକ୍ତ ନଥିଲେ । ତୁଳନାତ୍ମକ ପଦ୍ଧତି ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ତାଙ୍କର ବିଶେଷତ୍ୱ ଥିଲା । ଗତ ଜାନୁଆରୀ ମାସରେ ଆମେରିକାର ଜଣେ ରାମାୟଣ ବିଶେଷଜ୍ଞ ପଲା ରିଚ୍‌ମ୍ୟାନ ଆସିଥିଲେ ଭୁବନେଶ୍ୱର-ଓଡ଼ିଶାର ରାମାୟଣ ପରମ୍ପରା ସମ୍ପର୍କରେ ତଥ୍ୟ ସଂଗ୍ରହ କରିବାପାଇଁ । ସେ ଥିଲେ ମୋର ଅତିଥି । ମୁଁ ତାଙ୍କୁ କୃଷ୍ଣଚରଣ ସାହୁଙ୍କସହିତ ଭେଟ କରାଇଦେଲି । କୃଷ୍ଣଚରଣ ସାହୁଙ୍କ ସହିତ ଆଲୋଚନା କରି ସେ ଏତେ ଖୁସି ହେଲେ ଯେ ପୁଣି ଥରେ ଓଡ଼ିଶା ଆସି ତାଙ୍କୁ ଭେଟିବେ ବୋଲି କହିଲେ । ରାମାୟଣର ଗଭୀର ତଥ୍ୟ କିପରି ସହଜ ସରଳ ଭାବରେ ବ୍ୟାଖ୍ୟା କରାଯାଇପାରେ, ତାହା କୃଷ୍ଣଚରଣଙ୍କୁ ଜଣାଥିଲା ବିଶେଷତଃ ତାଙ୍କର ହାସ୍ୟରସବୋଧ ସମସ୍ତଙ୍କୁ ମୁଗ୍ଧ କରୁଥିଲା । 'ସତୀର୍ଥ' ଅନୁଷ୍ଠାନ ଆନୁକୂଲ୍ୟରେ ଆୟୋଜିତ କଲା ରିଚ୍‌ମ୍ୟାନଙ୍କ ବକ୍ତୃତାସଭାରେ ସଭାପତିତ୍ୱ କରିଥିଲେ କୃଷ୍ଣଚରଣ ସାହୁ ।

ଓଡ଼ିଆ ବ୍ୟତୀତ ଇଂରାଜୀରେ ମଧ୍ୟ କୃଷ୍ଣଚରଣ ସାହୁ ଅନେକ ପ୍ରବନ୍ଧ ଲେଖିଯାଇଛନ୍ତି । ତାଙ୍କ ପ୍ରଣୀତ Mediaval Society and Religion of Orissaଏକ ମୂଲ୍ୟବାନ ଗ୍ରନ୍ଥ । ରାମାୟଣ ସମ୍ପର୍କରେ ଇଂରାଜୀରେ ଲିଖିତ ତାଙ୍କର ୧୮୦୦ ସନ୍ଦର୍ଭ ଏଯାଏଁ ପ୍ରକାଶିତ ହୋଇନାହିଁ । ଏହାର ପ୍ରକାଶନ ଏକାନ୍ତ ଜରୁରୀ ।

ବୟସରେ ସେ ମୋ'ଠାରୁ ଯଥେଷ୍ଟ ବଡ଼ ଥିଲେ ମଧ୍ୟ ଆମ ସମ୍ପର୍କ ଓ ଅନ୍ତରଙ୍ଗତାରେ କୌଣସି ଦୂରତ୍ୱ ନଥିଲା । ତାଙ୍କ ମୃତ୍ୟୁର ପନ୍ଦର ଦିନ ପୂର୍ବଯାଏଁ ସେ ଥିଲେ ହସ ହସ ଓ କର୍ମ ଚଞ୍ଚଳ । ହଠାତ୍ ଏପରି ହେଲା - 'ଏହି ପରି ହେବାର ଥିଲା' ଛଡ଼ା ଅନ୍ୟ କୌଣସି ଉତ୍ତର ହୁଏତ କାହାରି ପାଖରେ ନାହିଁ । କୃଷ୍ଣଚରଣ ସାହୁ ନୀରବରେ ସମଗ୍ର ଜୀବନ ନିୟୋଜିତ କରିଗଲେ ସାହିତ୍ୟ ସାଧନାରେ । ସେ ପ୍ରୟାସୀ ନଥିଲେ ଯଶ ଓ ସଫଳତାର । ସେ ଥିଲେ ଯଥାର୍ଥରେ ସାତ୍ତ୍ୱିକ । 'ସାତ୍ତ୍ୱିକର ନଥାଏ ନାମେ ପ୍ରୟାସ'- ରାଧାନାଥଙ୍କର ଏଇ ଉକ୍ତି କୃଷ୍ଣଚରଣ ସାହୁଙ୍କଠାରେ ଯଥାର୍ଥରେ ପ୍ରମାଣିତ ।

❒ *ସ୍ନାତକୋତ୍ତର ଇଂରାଜୀ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ଜୀବନେ ମରଣେ

ଡକ୍ଟର ଶ୍ରୀନିବାସ ତ୍ରିପାଠୀ

ସ୍ୱର୍ଗତ କୃଷ୍ଣଚରଣ ସାହୁଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମୋର ବନ୍ଧୁ ସାହିତ୍ୟ ଏକାଡେମୀର ସମ୍ପାଦକ ଶ୍ରୀ ହରପ୍ରସାଦ ପରିଚ୍ଛା ପଟ୍ଟନାୟକ କହିଲେ - ଯିବାକୁ ପ୍ରସ୍ତୁତ ନଥିବାବେଳେ ମୃତ୍ୟୁଦେବ ଯାନ ପଠାଇ ତାଙ୍କୁ ନେଇଯିବାକୁ ଖବର ଦେଲାଭଳି ଅବସ୍ଥା ହୋଇଛି ସାର୍‌ଙ୍କ କ୍ଷେତ୍ରରେ । ମୁଁ କହିଲି- କେବଳ କୃଷ୍ଣସାର୍ ପ୍ରସ୍ତୁତ ନାହାନ୍ତି ବୋଲି କହିଲେ ହେବନି ଓଡ଼ିଶାର ସମସ୍ତ ସାହିତ୍ୟ ସଂସ୍କୃତି ପ୍ରେମୀ ଜନସାଧାରଣ ତାଙ୍କୁ ବିଦାୟ ଦେବାକୁ ଚାହାନ୍ତିନି । କାରଣ ତାଙ୍କଠାରୁ ଓଡ଼ିଶାର ଆଉ ବହୁତ ପ୍ରାପ୍ୟ ରହି ଯାଇଛି ।

ସାର୍‌ଙ୍କ ସହିତ ମୋର ପ୍ରଥମ ସମ୍ପର୍କ ପୁସ୍ତକ ମାଧ୍ୟମରେ ମୁଁ ଯେତେବେଳେ ଶ୍ରୀ ଜଗନ୍ନାଥଙ୍କ ସମ୍ପର୍କିତ ଓଡ଼ିଆ ସମେତ ବିଭିନ୍ନ ଭାଷାରେ ଲିଖିତ କବିତାର ଅନୁବାଦ ପାଇଁ ଆବଶ୍ୟକ ଗବେଷଣା କରୁଥିଲି ସେତେବେଳେ ସାର୍‌ଙ୍କ ସମ୍ପାଦିତ ପୁସ୍ତକଟି ମୋର ବହୁ ଶ୍ରମ ଲାଘବ କରିଥିଲା । ସେହି କାରଣରୁ ମୁଁ ତାଙ୍କଠାରେ କୃତଜ୍ଞ କିନ୍ତୁ ମୁଁ ୧୯୮୮ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଇଂରାଜୀ ବିଭାଗରେ ଯୋଗ ଦେବାପରେ ତାଙ୍କୁ ବହୁ ସମୟରେ ଦେଖିଛି । ସାର୍‌ଙ୍କ ଗବେଷଣା ତଥା ପ୍ରସିଦ୍ଧିର ଔତ୍କର୍ଷ୍ୟ ହୁଏତ ତାଙ୍କ ସହିତ ଏତେଟା ମିଳାମିଶା କରିବାରେ ମୋତେ ବାଧା ଦେଉଥିଲା କିନ୍ତୁ ତାଙ୍କର ମାନସସନ୍ତାନ ପୁସ୍ତକଗୁଡ଼ିକର ସାନ୍ନିଧ ମୋତେ ତାଙ୍କଠାରେ ଚରଗଣୀ କରିଛି ।

ସାର୍‌ଙ୍କ ଜୀବନକାଳରେ ଶ୍ରୀଜଗନ୍ନାଥ ତାଙ୍କ ଚିନ୍ତା ଚେତନାକୁ ଆକର୍ଷିତ କରିଥିଲେ । ପୂର୍ବସୂଚିତ ଶ୍ରୀଜଗନ୍ନାଥ ପଦ୍ୟାବଳୀ ତାର ଉଦାହରଣ । ତାଙ୍କ ମରଣରେ ମଧ୍ୟ ସେ ତାଙ୍କୁ ଶରଣ ଦିଅନ୍ତୁ - ଏତିକି ହିଁ ପ୍ରାର୍ଥନା ।

❐ ଇଂରାଜୀ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ



Digitized by srujanika@gmail.com

# ଅଳ୍ପ କିଛିଟା ସ୍ମୃତି

ପ୍ରଫେସର କୃତ୍ତିବାସ ପଟ୍ଟନାୟକ

ଡକ୍ଟର କୃଷ୍ଣଚରଣ ସାହୁଙ୍କ ସହ ମୋର ପରିଚୟ ହୁଏ ୧୯୭୬ ମସିହାରେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ମୁଁ ୧୯୭୫ ମସିହାରେ ଯୋଗ ଦେଇଥିଲେହେଁ ବାଣୀବିହାର ପରିସରରେ ରହିଲାପରେ ତାଙ୍କ ସହ ଦେଖା ହୋଇଥିଲା, ପ୍ରଫେସର ବିଭୂତି ଭୂଷଣ ଦେଓଙ୍କ ଘରେ । ଡକ୍ଟର ସାହୁ, ଡକ୍ଟର ଦେଓ, ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ଓ ପ୍ରଫେସର ବିଚିତ୍ରା ନନ୍ଦ ସିଂହ ରେଭେନ୍ସା କଲେଜରେ ସ୍ନାତକଶ୍ରେଣୀ ପର୍ଯ୍ୟନ୍ତ ସହପାଠୀଥିଲେ । କିନ୍ତୁ ଡକ୍ଟର ସାହୁ ଓ ଯତୀନବାବୁ ଏମ୍.ଏ. ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ପଢ଼ିଥିବାରୁ ସେ ଦୁଇଜଣଙ୍କର ସମ୍ପର୍କ ଟିକିଏ ନିବିଡ଼ ଥିଲା ବୋଲି ମୋର ମନେହୁଏ । ପ୍ରଫେସର ଦେଓ ଓ ପ୍ରଫେସର ମହାନ୍ତି ରେଭେନ୍ସା କଲେଜରେ ମୋର ଶିକ୍ଷକ ଥିଲେ । ତେଣୁ ମୁଁ କୃଷ୍ଣ ବାବୁଙ୍କୁ ସେହି ଦୃଷ୍ଟିରୁ ଶିକ୍ଷକ ଭାବେ ସମ୍ମାନ କରୁଥିଲି । ତାଙ୍କର ସାହିତ୍ୟ କୃତି ଓ ପ୍ରାଚୀନ ସାହିତ୍ୟରେ ପାଣ୍ଡିତ୍ୟ ଥିଲା ବୋଲି ମୁଁ ସମସ୍ତଙ୍କ ପାଖରୁ ଶୁଣିଛି, କିନ୍ତୁ ମୋର ସେ ବିଷୟରେ ଜ୍ଞାନ ଯଥେଷ୍ଟ ସ୍ୱଳ୍ପ । ତେଣୁ ସେ ବିଷୟରେ ମୁଁ ଏଠାରେ ଆଲୋଚନା କରିବା ନିଷ୍ପ୍ରୟୋଜନ ମନେ କରୁଛି ଓ ଅନ୍ୟ କେତେକ ଦିଗ ଯାହାକି ମୋତେ ସ୍ପର୍ଶ କରିଛି ତାହା ଏଠାରେ ଉଲ୍ଲେଖ କରିବାକୁ ଯାଉଛି ।

ସମୟର ସ୍ରୋତରେ ପରିଚୟର ସୀମା ସମ୍ପର୍କକୁ ଉନ୍ନୀତ ହୁଏ । ମୋର ବି ସେଇଆ ହୋଇଥିଲା । ବିଭିନ୍ନ ବିଷୟରେ ଆଲୋଚନା, ପର୍ଯ୍ୟାଲୋଚନା ମାଧ୍ୟମରେ ତାଙ୍କ ସହ ବନ୍ଧୁତ୍ୱ ସୃଷ୍ଟି ହେଲା । ବିଶେଷତଃ ବିଶ୍ୱବିଦ୍ୟାଳୟ ସମସ୍ୟା ନେଇ । ୧୯୭୭ ମସିହାରେ ବିଶ୍ୱବିଦ୍ୟାଳୟ ପରିଚାଳନା ସମ୍ପର୍କରେ ଅସନ୍ତୋଷ ପ୍ରକାଶ କରି ଶିକ୍ଷକ ସମ୍ପ୍ରଦାୟ ଆନ୍ଦୋଳନ କରୁଥାନ୍ତି । କୃଷ୍ଣବାବୁ ପ୍ରାୟ ସବୁ ଆଲୋଚନାକୁ ଯାଆନ୍ତି । ସବୁ ଶୁଣନ୍ତି , ନିବିଷ୍ଟ ଚିତ୍ତରେ । କିନ୍ତୁ କ୍ୱଚିଦ୍ ମତାମତ ପ୍ରକାଶ କରନ୍ତି । ମତେ ତାହା ଆଶ୍ଚର୍ଯ୍ୟ ଲାଗେ । କାରଣ କେତେକ ଲୋକ ନିଜର ସ୍ୱାର୍ଥହାନି ଭୟରେ ଏହି ଆନ୍ଦୋଳନଠାରୁ ଦୂରରେ ରହୁଥିଲେ । କିନ୍ତୁ ସେ ବହୁତ ଭିନ୍ନ । ଯୁବ ସୁଲଭ ଉତ୍ସାହରେ ମୁଁ ତାଙ୍କୁ ଥରେ ପଚାରିଲି ''ଆପଣ କିଛି କହୁ ନାହାନ୍ତି କାହିଁକି ?'' ଧୀରସ୍ଥିର ସରଳଭାବରେ ଉତ୍ତର ଦେଲେ ''ସମସ୍ତେତ ସେହି କଥା କହୁଛ, ଆଉ ଅଧିକ କ'ଣ କହିବି ?'' ଗୋଟିଏ କଥାକୁ ଜଣକ ପରେ ଜଣେ କହିବା, ବିଭିନ୍ନ ଭାବରେ, ଭିନ୍ନ ରୂପରେ ପ୍ରକାଶ କରି ସମୟ ନଷ୍ଟ କରିବା ଏବଂ ଶ୍ରୋତାମାନଙ୍କ ମଧ୍ୟରେ କିଛିଟା ବିରକ୍ତିଭାବ ସୃଷ୍ଟି କରିବା ଯେ ଅନାବଶ୍ୟକ ସେ କଥା ସେ ଗଭୀର ଭାବେ ଉପଲବ୍ଧି କରିଥିଲେ । ଏହି ସରଳ କଥା ଆମ ଭିତରେ ଅଧିକାଂଶ ଲୋକ (ବିଶେଷତଃ ଆମେ ଓଡ଼ିଆମାନେ)



Digitized by srujanika@gmail.com

ହୃଦୟଙ୍ଗମ କରି ପାରନ୍ତିନି । ସେ ସମୟରେ ମୁଁ ମଧ୍ୟ ବିଶେଷ ଭାବରେ ଭାବି ପାରିନଥିଲି । ବରଂ ମୋର ସେ ସମୟର ଦୃଷ୍ଟି ଭଙ୍ଗୀରେ ସେ ଜଣେ ନିଜସ୍ୱ ମତବାଦ ନଥିବା (opinionless person) ବ୍ୟକ୍ତି ଥିଲେ । ଏହି ଆନ୍ଦୋଳନର ପରିସମାପ୍ତି ପରେ ବିଶ୍ୱବିଦ୍ୟାଳୟ ଶିକ୍ଷକସଂଘ ଯୋଗ୍ୟତା ଭିତ୍ତିକ ବ୍ୟକ୍ତିଗତ ପଦୋନ୍ନତି (Personal Merit Promotion) ପାଇଁ ଚେଷ୍ଟା କରୁଥାନ୍ତି । ପ୍ରଥମାବସ୍ଥାରେ ମୁଁ ସଂଘର କାର୍ଯ୍ୟ ନିର୍ବାହୀ ସମିତି (Executive Committee)ର ସଭ୍ୟ ଓ ପରେ ପରେ ସେକ୍ରେଟାରୀ ଭାବେ ଏହି ସମସ୍ୟା ସହ ଓତ ପ୍ରୋତ ଭାବେ ଜଡ଼ିତ ହୋଇ ପଡ଼ିଥିଲି । ବିଭିନ୍ନ ସ୍ତରରେ ଉଚ୍ଚ ସରକାରୀ ପଦାଧିକାରୀ ଓ ରାଜନୈତିକ ବ୍ୟକ୍ତି ବିଶେଷଙ୍କ ସହ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ (University Grants Commission) ନୀତି ଓ ପଦ୍ଧତିକୁ ଓଡ଼ିଶା ସରକାରଙ୍କୁ ଗ୍ରହଣ କରିନେବାକୁ ପ୍ରବର୍ତ୍ତାଇବାକୁ ପଡୁଥିଲା । ଶ୍ରୀ ଜ୍ଞାନଚାନ୍ଦ ମୁଖ୍ୟ ସଚିବ ଥାନ୍ତି । ପୂର୍ବରୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଶାସକ ଓ ଶିକ୍ଷାସଚିବ ଭାବେ କାର୍ଯ୍ୟ କରିଥିବାରୁ ତାଙ୍କର ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ପ୍ରତ୍ୟକ୍ଷ ଅନୁଭୂତି ଥିଲା । ବ୍ୟକ୍ତି ଭାବରେ ସେ ମଧ୍ୟ ଥିଲେ ଜଣେ ନମନୀୟ ବ୍ୟକ୍ତିତ୍ୱର ଅଧିକାରୀ । ଶିକ୍ଷାଗତ ଯୋଗ୍ୟତା, ଉନ୍ନତମାନର ଗବେଷଣା, ଅଭିଜ୍ଞତା ଏବଂ ଦରମା ହାରର ଶେଷ ଭାବରେ ସ୍ଥିତାବସ୍ଥାରେ ପହଞ୍ଚିଥିବା ଥିବା କେତେକ ପ୍ରାଧ୍ୟାପକଙ୍କ biodata ପ୍ରସ୍ତୁତ କରିବା ଦରକାର ପଡ଼ିଲା । କଳା ବିଭାଗ ପକ୍ଷରୁ ଯେଉଁ ତାଲିକା ପ୍ରସ୍ତୁତ କରାଯାଇଥିଲା ତାହା ଅଗ୍ରଭାଗରେ ଥିଲେ ଡକ୍ଟର କୃଷ୍ଣ ଚରଣ ସାହୁ । ମୁଖ୍ୟ ସଚିବଙ୍କୁ ଆମର ତତ୍‌କାଳୀନ କୁଳପତି ପ୍ରଫେସର ମନ୍ମଥ ନାଥ ଦାସଙ୍କ ଜରିଆରେ ସ୍ମାରକପତ୍ର ଦିଆ ଯାଇଥିଲା ଓ ସାକ୍ଷାତ ଆଲୋଚନା କରିବାକୁ ସମୟ ମଗାଯାଇଥିଲା ଗୋଟିଏ ଛୁଟିଦିନ ସକାଶେ କୁଳପତି ପ୍ରଫେସର ଦାସ ଖବର ଦେଲେ ଯେ ସେ ମୁଖ୍ୟ ସଚିବଙ୍କ ସହ ଆଲୋଚନା କରିଛନ୍ତି । 'ସଂଘ ତରଫରୁ ଆପଣମାନେ ଯାଇ ସକାଳ ୯ଟାରେ ତାଙ୍କ ସହ ଦେଖା କରନ୍ତୁ । ଦୁର୍ଭାଗ୍ୟ କି ସୌଭାଗ୍ୟ କହିପାରିବିନି । ସେଦିନ ସକାଳୁ କୌଣସି ପ୍ରଫେସର ଯେଉଁମାନେ ଏହି କାର୍ଯ୍ୟରେ ଉତ୍ସାହିତ ଥିଲେ, ବାଣୀବିହାର ପରିସର ମଧ୍ୟରେ ନଥିଲେ । ମୁଁ ମୋର ବନ୍ଧୁ କୈଳାସ ବାବୁ (ପ୍ରଫେସର କୈଳାସ ଚନ୍ଦ୍ର ଦାଶ, ରସାୟନ ବିଭାଗର ପ୍ରାକ୍ତନ ପ୍ୟାଧାପକ) ଯତୀନ ବାବୁଙ୍କ ଘରକୁ ଗଲୁ । ସେ କହିଲେ କୃଷ୍ଣକୁ ନେଇ ସାଥିରେ ଯିବା । କୃଷ୍ଣ ବାବୁଙ୍କ ଘରେ ପହଞ୍ଚିଲୁ । ସେ ସାଙ୍ଗେ ସାଙ୍ଗେ ବାହାରିଲେ କିନ୍ତୁ କହିଲେ "ମୋର ଓ ଯତିର ନାମ ପ୍ରମୋସନ ତାଲିକାରେ ଅଛି, ତୁମ ଦୁଇଜଣଙ୍କର ଆଠ ବର୍ଷର ଅଭିଜ୍ଞତା ନବାରୁ ତୁମ ନାମ ସବୁ ନାହିଁ । ତେଣୁ ତୁମେ ଦୁଇଜଣ ଯିବାଟା ଠିକ୍ ହେବ", ଆମେ ଉତ୍ତର ଦେଲୁ ନାମ ଓ ତାଲିକାକୁ କେହି ଦେଖିବେ ନାହିଁ । ଆପଣଙ୍କର ସାହିତ୍ୟ ସାଧନା, ଶୁକ୍ଳକେଶ, ଧିରସ୍ଥିର ଭାବ ଆପଣଙ୍କୁ ପ୍ରଫେସର ଚେହେରା ଦେଇଛି ଏକଥା କ'ଣ କେହି ଅସ୍ୱୀକାର କରି ପାରିବେ । ଶ୍ରୀଯୁକ୍ତ ଜ୍ଞାନଚାନ୍ଦଙ୍କ ସହ ଆଲୋଚନା ସହୃଦୟତା ମଧ୍ୟରେ ହେଲା ସେ ପ୍ରକୃତରେ କୃଷ୍ଣବାବୁଙ୍କ Biodataରେ ଆଖି ପକାଇଲେ କହିଲେ "ସବୁ ଠିକ୍ ଅଛି, କିନ୍ତୁ ସରକାରଙ୍କର ସବୁ ବିଷୟରେ ଅର୍ଥ ବିଭାଗର ସହମତି (Concurrance) ଦରକାର । ଆପଣମାନେ ଯାଇ ଅର୍ଥ ସଚିବ ରାଜ କିଶୋର ଭୁଜବଳଙ୍କୁ (ବର୍ତ୍ତମାନର ମୁଖ୍ୟସଚିବ)ଙ୍କୁ ଦେଖା କରନ୍ତୁ ଏବଂ Stagnation case ଗୁଡ଼ିକ ଦେଖାଇ ତାଙ୍କର ସମ୍ମତି ହାସଲ କରିବାକୁ ଚେଷ୍ଟା କରନ୍ତୁ । ମୁଁ ପଠାଇଛି ବୋଲି କହିବେ ନାହିଁ ।"



Digitized by srujanika@gmail.com

ପରେ ପରେ ଆମ୍ଭେ ସମସ୍ତେ ଶ୍ରୀଯୁକ୍ତ ଭୁଜବଳଙ୍କ ଘରକୁ ଯାଇ କେବଳ Stagnation case ଦେଖାଇ ଆଲୋଚନା କରୁଥିଲୁ । ପ୍ରଥମ ଆଲୋଚନାରେ କିଛିଟା ବରଫ ତରଳିଲା । କିନ୍ତୁ ଦ୍ୱିତୀୟ ଆଲୋଚନାରେ ସେ କୃଷ୍ଣବାବୁଙ୍କ biodata ଟି ମନେ ରଖିଥିଲେ ।

ଅଶୀ ଦଶକର ପ୍ରଥମ ଭାଗରେ ମୁଁ ଫକୀର ମୋହନ ଛାତ୍ରାବାସର ତତ୍ତ୍ୱାବଧାରକ ଥିଲା ସମୟରେ ତାଙ୍କ ସହ ଆଉ ଏକପ୍ରକାର କାର୍ଯ୍ୟ କରିବାର ସୁଯୋଗ ମିଳିଲା । ସେ ମୋ ପୂର୍ବରୁ ମଧୁସୂଦନ ଛାତ୍ରାବାସର ତତ୍ତ୍ୱାବଧାରକ ଥାନ୍ତି । ଅନ୍ତେବାସୀମାନଙ୍କର ବିଭିନ୍ନ ପ୍ରକାରର ସମସ୍ୟା, ଛାତ୍ରାବାସରେ କାର୍ଯ୍ୟରତ ସ୍ୱଳ୍ପବେତନ ଭୋଗୀ କର୍ମଚାରୀମାନଙ୍କ ଦୁରବସ୍ଥା, ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କର ଗତାନୁଗତିକ ମନ୍ଥର କାର୍ଯ୍ୟ ପ୍ରଣାଳୀ ନେଇ ଆମ୍ଭେମାନେ ଯେତବେଳେ ବ୍ୟସ୍ତ ଓ ବିବ୍ରତ ହେଉ, କୃଷ୍ଣବାବୁ ଆମ୍ଭମାନଙ୍କୁ ଧୈର୍ଯ୍ୟ ଧରିବାକୁ ପ୍ରବର୍ତ୍ତାନ୍ତି । ତାଙ୍କର ଉପଦେଶ ''ଧିରସ୍ଥିର ଭାବରେ କାର୍ଯ୍ୟକର । ବ୍ୟସ୍ତ ହୋଇ କିଛି ଲାଭ ନାହିଁ । ଅତିମାତ୍ରାରେ ଉତ୍ସାହିତ ହୋଇ କାର୍ଯ୍ୟ କରିବା ପ୍ରଣାଳୀରେ ତୁମେ ଭୁଲ କରି ବସିବ । ତାହାର ପରିଣାମ ତୁମ ପାଇଁତ ଭଲ ନୁହେଁ, ଅନ୍ୟମାନଙ୍କ ପାଇଁ ମଧ । ୧୯୮୩-୮୪ ଶିକ୍ଷା ବର୍ଷରେ ସେ ବିଶ୍ୱବିଦ୍ୟାଳୟ ପରିସର ମଧରେ ଥିବା ଛାତ୍ରାବାସ ମାନଙ୍କର ମୁଖ୍ୟ ତତ୍ତ୍ୱାବଧାରକ (Warden, Post Gradnate Hostels) ରୂପେ ଦକ୍ଷତାର ସହ କାର୍ଯ୍ୟ ନିର୍ବାହ କରିଛନ୍ତି । ୧୯୭୧ ମସିହାରେ ଓ୍ୟାର୍ଡ଼େନ ପଦ ସୃଷ୍ଟି ହେବା ପରଠାରୁ ଆଜି ପର୍ଯ୍ୟନ୍ତ ସେ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯେ କି ପ୍ରାଧ୍ୟାପକ (Reader) ଭାବେ ଥିଲେ ମଧ ଏହି ପଦ ଅଧିକାର କରିଛନ୍ତି । ଏହା ତାଙ୍କ ଦକ୍ଷତାର ପରିଚାୟକ ।

ଆଉ ଗୋଟିଏ କଥା ମନେ ପଡ଼େ । ସେ ସମୟରେ ଆକାଶବାଣୀ କଟକ କେନ୍ଦ୍ର ମୋତେ ବିଜ୍ଞାନ ଓ କେତେକ ବୈଜ୍ଞାନିକଙ୍କ ଜୀବନୀ ବିଷୟରେ ଓଡ଼ିଆରେ କହିବାକୁ ଅନୁରୋଧ କରିଥିଲେ । ବହୁତ ବର୍ଷହେଲା ଓଡ଼ିଆରେ ବିଶେଷ ଲେଖାଲେଖି କରିନଥିଲି । ତେଣୁ ଅନୁଭବ କଲି ଯେ ଲେଖିପାରିବିନି, ଡକ୍ଟର ସାହୁଙ୍କୁ ଏ ବିଷୟରେ ପରାମର୍ଶ ମାଗିଲି । ସେ କହିଲେ ତୁମେ କେମିତି ଲେଖୁଛ ? କହିଲି ''ଆଗ ଇଂରାଜୀରେ ଲେଖୁଛି, ତାପରେ ଅନୁବାଦ କରିବାକୁ ଚେଷ୍ଟା କରୁଛି ।'' ସେ କହିଥିଲେ ''ସେହିଯୋଗୁ ତୁମର ଅସୁବିଧା ହେଉଛି । ଇଂରାଜୀ ଓ ଓଡ଼ିଆ ଭାଷାର ବାକ୍ୟଗଠନ ପ୍ରଣାଳୀ ଭିନ୍ନ । ତୁମେ ଯେଉଁ ବିଷୟରେ ଲେଖିବାକୁ ଯାଉଛ ସେକଥାକୁ ଆଗ ଚିନ୍ତା କରି ସ୍ଥିର କର । ତାପରେ ସିଧା ଓଡ଼ିଆରେ ଲେଖ । ଦେଖିବ ସବୁ ଠିକ୍ ହୋଇଯିବ ।'' ଏପ୍ରକାର ବ୍ୟବହାରିକ ଉପଦେଶ ଦେବାକୁ ସେହିଁ ବିଜ୍ଞ ବ୍ୟକ୍ତି ।

ବିଜ୍ଞାନ ବିଭାଗର ଅଧ୍ୟାପକ ଗଣ ଅଧିକାଂଶ ସମୟରେ ତାଙ୍କ ବିଭାଗରେ ଅଧ୍ୟୟନ ଓ ଗବେଷଣା କରିଥାନ୍ତି । ସାଧାରଣତଃ କଳା ବିଭାଗର ଅଧ୍ୟାପକମାନେ ନିଜ ନିଜର ବାସ ଗୃହରେ ସେମାନେଙ୍କର ଅଧ୍ୟୟନ ଓ ଗବେଷଣା ଆଦି ସମ୍ପୂର୍ଣ୍ଣ କରନ୍ତି । ଡକ୍ଟର ସାହୁ ତାହାର ଏକ ବ୍ୟତିକ୍ରମ । ମୁଁ ବହୁତଥର ତାଙ୍କ ବିଭାଗକୁ ଯାଇଛି । ପ୍ରାୟ ସବୁବେଳେ ସେ ତାଙ୍କ ଗବେଷକ ଓ ଗବେଷିକା ମାନଙ୍କ ସହ ନାନାଦି ଆଲୋଚନା ପର୍ଯ୍ୟାଲୋଚନାରେ ନିମଗ୍ନ ଥାଆନ୍ତି । କିନ୍ତୁ ପହଞ୍ଚିଗଲେ କହିବେ ''ଚା ଟିକିଏ ପିଅ । ଯଦି ମିଠା ଅଥବା ବାରମଜା ଆଦି କିଛି ଥାଏ କହିବେ ଖାଅ ।'' ବଡ଼ ସରଳ



Digitized by srujanika@gmail.com

ଭାବ । ସବୁ କାର୍ଯ୍ୟ କରିବା ସହ ସ୍ପଷ୍ଟ ଭାବେ କିଛିଟା ନିର୍ଲିପ୍ତ ଭାବ। ବ୍ୟସ୍ତତା ଦେଖିବାକୁ ବିରଳ । କଠୋର ଅଧ୍ୟାପନା, ଜଣେ ଗୃହୀର ସଂସାର ମଧ୍ୟରେ କିଛିଟା ବେପରୁଆ ଭାବ । ଏସବୁ କ୍ୱଚିତ୍ ଦେଖିବାକୁ ମିଳେ । ସେ ଏକ ବ୍ୟତିକ୍ରମ । ପ୍ରଫେସର ଦେଓ ଏହି ଅଳ୍ପଦିନ ତଳେ ଟେଲିଫୋନରେ କହିଲେ ''କୃଷ୍ଣ ଦେହ ଖରାପ, ତାର କ୍ୟାନ୍‌ସର ହୋଇଛି, ପ୍ରଥମାବସ୍ଥାରେ ଜଣା ପଡ଼ିଲାନି, କଟକରେ ଅସ୍ତ୍ରୋପଚାର ବେଳକୁ ଦେଖାଗଲା ଯେ ତାହା ବ୍ୟାପି ଯାଇଛି । ବିଶେଷ କିଛି କରି ହେବନି ଇତ୍ୟାଦି ।'' ତାଙ୍କୁ ଦେଖିବାକୁ ଯିବାକୁ ଇଚ୍ଛା ପ୍ରକାଶ କଲି । ଧାରଣା ହେଲାନି, ଏହା ଶେଷ ସମୟ । ଜୀବଦଶାରେ ଶେଷ ଦର୍ଶନ ଆଉ ହୋଇ ପାରିନି । ତେଣୁ ଦୁଃଖିତ ପୁନଶ୍ଚ ଗତ ଛଅ ତାରିଖ ସକାଳୁ ଡକ୍ଟର ଦେଓ ଟେଲିଫୋନରେ ସମ୍ବାଦ ଦେଲେ ''କୃଷ୍ଣ ଚାଲିଗଲା'' ଖବର ପାଇ ପହଞ୍ଚିଲାବେଳକୁ ତାଙ୍କ ଜ୍ଞାତି, ଛାତ୍ର ଛାତ୍ରୀ ଓ ଅନ୍ତରଙ୍ଗ ବନ୍ଧୁମାନେ ସ୍ୱର୍ଗଦ୍ୱାରକୁ ନେବାକୁ ବନ୍ଦୋବସ୍ତ କରୁଛନ୍ତି । ମୃତ୍ୟୁ ପରେ ମଧ୍ୟ ତାଙ୍କର ଚେହେରା ଶାନ୍ତ ଓ ସତେଜ ଦୁଃଖ, ଗ୍ଲାନି, ଭୟଭ୍ରାନ୍ତି ଯେପରି ସ୍ପର୍ଶ କରିପାରିନି । ଠିକ୍ ଜୀବଦ୍ଦଶାରେ ଯେମିତି । ଆତ୍ମା ଅଛି କି ନା ଜାଣେନା । ଜୀବନର ଜୟ ଯାତ୍ରାରେ ମଣିଷ ଆଜି ଉନ୍ନତ । ଜୀବନ-ଆତ୍ମା ଏହି ଦାର୍ଶନିକ ତତ୍ତ୍ୱ ତାକୁ ପ୍ରଲୁବ୍ଧ କରୁନି । ତଥାପି ହଜାର ହଜାର ବର୍ଷର ସାଂସ୍କୃତିକ ପରମ୍ପରା ଏବଂ ଧାର୍ମିକ ଚେତନା ଅନ୍ତର ମଧ୍ୟରୁ କହି ଉଠୁଛି ''ଆତ୍ମାର ସଦ୍‌ଗତି ହେଉ'' ।

❑ *ସ୍ନାତକୋତ୍ତର ଭୌତିକ ବିଭାଗ,*
*ଉତ୍କଳ ବିଶ୍ୱବିଦ୍ୟାଳୟ*

# 'ଜନ୍ମ'-'ମୃତ୍ୟୁ'ରୁ ମୁକ୍ତ ଏକ, ଅମୃତ ଚେତନା

**ପ୍ରଫେସର ବାସୁଦେବ ସାହୁ**

ଜୀବନ 'ଜନ୍ମ' ନୁହେଁ କି ମୃତ୍ୟୁ ନୁହେଁ- ଅଥବା ଏ ଦୁଇ ମଧ୍ୟରେ ସମୟ-ସେତୁ ବି ନୁହେଁ- ଅଥଚ ସେ ମହାକାଳ, ମହାସମୟର ଚକ୍ର; ଅନନ୍ତ ଶାଶ୍ୱତ ଅଖଣ୍ଡ ଅନିର୍ବାଣ ଚେତନାର ମହାପ୍ରବାହ; ସତ୍-ଚିତ୍-ଆନନ୍ଦ, ସତ୍-ଆଲୋକ-ଅମୃତର ଅଭୂତପୂର୍ବ ଅନୁଭବ, ପଞ୍ଚ ମହାଭୂତରେ ଯାହାର ରୂପାୟନ, ଅନନ୍ୟତାରେ ସମୀକରଣ । ଏହି ତତ୍ତ୍ୱକୁ ଯେଉଁ ମହାଭୌତିକ ମଣିଷ ଉପଲବ୍ଧି କରି ଜୀବନରେ ତାହାକୁ ସାର୍ଥକ ଭାବରେ ପ୍ରୟୋଗ କରିପାରେ, ସେ ଜନ୍ମ-ମୃତ୍ୟୁକୁ ଜୟ କରିପାରେ ଓ ଅମୃତ-ଚେତନାରେ ରୂପାନ୍ତରିତ ହୋଇପାରେ ।



Digitized by srujanika@gmail.com

ସେହିଭଳି ଜଣେ ମଣିଷ ଥିଲେ ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁ । ସେ ଏକ ନାମବାଚକ ବିଶେଷ ନୁହନ୍ତି, ଏପରି ଏକ ବିଶେଷ୍ୟ (ବିଶ୍ଳେଷଣଯୋଗ୍ୟ) ଯାହାଙ୍କ ପାଇଁ ଯେ କୌଣସି ବିଶିଷ୍ଟ ବିଶେଷଣ ପୂର୍ବନିଧାନ ଲାଭ କରିପାରିବ । ସେ ପିତାମାତଙ୍କର ଉତ୍ତମ ପୁତ୍ର ଓ ଗୁରୁକୁଳର ଉତ୍ତମ ଛାତ୍ର, ପୁତ୍ର କନ୍ୟାଙ୍କର ଆଦର୍ଶ ପିତା, ଛାତ୍ରମାନଙ୍କର ଉତ୍ତମ ଗୁରୁ, ଗବେଷକ-ଗବେଷିକାମାନଙ୍କର ଦକ୍ଷ ପ୍ରାମାଣିକ ଦିଗ୍‌ଦର୍ଶକ, ବନ୍ଧୁମାନଙ୍କର ଅଭୁଲା ସୁହୃଦ୍, ଅଧାପକ, ପ୍ରାଧାପକ, ପ୍ରଫେସର୍, ପରୀକ୍ଷାନିୟନ୍ତ୍ରକ, ଛାତ୍ରାବାସ- ମୁଖ୍ୟ ତତ୍ତ୍ୱାବଧାରକ, ଛାତ୍ର ସଂସଦ ଉପଦେଷ୍ଟା, ପ୍ରାଚୀନ ଓ ଆଧୁନିକ ସାହିତ୍ୟ ଏବଂ ସଂସ୍କୃତିର ବାର୍ତ୍ତାବହ ପ୍ରାବନ୍ଧିକ, ସମୀକ୍ଷକ, ଗବେଷକ, ପୋଥି-ସଂପାଦନା-ବିଶାରଦ, ସର୍ବ ଭାରତୀୟ ଖ୍ୟାତି ସଂପନ୍ନ ରାମକଥା ଓ ରାମାୟଣର ପ୍ରାମାଣିକ ବିଦ୍ୱାନ୍, ବାଗ୍ମୀ, କବି, କଥାକାର, ନାଟ୍ୟକାର, ରମ୍ୟ-ରଚନାସ୍ରଷ୍ଟା ଇତ୍ୟାଦି ଇତ୍ୟାଦି ନାମ ବିଶିଷ୍ଟ ବିଶେଷଣରେ ଅନ୍ୱିତ, ମଣ୍ଡିତ ତାଙ୍କର ନାମ, ସୁନାମ, ସ୍ୱନାମ, ଅନେକ ନାମ ଓ ପରିଶେଷରେ 'ସେ' ସଙ୍କେତନାମ, 'ସର୍ବନାମ' ।

୧୯୨୯ ଏପ୍ରିଲ୍ ୧୬ ତାରିଖ ପବିତ୍ର 'ଅଶୋକାଷ୍ଟମୀ' ତିଥିରେ ପାଞ୍ଚ-ମହାଭୌତିକ ରୂପ ନେଇ ଜଗତ୍‌ସିଂହପୁର ନିକଟ ନାଟି ଗାଁରେ ଆବିର୍ଭୂତ ଏହି ଶିଶୁ କୃଷ୍ଣ ପିତାମହ-ପିତା-ପିତୃବ୍ୟ ପରଂପରାରେ ଆଚରିତ ଶିକ୍ଷକ ବୃତ୍ତି ଓ ପ୍ରବୃତ୍ତିର ପ୍ରଭାବରେ ଭାବିତ ଓ ପ୍ରଭାବିତ ହୋଇଥିଲେ । ସିଠାଳ ମଧ ଇଂରାଜୀ ବିଦ୍ୟାଳୟର ଆଦର୍ଶ ଛାତ୍ର କୃଷ୍ଣଙ୍କର ପିପଠିଷା, ଜିଜ୍ଞାସା ଓ ଅନ୍ୱେଷାନୁରାଗ ଶିକ୍ଷକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲେ । ବେଳେବେଳେ ଗୁଣୁ ଗୁଣୁ ହୋଇ ସେ କବିତା/ସଂଗୀତ ରାଜ୍ୟରେ ଦୈନିକ ଆନନ୍ଦ ପାଉଥିଲେ । ଜଗତ୍‌ସିଂହପୁରର ଇତିହାସ ଓ ପରଂପରା ସଂପର୍କରେ ତଥ୍ୟ ସଂଗ୍ରହ ପାଇଁ ୧୩ ବର୍ଷ ବୟସରୁ ତାଙ୍କର ପିପାସା ଜାଗ୍ରତ୍ ହୋଇଥିଲା । ସମସ୍ତଙ୍କ ତୁଣ୍ଡରେ ଗୋଟିଏ ଆଶିଷ ବାଣୀ - ''କୃଷ୍ଣ ଆମର ସାରା ଭାରତରେ ନାଁ କରିବ ।''

୧୯୪୨ରେ କୃଷ୍ଣ ପ୍ୟାରୀମୋହନ ଏକାଡ଼େମିରେ ନାଁ ଲେଖାଇଲେ । ଅଙ୍କ ଥିଲା ତାଙ୍କର ସ୍ୱତନ୍ତ୍ର ଇଚ୍ଛାଧୀନ ପାଠ୍ୟ । ବେଶ୍ ଦକ୍ଷତା ସେ ଦେଖାଇଥିଲେ ସେଇ ପାଠରେ । କବିତା, ପ୍ରବନ୍ଧ ଓ ତର୍କ ପ୍ରତିଯୋଗିତାରେ ସେ ଆଗ୍ରଣୀ ହେଉଥିଲେ । ସାହିତ୍ୟ ପ୍ରୀତି ପାଇଁ ସେ ସମସ୍ତଙ୍କର ପ୍ରୀତିଭାଜନ ଥିଲେ । ୧୯୪୨ ଅଗଷ୍ଟ ବିପ୍ଳବ ତାଙ୍କ ମଧରେ ଦେଶାତ୍ମବୋଧର ଅଗ୍ନି-ମନ୍ତ୍ର ସଂଧ୍ୱନିତ କରିଥିଲା, ଯାହା ପରବର୍ତ୍ତୀ କାଳରେ ତାଙ୍କୁ ସମାଜବାଦୀ କରିତୋଳିଥିଲା ।

୧୯୪୬ରେ ସେ ଆସନ୍ତି ରେଭେନ୍ସା ମହାବିଦ୍ୟାଳୟକୁ । ସେହି ବର୍ଷ ପରିବାରଦ୍ୱାରା ବାଧହୋଇ ସେ ବିବାହ-କରନ୍ତି; କିନ୍ତୁ ତାଙ୍କ ପାଇଁ ବିବାହ ଏକ ବନ୍ଧନ ନଥିଲା, ଉଚ୍ଚ ଶିକ୍ଷା ପଥରେ ପ୍ରତିବନ୍ଧକ ନଥିଲା । ବିବାହିତ କୃଷ୍ଣ ଭବ ଜଳରେ ନିଜବିମ୍ବକୁ ଦେଖି ମୁଗ୍ଧ ହେଉଥିବା ନିମ୍ନମୁଖୀ ସୁପର୍ଣ୍ଣା (ପକ୍ଷୀ) ନଥିଲେ । ସେ ଥିଲେ ପ୍ରଜ୍ଞାନର ଅନନ୍ତ ଅନ୍ତରୀକ୍ଷ ଆଡ଼କୁ ଚକ୍ଷୁ ନିର୍ନିମେଷ କରିଥିବା ଊର୍ଦ୍ଧ୍ୱମୁଖୀ ପରମ ଆତ୍ମା-ସୁପର୍ଣ୍ଣା । ସେ ରେଭେନ୍ସା ମହାବିଦ୍ୟାଳୟର ବିଦ୍ୟା-ତାପସ ଇଂରାଜୀ ଅଧାପକ ବିଧୁଭୂଷଣ ଦାସ, ସଂସ୍କୃତ ଓ ଓଡ଼ିଆ ଅଧାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡଃ କରୁଣାକର କର, ଓଡ଼ିଆ ଅଧାପକ ଡଃ ବଂଶୀଧର ମହାନ୍ତି ପ୍ରଭୃତିଙ୍କ ସସ୍ନେହ ସଂସ୍ପର୍ଶରେ ଆସନ୍ତି । ପ୍ରାଚୀନ ସାହିତ୍ୟ ଚର୍ଚ୍ଚା ଓ ପୋଥି ସଂପାଦନା ପ୍ରତି ତାଙ୍କର ନିଷ୍ଠା ଜାଗେ; ଅନ୍ୟ ପକ୍ଷରେ ଇଂରାଜୀ ସାହିତ୍ୟ-



Digitized by srujanika@gmail.com

ସମୀକ୍ଷା ପଦ୍ଧତି ପ୍ରୟୋଗରେ ସେ ଦକ୍ଷ ହୋଇ ଯାଆନ୍ତି । ସମସ୍ତଙ୍କର ଆଶା ଓ ଆଶିଷ : ''କୃଷ୍ଣ ଦିନେ ଭାରତୀୟ ବିଦ୍ୱାନ୍ ଗବେଷକ ମଣ୍ଡଳୀରେ ଶୀର୍ଷ ସୋପାନ ଆରୋହଣ କରିବ ।''

୧୯୫୨ରେ ଏମ୍.ଏ. (ଓଡ଼ିଆ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ କାଦୁଅପଡ଼ାର ଗାଦିବ୍ରହ୍ମ ବିଦ୍ୟାପୀଠରେ ଅଳ୍ପକାଳ ଶିକ୍ଷାଦାନ କରି ରାଞ୍ଚି ମହାବିଦ୍ୟାଳୟରେ ସେହି ବର୍ଷ ଡିସେମ୍ବର ୧୮ ତାରିଖରେ ଅଧ୍ୟାପକ ଭାବରେ ଯୋଗ ଦିଅନ୍ତି । ୧୯୬୪ ଜୁଲାଇ ପର୍ଯ୍ୟନ୍ତ ଏହି ମହାବିଦ୍ୟାଳୟରେ, ୧୯୬୪ଜୁଲାଇରୁ ୧୯୬୬ସେପ୍ଟମ୍ବର ପର୍ଯ୍ୟନ୍ତ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ, ସେହି ସମୟଠାରୁ ପୁନଶ୍ଚ ୧୯୭୧ ଜୁଲାଇ ପର୍ଯ୍ୟନ୍ତ ରାଞ୍ଚି ମହାବିଦ୍ୟାଳୟରେ ଓ ତାପରେ ୧୯୮୯ ମେ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କାଳରେ ଅଧ୍ୟାପନାରୁ ଅନ୍ୟାନ୍ୟ ବିଭିନ୍ନ ଦାୟିତ୍ୱ ବହନ କରି ସେ ଜୀବନର ପ୍ରକୃତ ସଂଜ୍ଞାକୁ ଚରିତାର୍ଥ କରିଛନ୍ତି । ୧୯୮୪ରେ ତାଙ୍କର ପ୍ରଫେସର ଓ ବିଭାଗମୁଖ୍ୟ ପଦବୀମଣ୍ଡନ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ପାଇଁ ଏକ ଗୌରବାଢ଼୍ୟ ଅଧ୍ୟାୟ ଉନ୍ମୋଚନ କରିଥିଲା ।

ରାଞ୍ଚି ରହଣି କାଳରେ ସେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ରାମାୟଣ, ଆଞ୍ଚଳିକ ରାମକଥା ଓ ଭାରତ ବାହାରେ ରାମ-ଉପାସନା ଏବଂ ରାମାୟଣ ବ୍ୟାପ୍ତି ସଂପର୍କରେ ଅସାମାନ୍ୟ ବ୍ୟୁତ୍ପତ୍ତି ଅର୍ଜନ କରିଥିବା ବୟୋବୃଦ୍ଧ ବେଲ୍‌ଜିୟାନ୍ ବିଦ୍ୱାନ ଫାଦର୍ ବୁଲ୍‌କେଙ୍କ ସପ୍ରେମ ସାନ୍ନିଧ ଲାଭ କରନ୍ତି । ତାଙ୍କର ବିଶାଳ ଗ୍ରନ୍ଥାଗାରରେ ସ୍ୱତନ୍ତ୍ର ଆସନଟିଏ ପାଆନ୍ତି, ରାମକଥା ସଂପର୍କରେ ଗଭୀର ଓ ବ୍ୟାପକ ଜ୍ଞାନ ଅର୍ଜନ କରିଛନ୍ତି । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ ରାମ ସାହିତ୍ୟ' (Oriya Rama Literature) ବିଷୟରେ ଗବେଷଣା କରୁଥିଲେ ହେଁ ବୁଲ୍‌କେ ସାହବଙ୍କର ପ୍ରତ୍ୟକ୍ଷ ଓ ଦକ୍ଷ ଦିଗ୍‌ଦର୍ଶନ ଲାଭ କରି ତାଙ୍କରି ସାହାଯ୍ୟ, ପ୍ରେରଣା, ସଦିଚ୍ଛାରୁ କାର୍ଯ୍ୟଟି ସଂପୂର୍ଣ୍ଣ କରନ୍ତି । ଅଧ୍ୟାପକ କୃଷ୍ଣଚରଣ ସାହୁଙ୍କ ପ୍ରତି ଉତ୍ସଳ ବୁଲ୍‌କେଙ୍କର ଅନାବିଳ ଓ ନିବିଡ଼ ପ୍ରୀତିରେ ସଜଳ ଏକ ସ୍ମୃତିସମୃଦ୍ଧ ଘଟଣା ଏଇଠି ବଢ଼ାଯାଇପାରେ । - ଏକ ଦୁର୍ଘଟଣାରେ ଆହତ ହୋଇ ଫାଦର୍ ବୁଲ୍‌କେ ଶଯ୍ୟାଶାୟୀ ଅବସ୍ଥାରେ ଚିକିତ୍ସିତ ହେଉଥାଆନ୍ତି । ତାଙ୍କୁ ଦର୍ଶନ କରିବାକୁ ଯାଇ ପୁତ୍ରୋପମ କୃଷ୍ଣଚରଣ ତାଙ୍କର ପଦ ସ୍ପର୍ଶ କରି ଅଶ୍ରୁଳ ନୟନରେ ଦୁଃଖାଭିଭୂତ । ପ୍ରକୃତ ଅର୍ଥରେ ଫାଦର / ପିତା ବୁଲ୍‌କେ କୃଷ୍ଣଙ୍କୁ ଆଉଁଷି ଦେଇ କହନ୍ତି - ''କୃଷ୍ଣରେ ! ତୋ କାର୍ଯ୍ୟ ଶେଷ ନ ହେବା ପର୍ଯ୍ୟନ୍ତ ମୋର ମରଣ କାହିଁ ?'' ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦେବା ପାଇଁ ରାଞ୍ଚି ଛାଡ଼ିବା ବେଳେ ଜ୍ଞାନଦାତା ପିତା ବୁଲ୍‌କେ ମାନସ-ସନ୍ତାନ କୃଷ୍ଣଙ୍କୁ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କରି କହନ୍ତି - 'ଯା' କୃଷ୍ଣ ! ଶୁଭରେ ଯାଆ ; ତୋ ଚଲା ପଥରେ କୁସୁମ ବରଷୁ ।'' ସେଇଠି ଫାଦର ବୁଲ୍‌କେ ପିତା ନନ୍ଦରାମ, ଆଉ କୃଷ୍ଣ ହେଉଛନ୍ତି ସ୍ୱୟଂ କୃଷ୍ଣ ।

ରାଞ୍ଚି ମହାବିଦ୍ୟାଳୟରେ ସେ ଅଧକ୍ଷ ଭାବରେ ଫେରି ପାଆନ୍ତି ପରମ ଶୁଭାନୁଧ୍ୟାୟୀ ଗୁରୁ ପ୍ରଫେସର୍ ବିଧୁଭୂଷଣ ଦାସଙ୍କୁ । ପ୍ରଫେସର ଦାସ ଶିଷ୍ୟ କୃଷ୍ଣଙ୍କୁ ତାଙ୍କର ଅସାଧାରଣ ଜ୍ଞାନ ପିପାସା, ବିଦ୍‌ବତ୍ତା, ସରଳତା, ନମ୍ରତା ଓ ଗୁରୁଭକ୍ତି ପାଇଁ କେଡ଼େ ଅନ୍ତରଙ୍ଗ ଭାବରେ ଭଲ ପାଆନ୍ତି, ପ୍ରତ୍ୟକ୍ଷ ଅନୁଭବୀ ବିନା ଅନ୍ୟ କେହି ଏକ ଶତାଂଶ ବି ଆକଳନ କରି ପାରିବ ନାହିଁ । ଏଇତ ସେଦିନ ଶିଷ୍ୟ



Digitized by srujanika@gmail.com

ମୁମୂର୍ଷ କୃଷ୍ଣଙ୍କୁ ଦେଖିବାକୁ ଯାଇଥିଲାବେଳେ ଧ୍ୟାନ ମୁଦ୍ରାରେ ଭଗବତ୍ ନାମ ସ୍ମରଣ କରି ଶୁଭ ମନାସୁଥାଆନ୍ତି ପ୍ରଫେସର ଦାସ ଆଉ ଶିଷ୍ୟ ଯୋଡ଼ହସ୍ତକୁ ଶେଷ ପର୍ଯ୍ୟନ୍ତ ଉତ୍ତୋଳିତ ରଖି ନମସ୍କାର ଜଣାଉଥାଆନ୍ତି । ରାଜ୍ୟରେ ଆଦର୍ଶ ଅଧ୍ୟାପକ ଓ ପରୀକ୍ଷା ପରିଚାଳକ ଭାବରେ କୃଷ୍ଣ ଚରଣ ସୁନାମ ଅର୍ଜନ କରିବା ମୂଳରେ ରହିଛି ଏହି ଗୁରୁଙ୍କର ଅନାବିଳ ଶ୍ରଦ୍ଧା ଓ ଶୁଭେଚ୍ଛା ।

ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ସେ ଅଧ୍ୟାପନାକୁ ଅର୍ଥ-ଉପାର୍ଜନରେ ଏକ ଗତାନୁଗତିକ ବୃତ୍ତି ଭାବରେ ନୁହେଁ, ଏକ ପବିତ୍ର ପ୍ରବୃତ୍ତି ଭାବରେ ଗ୍ରହଣ କରିଥିଲେ । ଯେକୌଣସି ସ୍ଥାନରେ, ଯେ କୌଣସି ସମୟରେ ସେ ବିଦ୍ୟାର୍ଥୀକୁ ବିଦ୍ୟାଦନା ପାଇଁ ପ୍ରସ୍ତୁତ କରି ରଖିଥିଲେ । ବିଭାଗର କଟାଉଥିଲେ ଅନ୍ୟୁନ ବାରଘଣ୍ଟା । ବାସ୍ତବତଃ ବିଭାଗ ହିଁ ଥିଲା ତାଙ୍କର ଗୃହ, ଛାତ୍ରଛାତ୍ରୀ, ଅଧ୍ୟାପକ ଅଧ୍ୟାପିକାଙ୍କୁ ନେଇ ସେ ଗଢ଼ିଥିଲେ ଏକ ଆଦର୍ଶ ପରିବାର । ଥରେ ସ୍ୱାଗତ ଭାଷଣରେ ଛାତ୍ରଛାତ୍ରୀମାନଙ୍କୁ ସେ କହିଥିଲେ "ଏ ବିଭାଗ ତୁମ ପାଇଁ ଏକ ପ୍ରାଣପ୍ରାଚୁର୍ଯପୂର୍ଣ୍ଣ ପରିବାର, ଏଇଠି ରହିଛି ପରସ୍ପର ପ୍ରତି ନିରନ୍ତର ଆନ୍ତରିକ ସ୍ନେହ, ତେଣୁ ଏହା ତୁମ ପାଇଁ ଏକ ବୈକୁଣ୍ଠ ଭୁବନ ।"

ତାଙ୍କର ଆଦର୍ଶ ଅଧ୍ୟାପନାରେ ଏ ବିଭାଗର ପରୀକ୍ଷାଫଳ ସର୍ବଦା ରହିଥିଲା ସର୍ବୋଚ୍ଚ ସ୍ଥାନୀୟ ।

ଅଧ୍ୟାପନା ପରି ଗବେଷଣା ଓ ଗବେଷଣା-ଦିଗ୍‌ଦର୍ଶନ ଥିଲା ତାଙ୍କର ତପସ୍ୟା ତାଙ୍କ ତତ୍ତ୍ୱାବଧାନରେ ପ୍ରାଚୀନ, ମଧ୍ୟଯୁଗୀୟ ଓ ଆଧୁନିକ ସାହିତ୍ୟର ବିଭିନ୍ନ ବିଭାଗ ଉପରେ, ଲୋକଧାରା ଓ ଭାଷାତତ୍ତ୍ୱ ସଂପର୍କରେ ଅର୍ଦ୍ଧଶତାଧିକ ଗବେଷକ-ଗବେଷିକା ପିଏଚ୍.ଡ଼ି/ଡି.ଲିଟ୍ ଉପାଧିଲାଭ କରିଛନ୍ତି ।

ବିଭିନ୍ନ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କ ଉପରେ ଯେତେ ଗୁରୁ ଦାୟିତ୍ୱ ନ୍ୟସ୍ତ କରିଛନ୍ତି । ସେ ସବୁକୁ ସେ ନିଷ୍ଠା, ଅନ୍ତରଙ୍ଗତା, ସାଧୁତା, ଦୃଢ଼ତା ଓ ସାହସିକତାର ସହିତ ସଂପନ୍ନ କରିଛନ୍ତି ।

ସର୍ବୋପରି ସେ ଯେଉଁଥିପାଇଁ ଅମର ହୋଇ ରହିବେ, ତାହା ହେଉଛି ତାଙ୍କର ଜୀବନ ବ୍ୟାପୀ ନିରବଚ୍ଛିନ୍ନ ନିରଳସ ସାହିତ୍ୟ ସାଧନା । ତାଙ୍କର ସାରସ୍ୱତ ଶାଶ୍ୱତ ପ୍ରତିଭା ଉପରେ ବହୁ ଗବେଷଣାତ୍ମକ ମହାନିବନ୍ଧ (Thesis) ପ୍ରସ୍ତୁତ କରାଯାଇପାରେ । ଏଠାରେ ସଂକ୍ଷେପରେ ତାହାର ଏକ ସାରଣୀ ଉପସ୍ଥାପିତ କରାଯାଇପାରେ । ଯଥା:-

ବିଷୟ : Literature and Social Life in Medieval Orissa, କହେ କୃଷ୍ଣ ଦାସ କବି, ପ୍ରାଚୀନ ସାହିତ୍ୟ, ମଧ୍ୟକାଳୀନ ସାହିତ୍ୟ, କବି ବଳରାମ ଦାସ ।

ସାପାଦନା ଓ ସମୀକ୍ଷା - ମହାଦେବ ଦାସଙ୍କ ଧର୍ମଗୀତା, ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ରୁଦ୍ର ସୁଧାନିଧି, ସାରଳା ଦାସଙ୍କ ମହାଭାରତ (ଆଦିପର୍ବ ଓ ସ୍ୱର୍ଗାରୋହଣ ପର୍ବ, ଚଣ୍ଡୀପୁରାଣ, ବଳରାମ ଦାସଙ୍କ ଉଦ୍ଧବଗୀତା, ଶ୍ରୀମଦ୍ ଭାଗବଦ୍ ଗୀତା, ବ୍ରହ୍ମାଣ୍ଡ ଭୂଗୋଳ, ଜଗମୋହନ ରାମାୟଣ, ପ୍ରଥମ ଓ ଦ୍ୱିତୀୟ କାଣ୍ଡ), ଜଗନ୍ନାଥ ଦାସଙ୍କ ରାସ ପଞ୍ଚାଧ୍ୟାୟୀ, ଶ୍ରୀମଦ୍ ଭାଗବତ (ଅପ୍ରକାଶିତ), ଅଚ୍ୟୁତାନନ୍ଦ ଦାସଙ୍କ ଚାରିଖାନି, ହରିବଂଶ, ଯଶୋବନ୍ତ ଦାସଙ୍କ ଗୋବିନ୍ଦ ଚନ୍ଦ୍ର, ନରସିଂହ ସେଣଙ୍କ ପରିମଳା ଇତ୍ୟାଦି ।



Digitized by srujanika@gmail.com

ସର୍ଜନଶୀଳ ପ୍ରତିଭା - ପୋଥିପ୍ରିୟା (କବିତା), ନୀଳକମଳ (ଉପନ୍ୟାସ), ରଙ୍ଗବତୀର (ଅପ୍ରକାଶିତଉପନ୍ୟାସ), କାରାଗାର (ନାଟକ), ସଂକଳନ, ସଂପାଦନା ଓ ସମୀକ୍ଷା ପ୍ରାଚୀନ କାବ୍ୟଧାରା, ଜଗନ୍ନାଥ ଲୀଳାମୃତ ଇତ୍ୟାଦି

ଏହା ଛଡ଼ା ବିଭିନ୍ନ ଇଂରାଜୀ, ହିନ୍ଦୀ ଓ ଓଡ଼ିଆ ଗବେଷଣାତ୍ମକ ପତ୍ରିକାରେ ତାଙ୍କର ପ୍ରାୟ ଦୁଇଶହ ଉଚ୍ଚ କୋଟୀର ନିବନ୍ଧ ପ୍ରକାଶ ପାଇଛି । ପ୍ରାଚୀନ ସାହିତ୍ୟର ପ୍ରୟୋଗାତ୍ମକ ଆଲୋଚନା ପାଇଁ ସେ 'ପ୍ରାଚୀନ' ନାମକ ପତ୍ରିକା ସଂପାଦନା କରୁଥିଲେ । ଆଧୁନିକ ସାହିତ୍ୟର ନିରପେକ୍ଷ ଆଲୋଚନା ପାଇଁ କିଛି କାଳ ଆତ୍ମପ୍ରକାଶ କରିଥିବା 'ପ୍ରଜ୍ଞା'ର ସଂପାଦକ ମଣ୍ଡଳୀରେ ସେ ଅନ୍ତର୍ଭୁକ୍ତ ଥିଲେ ।

ସବୁରି ଊର୍ଦ୍ଧ୍ୱରେ କୃଷ୍ଣଚରଣ ଥିଲେ ମଣିଷ ପରି ମଣିଷଟିଏ ଉଦାରତାର, ନିଷ୍କପଟତାର, ସାହାଯ୍ୟ ଓ ସହାନୁଭୂତିର, ମହାନୁଭବତାର ମହାନ୍ ମଣିଷଟିଏ, ଯୋଉଥିପାଇଁ ତାଙ୍କର ଆତ୍ମୀୟସ୍ୱଜନଙ୍କ ଛଡ଼ା ଆଜି ଶୋକାଭିଭୂତ ହୋଇ ଯାଉଛନ୍ତି ତାଙ୍କର ବନ୍ଧୁ । ଗୁରୁ, ଗୁରୁଜନ, ଛାତ୍ର, କନିଷ୍ଠଜନ ଓ ଅଗଣିତ ଓଡ଼ିଆ ଭାଷା-ସାହିତ୍ୟର ଅନୁରାଗୀ ସୁଧୀବୃନ୍ଦ । ସଭିଏଁ ଯେମିତି ହୋଇଯାଇଛନ୍ତି ଅରକ୍ଷିତ ।

ସେ ହିଁ ପ୍ରକୃତ ଅମୃତ ସନ୍ତାନ ଯେ ଜନ୍ମବେଳେ  କାନ୍ଦେ ଆଉ ତାର ପ୍ରିୟ, ପରିଜନ, ପରିବେଶୀ, ପ୍ରତିବେଶୀ ଆନନ୍ଦିତ ହେଉଥାନ୍ତି, ଅପର ପକ୍ଷରେ ଯେ ମୃତ୍ୟୁବେଳେ ହସି ହସି ମହାଭୂତରେ ମିଶିଯାଏ, ଅଥଚ ଯାହାଙ୍କ ସହିତ ସେ ମିଶିଥିଲା, ସେମାନେ ଅଶ୍ରୁ ଅଜାଡ଼ି ବିଳପୁଥାଆନ୍ତି ।

'ଜୀବନ'ର ପ୍ରକୃଷ୍ଟ ସଂଜ୍ଞା 'କର୍ମ' । ଯାହାବଳରେ "In small proportion we just beauties see," and "In small measure life may perfect be" ଜୀବନ ତ ବର୍ଷ, ମାସ, ଦିନ, ଦଣ୍ଡ ନୁହେଁ । ସେ ତ ମହାକାଳର ଇଙ୍ଗିତ, ଚକ୍ର ଓ କର୍ମ । ଡକ୍ଟର କୃଷ୍ଣଚରଣ ସାହୁ ମହାଭୂତର ଧାରଣଠାରୁ ଆରମ୍ଭ କରି 'ମହାଭୂତ'ରେ ସମୀକରଣ ପର୍ଯ୍ୟନ୍ତ କେବଳ କଥାଯାଇଛନ୍ତି କର୍ମ...କର୍ମ...କର୍ମ । ତେଣୁ ସେ ଜନ୍ମ-ମୃତ୍ୟୁରୁ ମୁକ୍ତ ଏକ ଅମୃତ ଚେତନା, ଯାହାର ଆଦି ନାହିଁ କି ଅନ୍ତ ନାହିଁ ।

❒ *ସ୍ନାତକୋତ୍ତର ଓଡ଼ିଆ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ବ୍ୟକ୍ତି ଓ ବ୍ୟକ୍ତିତ୍ୱ

ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ଡକ୍ଟର କୃଷ୍ଣଚରଣ ସାହୁ ଆମ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ୧୯୭୧ରୁ ୧୯୮୯ ପ୍ରାୟ ଅଠର ବର୍ଷକାଳ ଅଧ୍ୟାପନା କରିଥିଲେ । ସେତେବେଳେ ବିଭାଗ ଖୁବ୍ ଛୋଟଥିଲା । ମାତ୍ର ୩ ଜଣଥିଲେ ଅଧ୍ୟାପକ ଓ ଛାତ୍ରସଂଖ୍ୟା ୧୬+୧୬ = ୩୨ ମାତ୍ର । ଡକ୍ଟର ବଂଶୀଧର ମହାନ୍ତି ପ୍ରଫେସର ଭାବେ ୧୯୭୧ରେ ଯୋଗଦେଲେ ଓ ଡକ୍ଟର ସାହୁ ରିଡ଼ର ଭାବେ । ଉଭୟ ଥିଲେ ପ୍ରାଚୀନ ସାହିତ୍ୟର ଗବେଷକ । ବିଶେଷତଃ ସାରଳା ସାହିତ୍ୟ ଉପରେ ବଂଶୀବାବୁ ଗବେଷଣା କରୁଥିବାବେଳେ ଡକ୍ଟର ସାହୁ ବଳରାମଦାସଙ୍କର ରାମାୟଣକୁ ତାଙ୍କ ଗବେଷଣାର ଲକ୍ଷ୍ୟ ଭାବେ ଗ୍ରହଣ କରିନେଇଥିଲେ । ଉଭୟଙ୍କ ପ୍ରକୋଷ୍ଠରେ ପ୍ରାଚୀନ ପୋଥି ଜମା ହୋଇ ରହୁଥିଲା । କିଛି ପ୍ରତିଯୋଗିତା ଥିଲା ଉଭୟଙ୍କ ଭିତରେ ଏଇ ପୋଥି ସଂପାଦନାକୁ ନେଇ । ଆମେମାନେ ଏ ପରସ୍ଥିତିକୁ ବେଶ୍ ଉପଭୋଗ କରୁଥିଲୁ । ଡକ୍ଟର ସାହୁ କ୍ରମେ ତାଙ୍କ ଗବେଷଣାର ଦିଗନ୍ତକୁ ସଂପ୍ରସାରିତ କରି ବସିଲେ ଓ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ମଧ ମାଡ଼ିଗଲେ । ଅବଶ୍ୟ ଏ ବିଶ୍ୱବିଦ୍ୟାଳୟରେ ଗବେଷଣାର କୌଣସି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନଥାଏ । ନଚେତ୍ ପ୍ରାଚୀନ ସାହିତ୍ୟ ଉପରେ କେବଳ ଗବେଷଣା କରିଥିବା କୌଣସି ଅଧ୍ୟାପକ ଆଧୁନିକ ଓ ଅତ୍ୟାଧୁନିକ ବିଷୟରେ କିପରି ଦିଗ୍‌ଦର୍ଶନ ଦେବାକୁ ସ୍ୱୀକୃତି ପାଆନ୍ତେ । ଡକ୍ଟର ସାହୁଙ୍କ ପାଖରେ ଗବେଷଣା ପାଇଁ ଏତେ ଭିଡ଼ ହେବାର ବଡ଼ କାରଣଥିଲା ତାଙ୍କ ବ୍ୟକ୍ତିତ୍ୱ ଓ ଅମାୟିକତା । ଛାତ୍ରମାନଙ୍କୁ ସେ ଖୁବ୍ ଭଲ ପାଉଥିଲେ ଓ ସେମାନଙ୍କ ପାଇଁ ବିଶେଷ ସମୟ ମଧ ଦେଇ ପାରୁଥିଲେ । ଏପରିକି ତାଙ୍କ ନିଜ ପରିବାରରେ ତାଙ୍କର ଏ ବ୍ୟକ୍ତିଗତ ଦୁଃଖ ଥିଲେ ବି ସେ ଛାତ୍ରଛାତ୍ରୀଙ୍କ ପାଇଁ ପ୍ରାୟ ସବୁ କୋଠାରୀ ଖୋଲି ନେଉଥିଲେ । ବିଭାଗରେ ସେହିଁ ସମସ୍ତଙ୍କଠାରୁ ଅଧିକ ସମୟ ବସି ରହୁଥିଲେ ଓ ଅଧିକାଂଶ ସମୟରେ ପୋଥି ଖେଳଉଥିଲେ । ପିଲାମାନଙ୍କ ଉପରେ କିମ୍ୱା ସହକର୍ମୀଙ୍କ ଉପରେ ସେ କେବେ ରାଗିବାର ମୁଁ ଦେଖିନାହିଁ । ଅବଶ୍ୟ ସେ ପ୍ରାଚୀନ ସାହିତ୍ୟ ଓ ମୁଁ ଆଧୁନିକ ସାହିତ୍ୟ ବିଷୟରେ ଗବେଷଣା ଓ ଅଧ୍ୟାପନା କରୁଥିବାରୁ ଆମ ଦୁହିଁଙ୍କର କେବେ କୌଣସି ବିଷୟରେ ଯୁକ୍ତିତର୍କ ବା ମୁକାବିଲା ହେବାର ଅବକାଶ ନଥିଲା । ସେ ଏତେ ଆନ୍ତରିକତା ଦେଖାଇ ପାରୁଥିଲେ ଓ ହସିହସି କଥା କହୁଥିଲେ ଯେ ସେଥିରେ ଯେକୌଣସି ସହକର୍ମୀ ବଶୀଭୂତ ହୋଇଯିବା କଥା । ଆମେଥରେ ଗବେଷଣାର ମାନ ପ୍ରସଙ୍ଗରେ ଆଲୋଚନା କରୁଥିଲୁ । ତାଙ୍କର ମତଥିଲା ଯେତେ ପାରୁଛନ୍ତି ପିଏଚ୍.ଡି.ଓ ଡ଼ି.ଲିଟ୍. ପାଇଯା'ନ୍ତୁ । ଯଦି ତହିଁରେ କିଛି ମୂଲ୍ୟବୋଧଥିବ ତାହା ଆପଣା ମୂଲ୍ୟରେ ପ୍ରତିଷ୍ଠିତ ହେବ । ମୁଁ କିନ୍ତୁ କହୁଥିଲି ଏ ପ୍ରବାହରେ ଭଲ ଓ ମନ୍ଦ ସବୁ ମିଶିମାଶି ଯାଉଛି । ଭଲ ନିଜକୁ ସାବ୍ୟସ୍ତ କରବା ପୂର୍ବରୁ ମନ୍ଦର ଆଧିକ୍ୟତା ସ୍ଥାନ ମାଡ଼ି ବସୁଛି ।



Digitized by srujanika@gmail.com

ଅମେ ଏଥିରେ କିଛି କଟକଣା ରଖିବା ଓ ଲଗାମ୍ ଦେବା । କିନ୍ତୁ ସେ ଏଠାରୁ ଅବସର ନେଲାବେଳକୁ ବହୁସଂଖ୍ୟାରେ ଛାତ୍ର ଛାତ୍ରୀ ତାଙ୍କ ପାଖରେ ଡିଗ୍ରୀ ପାଇ ସାରିଥିଲେ ଓ ତାହା ଏକ ବିରାଟ ପରିବାର ପରି ମନେ ହେଉଥିଲା ।

ଡକ୍ଟର ସାହୁଥିଲେ ଏକାନ୍ତ ବନ୍ଧୁବତ୍ସଳ । ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ ଯେଉଁ ପାଞ୍ଚ ଛ'ଜଣ ବନ୍ଧୁ ଏକାଠି ହୋଇଥିଲେ ସେମାନଙ୍କ ସହିତ ଆଜୀବନ ଡକ୍ଟର ସାହୁଙ୍କ ବନ୍ଧୁତା ଓ ପାରିବାରିକ ସଂପର୍କ ଅକ୍ଷୁର୍ଣ୍ଣଥିଲା । ଯେ କୌଣସି ଲୋକ ଈର୍ଷା କରିବା କଥା କିପରି ସେମାନେ ବିଭିନ୍ନ ବିଭାଗର ହୋଇ ବି ଏକାଠି ମନର ମେଳରଖି ଏ ଯାଏ ରହି ପାରିଥିଲେ ତାହା ଓଡ଼ିଶାରେ ଖୁବ୍ ବେଶୀ ଏକ ଆଲୋଚିତ ପ୍ରସଙ୍ଗ ହୋଇ ଏକ ରହିଛି ଓ ରହିବ ମଧ । ଜଣେ ଇଂରାଜୀ ବିଭାଗର, ଜଣେ ଇତିହାସର, ଜଣେ ଭୂଗୋଳର, ଜଣେ ପଦାର୍ଥ ବିଦ୍ୟାର ଓ ଆଉଜଣେ ଓଡ଼ିଆ ଭାଷାବିତ୍ । ଏ ପାଞ୍ଚ ଜଣଙ୍କ ସହିତ ଡଃ ସାହୁଙ୍କର ବନ୍ଧୁତା ଥିଲା ନିଷ୍କପଟ ଓ ପାରସ୍ପରିକ ଆଦାନ ପ୍ରଦାନ ସୂତ୍ରରେ ଖୁବ୍ ଅନ୍ତରଙ୍ଗ । ଏମାନେ ସଭାସମିତିରେ, ସେମିନାରରେ, ବିଶ୍ୱବିଦ୍ୟାଳୟ ପ୍ରଶାସନରେ ସମସ୍ୟା ସମାଧାନରେ ପ୍ରାୟ ଏକମତ ରହୁଥିଲେ । ଡକ୍ଟର ସାହୁ ବେଳେବେଳେ ବହୁ ଅଟ୍ଟା ଟାପରାର ଶରବ୍ୟ ହେଉଥିଲେ ତାଙ୍କ ବନ୍ଧୁମାନଙ୍କଦ୍ୱାରା କିନ୍ତୁ ନିଜେ କାହାକୁ ଆଘାତ ଦେଇ କଥା କହୁନଥିଲେ । ଏହା ତାଙ୍କ ନରମା ବ୍ୟକ୍ତିତ୍ୱର ପରିଚୟ ନଥିଲା ବରଂ ଥିଲା ତାଙ୍କ ବ୍ୟକ୍ତିତ୍ୱର ବିଶୁଦ୍ଧ ଉଦାରତା । ଏମାନଙ୍କ ନମସ୍ୟ ଗୁରୁଦେବ ପ୍ରଫେସର ବିଧୁଭୂଷଣ ଦାସ ବୋଧହୁଏ ଏ ବନ୍ଧୁତା ଯୋଗସୂତ୍ର ହେବେ । କାରଣ ମୁଁ ଲକ୍ଷ୍ୟ କରିଛି ଡକ୍ଟର ସାହୁଙ୍କର ଯେଉଁ ପ୍ରଫେସରମାନଙ୍କ ସହିତ ଅନ୍ତରଙ୍ଗ ଆଳାପଥିଲା ସେମାନଙ୍କ ମଧ୍ୟରେ ପ୍ରଫେସର ବିଧୁଭୂଷଣଦାସ ତାଙ୍କ ମନ ଓ ହୃଦୟରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲେ । କେହି କେହି ଛିଦ୍ରାନ୍ୱେଷୀ ଏମାନଙ୍କ ବନ୍ଧୁତାକୁ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ ନିଶ୍ଚୟ କାରଣ ଏମାନଙ୍କ ମଧ୍ୟରେ ଜଣେ ଦି' ଜଣ ଯେ ଏକାନ୍ତ ଅନୁଦାର ଓ ଏକଦେଶଦର୍ଶୀ ବ୍ୟକ୍ତି ନଥିଲେ, କହି ହେବନି । କିନ୍ତୁ ବନ୍ଧୁମାନଙ୍କ ମଧ ପ୍ରଫେସର କୃଷ୍ଣଚରଣ ସାହୁଙ୍କ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଥିଲା । ପାରିବାରିକ ଦୁଃଖ ଓ ଝଂଝାଳ ଭିତରେ ଏପରି ଜଣେ ସମାଧିସ୍ଥ ମଣିଷ ଆମ ସମାଜରେ ନିଶ୍ଚୟ ବିରଳ । ତାଙ୍କ ଚେହେରା, ଶୁଭ୍ର କେଶ, ଧାରେ ଧଳା ନିଶ ସବୁ ଯେପରି ତାଙ୍କୁ ଜଣେ ଜ୍ଞାନବୃଦ୍ଧ ସ୍ଥିତଧୀ ବ୍ୟକ୍ତିତ୍ୱର ସ୍ପର୍ଶ ଦେଉଥିଲା । ଓଡ଼ିଶା ସାହିତ୍ୟ ପାଇଁ ସମସ୍ତ ଅବଦାନ ମଧ୍ୟରେ ତାଙ୍କ ଜଗମୋହନ ରାମାୟଣର ଶୁଦ୍ଧ ସଂସ୍କରଣ ନିଶ୍ଚୟ ଏ ଜାତି ପାଇଁ ଏକ ଅମୂଲ୍ୟ ସଂପଦଭାବେ ବିବେଚିତ ହେବ ଓ ଆର୍ତ୍ତବଲ୍ଲଭଙ୍କ ମହାଭାରତର ଶୁଦ୍ଧ ସଂସ୍କରଣ ପରେ ରାମାୟଣର ଏହି ଶୁଦ୍ଧ ସଂସ୍କରଣ ପ୍ରତି ଓଡ଼ିଶାମାନଙ୍କର ଦୃଷ୍ଟି ଆକର୍ଷଣ କରିବ - ଏଥିରେ ସନ୍ଦେହ ନାହିଁ । ତାଙ୍କ ସାରସ୍ୱତ ଆତ୍ମା ନିଶ୍ଚୟ ଶାନ୍ତିରେ ରହିବ ଏ ବିଶ୍ୱାସ ମୋର ଅଛି ।

❐ *ସ୍ନାତକୋତ୍ତର, ଓଡ଼ିଆ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ପ୍ରଫେସର କୃଷ୍ଣ ଚରଣ ସାହୁ ସ୍ମରଣେ

ପ୍ରଫେସର ଆଶୁତୋଷ ପଟ୍ଟନାୟକ

"ପରିବର୍ତ୍ତିନୀ ସଂସାରେ ମୃତଃ କୋ ବା ନ ଯାୟତେ
ସ ଜାତୋ ଯେନ ଜାତେନ ଜାତିବଂଶ ସମୁନ୍ନତଂ"

ସ୍ୱର୍ଗତ ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁ ସେହିଭଳି ଏକ ବ୍ୟକ୍ତିତ୍ୱ ଯାହାଙ୍କ ଯୋଗେ ଓଡ଼ିଆ ଜାତି ଭାଷା ଓ ସାହିତ୍ୟ ଗୌରବାନ୍ୱିତ । ବଡ଼ ସାଧାସିଧା ମଣିଷଟିଏ, ଅତ୍ୟନ୍ତ ସ୍ନେହୀ ଉଦାର, ଧର୍ମ ପରାୟଣ ଓ ପରୋପକାରୀ, ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ପୁନରୁଦ୍ଧାର ତାଙ୍କ ଜୀବନର ଏକ ବ୍ରତ ଥିଲା, ଆଧୁନିକ ସାହିତ୍ୟର ଅନ୍ଧ ଅନୁକାରୀ ପ୍ରାଚୀନ ସାହିତ୍ୟ ପ୍ରତି ନାସିକା କୁଞ୍ଚନ କଲାବେଳେ ସେ ସେଥିପ୍ରତି ଭ୍ରୁକ୍ଷେପ କରିନାହାନ୍ତି । ପ୍ରାତଃ ସ୍ମରଣୀୟ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ସୁଯୋଗ୍ୟ ଶିଷ୍ୟ ରୂପେ ଉତ୍ସର୍ଗୀକୃତ ମନୋଭାବ ନେଇ ସେ ପ୍ରାଚୀନ ସାହିତ୍ୟ ସମୁଦ୍ର ମନ୍ଥନ କରି ରତ୍ନ ଉଦ୍ଧାରରେ ସତତ ଚେଷ୍ଟିତ ଥିଲେ । ୧୯୭୪ ଖ୍ରୀଷ୍ଟାବ୍ଦରେ ଗବେଷଣା ପାଇଁ ମୁଁ ବାଣୀବୀହାର ଓଡ଼ିଆ ବିଭାଗକୁ ଆସୁଥାଏ । ସ୍ୱର୍ଗତ ଡକ୍ଟର ବଂଶୀଧର ମହାନ୍ତିଙ୍କ ତତ୍ତ୍ୱାବଧାନରେ ମୁଁ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀରାଧା' ସମ୍ପର୍କରେ ଗବେଷଣା କାର୍ଯ୍ୟ କରୁଥାଏ । ଦିନେ ଡକ୍ଟର ସାହୁ କୌଣସି କାର୍ଯ୍ୟରେ ରାଜ୍ୟ ସଂଗ୍ରହାଳୟକୁ ଯାଇଥାଆନ୍ତି । ମୁଁ ପୁରୁଣା ପୋଥି ପଢ଼ି ତଥ୍ୟ ସଂଗ୍ରହ କରୁଥାଏ । ହଠାତ୍ ମୋ ପିଠିରେ ହାତମାରି ଶ୍ରଦ୍ଧାରେ କହିଥିଲେ, ମୁଁ ଭାବିଥିଲି ପ୍ରାଚୀନ ସାହିତ୍ୟ ଗବେଷଣା ପାଇଁ ପୋଥିପଢ଼ିବା ଲୋକ ବୋଧେ ଆଉ ଆସିବେ ନାହିଁ, ଯାହା ହେଉ ମୁଁ ଖୁସି ତମଦ୍ୱାରା ସେ କାମ ଆଗେଇଯିବ ।" ଏହାପରେ ମୋ ଖାତାରେ ସଂଗୃହୀତ ତଥ୍ୟକୁ ଦେଖିବାପାଇଁ ମାଗିନେଇ ୪ ଦିନପରେ ଫେରାଇଲାବେଳେ ଡକ୍ଟର ବଂଶୀଧର ମହାନ୍ତିଙ୍କ ସମ୍ମୁଖରେ କହିଥିଲେ "ସାର୍ ଏହି ବ୍ୟକ୍ତି ଜଣକ ଆମର ଉତ୍ତରାଧିକାରୀ ହୋଇପାରିବ " ଏବଂ ଆଶୀର୍ବାଦ କରିଥିଲେ । "ତମେ ଦିନେ ପ୍ରଫେସର ହୁଅ ।"

ଯେଉଁ ଆର୍ତ୍ତବଲ୍ଲଭ ଚେୟାର୍‌ରେ ପ୍ରଫେସର ପଦରେ ନିଯୁକ୍ତି ପାଇଛି ସେହି ପ୍ରଫେସର ପଦର ମନୋନୟନ ଦିନ ମଧ ରାତ୍ରିରେ (ପ୍ରାୟ ରାତି ୧୨ଟା) ବ୍ରହ୍ମପୁରରୁ ଡକ୍ଟର ସାହୁଙ୍କର ଫୋନ୍ ମୋ ପାଖକୁ ଆସିଲା । ଫୋନ୍‌ରେ ସେ ପଚାରିଥିଲେ ।" ଆଶୁ ତମେ ପ୍ରଫେସର ପଦ ପାଇଁ ମନୋନୀତ ହେଲ ତ ?" ମୁଁ ହଁ କଲାପରେ ବଡ଼ ଆଶ୍ୱସ୍ତ ହୋଇ କହିଥିଲେ "ଯା ହେଉ ଏଥର ଆର୍ତ୍ତବଲ୍ଲଭଙ୍କ ଭଳି କାମକର ।" ପ୍ରେମଚିନ୍ତାମଣି ଓ 'ଚାଚେରୀଲୀଳା' ଏଦୁଇଟି ଗ୍ରନ୍ଥର ଶବ୍ଦ ସମ୍ପାଦନାରେ ତମ କାର୍ଯ୍ୟ ନ ଅଟକି ଯେମିତି ଆଗେଇ ଚାଲେ ତାହା ତମକୁ ମୋର ନିର୍ଦ୍ଦେଶ ।" ସେ ଆଜି ନାହାନ୍ତି



Digitized by srujanika@gmail.com

ତାଙ୍କ ପିତୃସୁଲଭ ସ୍ନେହ ଓ ପରାମର୍ଶ ଆଜି ମୋ ଆଖିରେ ଲୁହ ଆଣୁଛି । ଅନେକ ସମୟରେ ଓଡ଼ିଆ ବିଭାଗରେ ମତେ ଥଟ୍ଟାରେ କହନ୍ତି,'' ତମର ଶକ୍ତି ଥାଇ ମଧ୍ୟ ପୋଥି ସମ୍ପାଦନା କାର୍ଯ୍ୟ କାହିଁକି କରୁନାହିଁ ପ୍ରାଚୀନ ଗ୍ରନ୍ଥର ଯେତେ ଉଦ୍ଧାର ହେବ ଲୋକେ ତାର ମହତ୍ତ୍ୱ ବୁଝିବେ ।'' ବାସ୍ତବରେ ସେ ହିଁ ଏ କାର୍ଯ୍ୟକୁ ନିଷ୍ଠାର ସହ କରି ଆମ ପାଇଁ ପ୍ରେରଣା ଦେଇ ଯାଇଛନ୍ତି ।

ମୁଁ ଆଧୁନିକ ସାହିତ୍ୟରେ ଡି.ଲିଟ୍. କରିବାକୁ ମନସ୍ଥ କରି ଦିନେ ଡକ୍ଟର ସାହୁଙ୍କୁ ଗୋଟିଏ ବିଷୟବସ୍ତୁ ବାଛିବାକୁ ଅନୁରୋଧ କରିବାକୁ ସେ ଟିକିଏ ହସି ସେଇ କହିଥିଲେ- ''କିହୋ ଆଧୁନିକ ସାହିତ୍ୟରେ ବହୁତ କାମ ହେଉଛି, ହେବ କିନ୍ତୁ ତମେ ଯଦି ପ୍ରାଚୀନ ଛାଡ଼ି ଆଧୁନିକ ପଛରେ ଧାଇଁବ ତେବେ ପ୍ରାଚୀନ ସାହିତ୍ୟରେ କିଏ କାମ କରିବ ?'' ତାଙ୍କରି ପରାମର୍ଶରେ ମୁଁ ଅଭିମନ୍ୟୁ ସାହିତ୍ୟରେ ବୈଷ୍ଣବୀୟ ଧର୍ମ ଦର୍ଶନକୁ ଗବେଷଣାର ବିଷୟବସ୍ତୁ କରିଥିଲି । ସେ ମୋତେ ବହୁତଥର କହିଛନ୍ତି ଅଭିମନ୍ୟୁ ସାହିତ୍ୟର ପ୍ରାୟୋଗିକ ଦିଗକୁ ସବୁଦୃଷ୍ଟିରୁ ଆଲୋଚନା କରିବ ।'' ତାଙ୍କ ଉପଦେଶକୁ ମୁଁ ଅକ୍ଷରେ ଅକ୍ଷରେ ମାନିଥିବାରୁ ବୈଷ୍ଣବ ସାହିତ୍ୟରେ ମୋର ଯଥାର୍ଥ ପ୍ରବେଶ ହୋଇଛି ତାହା ମୁଁ ଅନୁଭବ କରୁଛି । ଡକ୍ଟର ସାହୁଙ୍କ ନିଷ୍ଠାପର ଉଦ୍ୟମରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗରେ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟ ପାଇଁ ଏକ ପ୍ରଫେସର ପଦ ସୃଷ୍ଟି ହୋଇଛି । ଓଡ଼ିଆ ବିଭାଗ ପ୍ରତି ତାଙ୍କର ଏହି ଅବଦାନ ଚିରସ୍ମରଣୀୟ ହୋଇ ରହିବ ।

ଡକ୍ଟର ସାହୁଙ୍କର ସମ୍ପାଦନା ଗବେଷଣା ଓ ସମାଲୋଚନାରେ ସର୍ବଦା ଏକ ମୌଳିକ ତଥା ଆଧୁନିକ ଦୃଷ୍ଟିଭଙ୍ଗୀ ରହିଛି । ସେ ତଥାକଥିତ ରୀତିରେ ବିଷୟବସ୍ତୁକୁ ନଦେଖି ଏକ ସ୍ୱତନ୍ତ୍ର ଦୃଷ୍ଟି ଭଙ୍ଗୀରେ ବିଚାର କରନ୍ତି । ସମ୍ପାଦନା କାର୍ଯ୍ୟରେ ସେହିଭଳି ପ୍ରକୃତ ମୂଳଶବ୍ଦକୁ ଖୋଜି ବାହାର କରନ୍ତି । ନିଜର ସନ୍ଧାନୀ ଦୃଷ୍ଟିଭଙ୍ଗୀରେ ଯାହା ତାଙ୍କ ମନକୁ ନଯାଏ, ସେ ଯେତେ ବଡ଼ଲୋକର ମତ ହେଉ ବା ସମ୍ପାଦନା କାର୍ଯ୍ୟ ହେଉ ତାକୁ ପରିତ୍ୟାଗ କରି ନିଜର ମତବାଦକୁ ଯୁକ୍ତିରସହ ଉପସ୍ଥାପନା କରନ୍ତି । ଏହା ତାଙ୍କ ଚରିତ୍ରର ଏକ ବୈଶିଷ୍ଟ୍ୟ ତାଙ୍କ ସୁଗୁଣ ବର୍ଣ୍ଣନା କରି ବସିଲେ ଅନେକ ହେବ । ଯେପରି ଛାତ୍ର ବତ୍ସଳ ସେପରି କାର୍ଯ୍ୟଦକ୍ଷ ଓ କଷ୍ଟ ସହିଷ୍ଣୁ । ଯେତେ ବେଡ଼ ସମସ୍ୟା ହେଉ ଯେତେ କଠିନ କାର୍ଯ୍ୟହେଉ ସେଥିରେ ସେ ବିବ୍ରତ ହେବାର ମୁଁ ଦେଖିନାହିଁ । କାମ କରିବାର ବାଗ ତାଙ୍କୁ ଜଣାଥିଲା କଠିନ କାମକୁ ସହଜରେ କିପରି କରିବାକୁ ହୁଏ ତାହା ଆମପାଇଁ ଶିକ୍ଷଣୀୟଥିଲା । ଗବେଷଣା ଓ ସମ୍ପାଦନା କାର୍ଯ୍ୟ ପାଇଁ ତାଙ୍କର ପାରିବାରିକ ସମସ୍ୟା କେବେ ପ୍ରତିବନ୍ଧକ ହୋଇ ନାହିଁ । ଅନେକ ଥର ସେ କହିବାର ମୁଁ ଶୁଣିଛି ''ପାରିବାରିକ ସମସ୍ୟା ଓ ଅସୁସ୍ଥତା ତ ସମସ୍ତଙ୍କ ଜୀବନରେ ଆସିବ । ଅନୁକୂଳସମୟକୁ ଚାହିଁ ବସିଲେ ଜୀବନରେ କିଛି କରିପାରିବ ନାହିଁ । ଜୀବନର ଝଡ଼ଝଞ୍ଜା ମଧ୍ୟରେ କିଛି ଆଖିଦୃଶିଆ କାମ କରିପାରିଲେ ସେଥିରେ ଯେଉଁ ଶାନ୍ତିମିଳେ ତାହା ସଙ୍ଗରେ କୌଣସି ତୃପ୍ତି ତୁଳନା କରାଯାଇ ପାରିବ ନାହିଁ । ବାସ୍ତବରେ ସେ ସେହି ସାହିତ୍ୟ ସେବା କାର୍ଯ୍ୟରେ ରହି ସବୁ ଦୁଃଖ ଯନ୍ତ୍ରଣାକୁ ହସ ହସ ମୁହଁରେ ସହି ଇହଧାମରୁ ବିଦାୟ ନେଇଛନ୍ତି । ତାଙ୍କ ଅମର ଆତ୍ମା ଶାନ୍ତିରେ ରହୁ । କାଳର କରାଳବକ୍ଷରେ ତାହା ଅମଳିନ ରହୁ ଏହାହିଁ ମୋର କାମନା ।

❑ *ସ୍ନାତକୋତ୍ତର, ଓଡ଼ିଆ ବିଭାଗ*

*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ମୁରବୀ ଚାଲିଗଲେ

ଡକ୍ଟର ନିତ୍ୟାନନ୍ଦ ନାୟକ

''ତୁମ୍ଭମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।'' *(କବିବର ରାଧାନାଥ)*

''ଜାତସ୍ୟହି ଧ୍ରୁବ ମୃତ୍ୟୁ'' ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ । ଏହା ବିଧିର ବିଧାନ । ଏହା ସମସ୍ତଙ୍କ ପକ୍ଷେ ପ୍ରଯୁଜ୍ୟ; ମାତ୍ର ବେଳେବେଳେ ଏପରି ଯୋଗ ଜନ୍ମା କାଳଜୟୀ ବ୍ୟକ୍ତିମାନଙ୍କର ଆବିର୍ଭାବ ହୁଏ । ମୃତ୍ୟୁ ସେମାନଙ୍କୁ ନେଇ ପାରେ ନାହିଁ କିମ୍ବା କାଳ ଧ୍ୱଂସ କରିପାରେ ନାହିଁ । ଜନ୍ମଠାରୁ ମୃତ୍ୟୁ ଅବଧି ସେମାନେ ଏପରି କୃତି କୃତିତ୍ୱ ପ୍ରଦର୍ଶନ କରି ଅଧିଷ୍ଠିତ ହୁଅନ୍ତି । ସେହିମାନେ ହିଁ ମୃତ୍ୟୁଞ୍ଜୟୀ । ଏହିଭଳି ଏକ ମହାନ୍ ଯଶସ୍ୱୀ ବ୍ୟକ୍ତିଥିଲେ ପ୍ରଫେସର ଡଃ କୃଷ୍ଣଚରଣ ସାହୁ । ତାଙ୍କ ପାଇଁ ଜୀବନ ବର୍ଷମାସ ଦିନ ଦଣ୍ଡରେ ସୀମିତ ନଥିଲା, ତାଙ୍କର ଜୀବନ ସମୟ ପରିଧିକୁ ଅତିକ୍ରମ କରି ଗତି କରି ଚାଲିଥିଲା ଇପ୍‌ସିତ ସିଦ୍ଧିଲାଭ ପଥରେ । ତେଣୁ ସେ ମୃତ୍ୟୁର ନିଃଶବ୍ଦ ଆହ୍ୱାନରେ ଆଦୌ ଆତଙ୍କିତ ହୋଇ ନଥିଲେ । ମୃତ୍ୟୁକୁ ଭ୍ରୁକ୍ଷେପ ନକରି ୧୯୫୨ ମସିହାଠାରୁ ଅଧ୍ୟାପନା କାର୍ଯ୍ୟରେ ଯୋଗଦେବା ସଙ୍ଗେ ସଙ୍ଗେ ଉତ୍କଳ ଭାରତୀଙ୍କ ସେବାରେ ନିଜକୁ ସମର୍ପି ଦେଇଥିଲେ ।

ଡଃ ସାହୁ ଓଡ଼ିଆ ସାହିତ୍ୟର କେବଳ ସୁସମାଲୋଚକ ବା ଦକ୍ଷ ଗବେଷକ ନଥିଲେ ସେ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟରେ ଜଣେ ବିରାଟ ପଣ୍ଡିତ ଓ ଦିଗ୍‌ଦର୍ଶକ ରୂପେ ବିପୁଳ ଖ୍ୟାତି ଅର୍ଜନ କରିଥିଲେ । ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ପୁନରୁଦ୍ଧାର ବିଚାର ବିଶ୍ଳେଷଣ କ୍ଷେତ୍ରରେ ଯେଉଁ କେତେଜଣ ମନୀଷୀ ଆଜୀବନ ସାଧନାରତ ଥିଲେ ସେମାନଙ୍କ ମଧ୍ୟରୁ ଡଃ ସାହୁ ଅନ୍ୟତମ । ଏ ସାହିତ୍ୟକୁ ଚିହ୍ନି ଚିହ୍ନେଇବାରେ ତାଙ୍କର ଅବଦାନ ଅତୁଳନୀୟ ବିଶେଷକରି ପୋଥି ସଂପାଦନ ଓ ପୁରାଣ ସାହିତ୍ୟର ବିଚାର ବିଶ୍ଳେଷଣରେ ତାଙ୍କର ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀ ଏକ ସ୍ୱତନ୍ତ୍ର ଦିଗର ପରିଚାୟକ । ପ୍ରାଚୀନ ତାଳପତ୍ର ପୋଥି ଗୁଡ଼ିକର ପୁନରୁଦ୍ଧାର, ସଂପାଦନ, ତୁଳନାତ୍ମକ ଅନୁଶୀଳନ ଶାବ୍ଦିକ ଟୀକା ଟିପ୍ପଣୀ, ସମୟ ନରୂପଣ ଓ ମୁଖବନ୍ଧ ପ୍ରସ୍ତୁତି କରଣରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଠାରୁ ଆରମ୍ଭ କରି ଡଃ କେଦାର ନାଥ ମହାପାତ୍ର, ଡଃ ପ୍ରହ୍ଲାଦ ପ୍ରଧାନ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ସୁଧାକର ପଟ୍ଟନାୟକ ଡଃ କରୁଣାକର କର ଓ ଡଃ ବଂଶୀଧର ମହାନ୍ତିଙ୍କ ସାଧନାରେ ସେ ବିଶେଷ ଅନୁପ୍ରାଣିତ ହୋଇଥିଲେ । ଡଃ ବଂଶୀଧର ମହାନ୍ତିଙ୍କ ମହାପ୍ରୟାଣପରେ ଡଃ ସାହୁ ଏହି ଗୁରୁ ଦାୟିତ୍ୱ ବହନ କରିଥିଲେ । ଏହି କଠିନ କାର୍ଯ୍ୟକୁ ସେ ଜାତୀୟ କାର୍ଯ୍ୟରୂପେ ମନେ କରି ନିଜକୁ ପୂର୍ଣ୍ଣରୂପେ ନିୟୋଜିତ କରିଥିଲେ ।



Digitized by srujanika@gmail.com

ପୋଥି ସଂପାଦନରେ ପୂର୍ବ ପ୍ରଚଳିତ ନିୟମ ବ୍ୟତୀତ ସେ କେତେକ ନୂତନ ପଦ୍ଧତି ପ୍ରଣୟନ କରି ନିଜର ମୌଳିକତା ଓ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରିଛନ୍ତି । ପୁରାଣ, ଗୀତା, ଭାଗବତ, ଚଉପଦୀ, ଚଉତିଶା ଓ ରାମାୟଣ ପ୍ରଭୃତ ଗ୍ରନ୍ଥର ସଂପାଦନ ଟୀକା ସହିତ ତଥ୍ୟରାଜିର ତୁଳନାତ୍ମକ ଓ ଗବେଷଣାଧର୍ମୀ ଆଲୋଚନା ତାଙ୍କ ସାରସ୍ୱତ ପ୍ରତିଭାର ଅପୂର୍ବ ନିଦର୍ଶନ ।

ଡଃ ସାହୁଙ୍କ ସହିତ ମୋର ସଂପର୍କ ବେଶିଦିନର ନୁହେଁ, ୧୯୮୭ ମସିହାରେ ମୁଁ ବାଣୀବିହାର ଓଡ଼ିଆ ବିଭାଗରେ ପ୍ରାଧ୍ୟାପକ ଭାବରେ ଯୋଗ ଦେଲାବେଳେ ସେ ଥିଲେ ବିଭାଗୀୟ ମୁଖ୍ୟ ତାଙ୍କ ଅଧୀନରେ ଅଧ୍ୟାପନା କାର୍ଯ୍ୟ କରିବାର ସୁଯୋଗ ମୋତେ ମିଳିଥିଲା ମାତ୍ର ଦୁଇବର୍ଷ । ସେହି ଦୁଇବର୍ଷ ମଧ୍ୟରେ ତାଙ୍କର ବିରାଟ ବ୍ୟକ୍ତିତ୍ୱ, ଉଦାର ମାନବିକତା ଓ ନିଷ୍ପାପର ସାରସ୍ୱତ ସାଧନାରେ ମୁଁ ଅନୁପ୍ରାଣିତ ହୋଇଥିଲି । ସବୁବେଳେ ମୁଁ ତାଙ୍କର ନିର୍ଭୀକତା ଓ ମହାନୁଭବତାର ରୂପକୁ ଲକ୍ଷ୍ୟ କରିଛି । ଯେ କୌଣସି ଜଟିଳ ସମସ୍ୟା ଆସିଲେ । ସେ ତାକୁ ଏତେ ହାଲୁକା ଓ ସରଳ ଭାବରେ ସମାଧାନ କରିଦିଅନ୍ତି ଯାହା ଅନ୍ୟମାନଙ୍କ ପକ୍ଷରେ ସମ୍ଭବ ହୋଇ ନଥାଏ ।

୧୯୮୯ ମସିହାରେ ଅବସର ଗ୍ରହଣ କଲାପରେ ସେ ବରାବର ଆମ ବିଭାଗକୁ ଆସନ୍ତି । ସମସ୍ତଙ୍କର ଭଲମନ୍ଦ ବୁଝନ୍ତି, କିଏ କିପରି ଲେଖାଲେଖି କରୁଛି ପଚାରନ୍ତି ଏବଂ ପୋଥିପତ୍ର ସଂପର୍କରେ ଆଲୋଚନା କରନ୍ତି । ଆମ ବିଭାଗର ବିଭିନ୍ନ ଉତ୍ସବରେ ସେ ପ୍ରାୟ ଯୋଗ ଦେଇଥାନ୍ତି । ୧୯୬୧ ମସିହାଠାରୁ ସେ ଆମ ବିଭାଗ ସହିତ ଓତ ପ୍ରୋତ ଭାବରେ ଜଡ଼ିତଥିବାରୁ ଆମ ବିଭାଗର କେବଳ ହିତାକାଂକ୍ଷୀ ନୁହନ୍ତି ମୁରବୀ ମଧ୍ୟ । ଆମ ବିଭାଗକୁ ଏକ ପରିବାର ପରି ଗଠନ କରିବାରେ ତାଙ୍କର ଭୂମିକା ସର୍ବାଧିକ । ମୁରବୀ ପରି ଆମ୍ଭେମାନେ ପ୍ରତିକାର୍ଯ୍ୟରେ ତାଙ୍କର ପରାମର୍ଶ ଓ ସାହାଯ୍ୟ ଲୋଡୁଥିଲୁ । ସେ ଅତି ନିରହଙ୍କାରଭାବରେ ଆମ ସହିତ ମିଳି ମିଶି ଚାଲିଥିଲେ । ବିଶେଷ କରି ମୁଁ ବିଭାଗର ମୁଖ୍ୟ ଦାୟିତ୍ୱ ତୁଲାଇବା ଦିନଠାରୁ ତାଙ୍କୁ ବିଭିନ୍ନ ଉତ୍ସବରେ ଯୋଗ ଦେବା ପାଇଁ ଅନୁରୋଧ କରେ ଏବଂ ସେ ଅତି ଆଗ୍ରହରେ ଅନ୍ୟାନ୍ୟ କାର୍ଯ୍ୟ ପଛରେ ପକାଇ ଆମ ବିଭାଗକୁ ଧାଇଁ ଆସନ୍ତି । ତାଙ୍କର ଉପସ୍ଥିତି ଆମର ସବୁ ଭୟଭ୍ରାନ୍ତି ଦୂରେଇ ଦେଇଥାଏ । ତାଙ୍କ ପରାମର୍ଶରେ ଆମ୍ଭେମାନେ ବେପରୁଆ ଭାବରେ ସବୁ କାର୍ଯ୍ୟ କରିଯାଉଥିଲୁ । ମାତ୍ର ତାଙ୍କର ଆକସ୍ମିକ ବିୟୋଗ ଆମ ବିଭାଗପାଇଁ ଏକ ଅକାଳ ବଜ୍ରପାତ । ଡଃ ସାହୁଙ୍କ ପରି ଜଣେ ଆଦର୍ଶ ମୁରବୀଙ୍କୁ ହରାଇ ଆମେ ଆଜି ଅତ୍ୟନ୍ତ ମର୍ମାହତ । ଶେଷରେ ସେହି ମହାନ୍ ଆତ୍ମାର ସଦ୍‌ଗତି ପାଇଁ ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

❐ *ବିଭାଗ ମୁଖ୍ୟ*
*ସ୍ନାତକୋତ୍ତର ଓଡ଼ିଆ ବିଭାଗ,*
*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ଅମର ଆତ୍ମା

ପ୍ରଫେସର ପ୍ରାଣବନ୍ଧୁ କର

ବେଙ୍ଗ କହେ - 'ବେଙ୍ଗୁଲୀଲୋ ପୃଥ୍ୱୀ କ୍ଷଣ କ୍ଷଣକେ ଆନ' ।

ଏହି ମାସ ଛଅ ତାରିଖ ସଂଧ୍ୟାବେଳେ ଫୋନ୍ ବାଜି ଉଠିଲା । ଫୋନ୍ ଉଠେଇଲି । ବାଷ୍ପରୁଦ୍ଧ କଣ୍ଠରେ ସଂଘମିତ୍ରା (ବାଣୀବିହାରର ପ୍ରାଧ୍ୟାପିକା ଡକ୍ଟର ସଂଘମିତ୍ରା ମିଶ୍ର) ମତେ ଜଣେଇଲା ''ସାର୍, ଆଜି ସକାଳେ କୃଷ୍ଣ ସାର୍ ଚାଲିଗଲେ ।'' କଅଣ କହୁଚ ତମେ ? କଅଣ ହେଇଥିଲା ତାଙ୍କର ? ବାଷ୍ପାକୁଳ କଣ୍ଠରେ କୃଷ୍ଣବାବୁଙ୍କର ପ୍ରିୟ ଛାତ୍ରୀ ଓ ସହକର୍ମୀ ସଂଘମିତ୍ରା ମତେ ସବୁକଥା କହିଗଲା । ସେଇ ମୁହୂର୍ତ୍ତରେ ବିଶ୍ୱାସ କରିପାରିଲିନି ଯେ ଦିମାସ ତଳର ବେଶ୍ ସୁସ୍ଥ ସବଳ ସଦାମୋଦୀ କୃଷ୍ଣବାବୁଙ୍କ ଭିତରେ ଲୁଚି ରହିଥିବା ଗୋଟାଏ ଦୁରାରୋଗ୍ୟ ବ୍ୟାଧି ହଠାତ୍ ଆତ୍ମ ପ୍ରକାଶ କଲା ଆଉ ଦିନ ପନ୍ଦର କୋଡ଼ିଏଟା ଭିତରେ ଅତି ନିଷ୍ଠୁର ଭାବରେ ତାଙ୍କୁ ଆମଠୁ ଛଡ଼େଇ ନେଇଗଲା ! ଇସ୍ !

ଏଇ ଦିମାସ ତଳର କଥା ! ଦିନ ଏଗାରଟାବେଳେ ବାଣୀବିହାର ଓଡ଼ିଆ ବିଭାଗ ଫାଟକ ସାମନାରେ କୃଷ୍ଣବାବୁଙ୍କ ସହିତ ଦେଖା ହେଇଗଲା । ହସ ହସ ମୁହଁରେ ମତେ ପଚାରିଲେ ''କଅଣ, ଆମ ଡିପାର୍ଟମେଣ୍ଟ ଆଡ଼େ ?'' । କହିଲି ''ନାହିଁ ତମ ଡିପାର୍ଟମେଣ୍ଟଆଡ଼େ ନୁହଁ । ମୋର ଗୋଟାଏ ଚେକ୍ କଥା ବୁଝିବାକୁ ଆସିଥିଲି । 'ଆମ ଡିପାର୍ଟମେଣ୍ଟ' କଣ କହୁଚ ? ଏତେଦିନ ଧରି ରିଟାୟାର୍ କଲାପରେବି ଓଡ଼ିଆ ଡ଼ିପାର୍ଟମେଣ୍ଟ ମୋହ ଛାଡ଼ିନି ?'' ସେମିତି ହସ ହସ ମୁଁହରେ କୃଷ୍ଣବାବୁ ଉତ୍ତର କଲେ ''ରିଟାୟାର କରିଗଲେ ବି କ'ଣ ମୋ କାମ ସରିଗଲା ?'' ମନେ ମନେ ଭାବିଲି - ରାଞ୍ଚି ବିଶ୍ୱବିଦ୍ୟାଳୟଠାରୁ ଆରମ୍ଭ କରି ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ଓ ଶେଷରେ ବାଣୀ ବିହାରର ଓଡ଼ିଆ ବିଭାଗର ପ୍ରାଧ୍ୟାପକ ଓ ପରେ ମୁଖ୍ୟ ଅଧ୍ୟାପକ ଭାବେ ଅଧ୍ୟାପନା ଓ ଗବେଷଣାରେ ସଦା ବ୍ରତୀ କୃଷ୍ଣ ବାବୁଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଅଗାଧ ପ୍ରୀତି ଓ ମୋହ ଛାଡ଼ି ପାରିବ । ଆଦୌ ସଂଭବ ନୁହେଁ । ଯେଉଁ ବିଭାଗର ଛାତତଳେ ପ୍ରାଧ୍ୟାପକ ଓ ମୁଖ୍ୟ ଅଧ୍ୟାପକ ଭାବରେ କାର୍ଯ୍ୟରତ ଥିଲାବେଳେ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଅନାବିଷ୍କୃତ ଓ ଲୁପ୍ତ ପ୍ରାୟ ରତ୍ନଗୁଡ଼ିକୁ ଉଦ୍ଧାର କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ତାଙ୍କ ପକ୍ଷରେ ଓଡ଼ିଆ ବିଭାଗ ପ୍ରତି ମୋହମାୟା ରହିବାତ ସ୍ୱାଭାବିକ ।

କୃଷ୍ଣବାବୁ ବାଣୀବିହାରକୁ ପ୍ରାଧ୍ୟାପକଭାବେ ଆସିଲାପରେ ତାଙ୍କ ସହିତ ମୋର ପରିଚୟ ହେଲା । ମୁଁ ୧୯୭୦ରେ ଅଧ୍ୟାପନା କର୍ମର ଅବସର ନେଲି - ହେଲେ ବାଣୀବିହାର ସହିତ ମୋର



Digitized by srujanika@gmail.com

ସମ୍ପର୍କ ତୁଟିନଥିଲା କି ଏବେ ବି ତୁଟିନି । ୧୯୭୬ ମସିହାରେ କଟକ ଛାଡ଼ି ଭୁବନେଶ୍ୱରରେ ରହିଲି ତାପରଠୁ କୃଷ୍ଣବାବୁଙ୍କ ସହିତ ମୋର ଅନ୍ତରଂଗତା ବଢ଼ିଚାଲିଲା - ତାଙ୍କର ଅଟ୍ଟାଳିଆ କଥା ଅମାୟିକ ଓ ନିରହଂକାର ସ୍ୱଭାବ ଏବଂ ଓଡ଼ିଆ ସାହିତ୍ୟକୁ ତାଙ୍କର ମହାନ ଅବଦାନ ମତେ ତାଙ୍କପ୍ରତି ଆକୃଷ୍ଟ କଲା । ସେ ବିଭାଗୀୟ ମୁଖ୍ୟ ଥିଲାବେଳେ ଓଡ଼ିଆ ସ୍ନାତକ ଓ ସ୍ନାତକୋତ୍ତର ପ୍ରଶ୍ନ ଓ ପରୀକ୍ଷା ସଂକ୍ରାନ୍ତୀୟ କାର୍ଯ୍ୟକ୍ରମ ଭିତରେ ତାଙ୍କ ସହିତ ଅନ୍ତରଙ୍ଗତା ବଢ଼ିଚାଲିଲା । ଦିନେ ମୁଁ ଆବିଷ୍କାର କଲି ଯେ ମୋଠୁ ପ୍ରାୟ ପନ୍ଦର ବର୍ଷ ସାନ ତିନିଜଣ ତରୁଣ ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ସାହୁ, ଇଂରାଜୀ ବିଭାଗର ଡକ୍ଟର ଯତୀନ୍ଦ୍ର ମୋହନ ମହାନ୍ତି ଓ ଇତିହାସ ଅଧ୍ୟାପକ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଦାସଙ୍କ ଘଣି ଭିତରକୁ ମୁଁ ଟାଣି ହେଇଯାଇଛି । ମୋର ବୟସ ତାଙ୍କ ସହିତ ସମାନ ହୋଇଯାଇଛି । ସେମାନଙ୍କର ମୋ ପ୍ରତି ଗଭୀର ସ୍ନେହଶ୍ରଦ୍ଧାରେ ମୁଁ ବାନ୍ଧି ହେଇଯାଇଛି ।

୧୯୯୫ ମସିହା ଏପ୍ରିଲ ୧୬ ତାରିଖ ଦିନ ଡକ୍ଟର ସାହୁଙ୍କର ୭୬ ତମ ଜୟନ୍ତୀ ଉତ୍ସବରେ ତାଙ୍କୁ ଶୁଭେଚ୍ଛା ଜଣାଇବାକୁ ମୁଁ ନିମନ୍ତ୍ରିତ ହୋଇଯାଇଥିଲି । ତାଙ୍କୁ ଶୁଭେଚ୍ଛା ଜଣାଇଲା ବେଳେ ଗୋଟିଏ ଲଡୁ ମୁଁ ତାଙ୍କୁ ଖୁଆଇ ଦେଲାବେଳର ଫଟୋଟା ଗଲାକାଲି ସଂଘମିତ୍ରା ମତେ ଦେଖାଇଲା ସେ ଫଟୋଟି ଦେଖି ମୋ ଆଖିରୁ ଲୁହ ଗଡ଼ି ପଡ଼ିଲା ।

ଆମ ଚାରିଜଣଙ୍କ ଘଣି ଭିତରୁ ଏଇ ମାସ ଛଅ ତାରିଖରୁ ସେ ଖସି ପଳେଇଲେ । ଆମର ଦୁର୍ଭାଗ୍ୟ ଯେ ଆଗାମୀ ୧୪ ତାରିଖରେ ଏକ ସଭାରେ ଆମକୁ ତାଙ୍କର ସ୍ମୃତି ଚାରଣ କରିବାକୁ ପଡ଼ିବ । ହେଲେ ତାଙ୍କର ମର ଶରୀର ଆମକୁ ସିନା ଛାଡ଼ି ଚାଲିଗଲା - ତାଙ୍କର ମହାନ୍ ଆତ୍ମା ଓ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ପାଇଁ ସେ ଓଡ଼ିଆମାନଙ୍କର ଅନ୍ତରରେ ଚିର ଜୀବନ୍ତ ହୋଇ ରହିବେ ।

ମୁଁ ତାଙ୍କର ଜଣେ ସ୍ନେହୀ ଶୁଭେଚ୍ଛୁ ଭାବରେ ତାଙ୍କ ଆତ୍ମାର ଅମରତ୍ୱ କାମନା କରୁଛି ।

❒ ୩୯୬, ଶହୀଦନଗର,
ଭୁବନେଶ୍ୱର



Digitized by srujanika@gmail.com

# କୃଷ୍ଣ

ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି

କୃଷ୍ଣ ୧୯୫୩ ବେଳକୁ ରାଞ୍ଚି ଗଲା ରାଞ୍ଚି କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଲା । ମୁଁ ସେତେବେଳେ ରେଭେନ୍ସା କଲେଜରେ ଯୋଗ ଦେଇ ସାରିଥାଏ । ତେଣୁ ଆଠ ନଅ ବର୍ଷ ସ୍କୁଲ କଲେଜରେ ଏକାଠି ରହିଲା ପରେ ଆମର ହଠାତ୍ ଛାଡ଼ବାଡ଼ ହେଇଗଲା, ରାଞ୍ଚି ସେତେବେଳେ ଛୋଟ ଜାଗା, କିନ୍ତୁ ସୁନ୍ଦର, ଥଣ୍ଡା ଜାଗା ଓ ଗୋଟାଏ ଛୁଟି କଟେଇବା ଜାଗା ପରି ଆମେ ସବୁବେଳେ ଭାବୁଥିଲୁ । କିନ୍ତୁ ରାଞ୍ଚି ଯିବା ଖୁବ୍ ସହଜ ନଥିଲା । ଟ୍ରେନରେ ଖଡ଼ଗପୁର ହେଇ ପ୍ରାୟ ଦେଢ଼ ଦିନର ବାଟ, କୃଷ୍ଣ କିନ୍ତୁ ଖୁସି । ପାଶ୍ କରୁ କରୁ କଲେଜରେ ପାଠ ପଢ଼େଇବାପାଇଁ ସୁବିଧା ମିଳିଗଲା ସେଇଟାହିଁ ବଡ଼ କଥା, ପରେ ଯା ହେଉ ଦେଖାଯିବ । ସେ ବେଶି ଡେରି ନକରି ସ୍ତ୍ରୀକୁ ରାଞ୍ଚି ନେଇଗଲା ଓ ସେଠି ଯେମିତି ସବୁଦିନେ ରହିବ ଏହି ଭାବରେ ସେଠାରେ ବସବାସ କରିବାକୁ ଆରମ୍ଭ କରିଦେଲା ।

ମୁଁ ଖବର ପାଉଥାଏ, ସେ ବି ମଝିରେ ମଝିରେ ଚିଠି ଲେଖୁଥାଏ ଓ ଛୁଟି ହେଲେ ପ୍ରାୟ ଘରକୁ ଆସେ । ଆସ୍ତେ ଆସ୍ତେ ସେଠି ସେ ଜଣାଶୁଣା ହେଲା । ଲୋକେ ତାକୁ ଚିହ୍ନିଲେ, ପସନ୍ଦ କଲେ ଓ କ୍ରମେ କ୍ରମେ ତା ନାଁ କୃଷ୍ଣରୁ ବଦଳି 'ସାହୁଜୀ' ହେଇଗଲା । କଲେଜରେ ତ ପାଠ ପଢ଼ାପଢ଼ି ହେଉଥାଏ, ସାଙ୍ଗେ ସାଙ୍ଗେ ଆଖପାଖ ଓଡ଼ିଆ ଲୋକେ ଥିବା ଗାଁମାନଙ୍କରୁ ଡାକରା ଆସିଲା, ପ୍ରାୟ ରବିବାରଦିନ କୃଷ୍ଣ ସେସବୁ ଗାଁମାନଙ୍କୁ ଯାଏ ଲୋକମାନଙ୍କ ସାଙ୍ଗରେ ମିଶେ, ଦିନଯାକ ରହେ ଓ ବିଭିନ୍ନ ବସତିରେ ଓଡ଼ିଆ ଭାଗବତ ପଢ଼େ ଓ ପାରାୟଣ କରେ ।

ଏହି ସମୟରେ ଦିନେ ସିଏ ଘରକୁ ଆସିଥାଏ । ଦେଖାହେଲା, କହିଲେ, ''ଯତି, ମୁଁ ଭାବୁଛି ରାମାୟଣ ଉପରେ ପଢ଼ାପଢ଼ି କରିବି, ପି.ଏଚ.ଡ଼ି. କରିବି ।' ମୁଁ କହିଲି କୋଉ ରାମାୟଣରେ ? ସଂସ୍କୃତର ? ସେ କହିଲା,'' ନାଁ, ନାଁ, ଓଡ଼ିଆ ରାମାୟଣ ବଳରାମ ଦାସଙ୍କ ଜଗମୋହନ ରାମାୟଣ ।' ମତେ ଖଟଖଟ ଲାଗିଲା । ମୁଁ କହିଲି, କିରେ ବହି କାହିଁ ? ଏ ଯୋଉଟା ବଜାରରେ ମିଳୁଛି ? ସେ ତ ଅପାଠ୍ୟ, ତାକୁ ବଳରାମ ଦାସ ଲେଖିଛନ୍ତି, ନାଁ ଏ ପ୍ରେସବାଲାମାନେ ଲେଖିଛନ୍ତି ? ତା ଉପରେ କି ପି.ଏଚ.ଡ଼ି !' ''ସେ କହିଲା, ନାଇଁ, ନାଇଁ, ତୁ ଯେତେ ଖରାପ ଭାବୁଛୁ ସେତେ ନୁହେଁ । ସେ ବହିରୁ ବି ଅନେକ ଖବର ମିଳିବ । କିନ୍ତୁ ମୁଁ ସେ ବଜାର ବହି କଥା କହୁନି, ମୁଁ କିଛି ପୁରୁଣା ରାମାୟଣ ପୋଥି ସଂଗ୍ରହ କରିଛି ଶଶୁରଙ୍କ ଗାଁରୁ । ଆଉ କିଛି ପାଇବି । ଅନ୍ୟାନ୍ୟ ପୋଥି ବି ମିଳୁଛି, ମୁଁ ଯାହା ଭଲ ପୋଥି ପାଉଛି ନେଇ ଆସୁଛି । ଗୋଟା ନମୁନା ଆଣିଛି, ଦେଖିବୁ ।' ସେତା ହାତ ବ୍ୟାଗରୁ ଗୋଟିଏ



Digitized by srujanika@gmail.com

ଛୋଟ ତାଳପତ୍ର ପୋଥି କାଢ଼ିଲା । ପୋଥିଟି ସୁଦୃଶ୍ୟ । ପରିଷ୍କାର ପରିଚ୍ଛନ୍ନ ହୋଇ ବନ୍ଧା ହେଉଛି । ଦଉଡ଼ି ଖୋଲି ସେ ପୋଥି ମେଲାଇଲା ଓ ମୋତେ ଦିତିକୋଟି ଖେଦା ଖେଳେଇ ଦେଖେଇଲା ସୁନ୍ଦର ସୁନ୍ଦର ଗୋଲ ଗୋଲ ଅକ୍ଷରଗୁଡ଼ିକ ଧାଡ଼ି ଧାଡ଼ି ହେଇ ଲେଖା ହେଇଛି । ମୁଁ ଟିକେ ଏପାଖ ସେପାଖ ଖେଳେଇ ଦେଖିଲି ଓ ତାକୁ ଫେରେଇ ଦେଲି । କହିଲି, ''ହଁ ଠିକ୍ ଅଛି ଯେ କିନ୍ତୁ ତୁ ଏ ପୋଥିକି ସବୁ ପଢ଼ିବୁ ଆଉ ପି.ଏଚ.ଡ଼. କରିବୁ । ଏ ତ ପାଗ ବାନ୍ଧୁ ବାନ୍ଧୁ କଟିରି ବରଖାସ୍ତ ।'' ସେ ଟିକିଏ ହସିଲା । ''କହିଲା, ତୁ ଏଇଆ କହିବୁ ମୁଁ ଜାଣିଥିଲି । ମୁଁ ପଢ଼ାପଢ଼ି ଆରମ୍ଭ କରିଦେଲିଣି । ଭାବୁଛି ଆଉ ଦୁଇ ଦିନି ବର୍ଷରେ ମୁଁ ଜଗମୋହନ ରାମାୟଣର ଶୁଦ୍ଧ ସଂସ୍କରଣ ତିଆରି କରି ଦେଇ ପାରିବି ।' ମୁଁ ବୁଝି ପାରିଲି ନାହିଁ କୃଷ୍ଣ କ'ଣ କହୁଛି । ଏ ଶୁଦ୍ଧ ସଂସ୍କରଣ ତିଆରି କରିବା ଆମପିଲାଖେଳ ପରି ଭାବୁଛି କି ? ପାଠର ବିଶେଷ କରି ପ୍ରାଚୀନ ପାଠର, ଶୁଦ୍ଧ ସଂସ୍କରଣ ତିଆରି କରିବା ବିଷୟରେ ମୋର କିଛି କିଛି ଧାରଣା ଥିଲା । ମୁଁ ଅଷ୍ଟାଦଶ ଶତାବ୍ଦୀର ଇଂରାଜୀ କବି ଆଲେକଜାଣ୍ଡର ପୋପଙ୍କ ବିଷୟରେ ମୋର ନିଜର କାମ ପାଇଁ ପଢ଼ାପଢ଼ି କରୁଥିଲି ଓ ସେହି ସମୟରେ ବିଲାତ ଓ ଆମେରିକାର ବିଶ୍ୱବିଦ୍ୟାଳୟମାନଙ୍କର ପ୍ରାୟ ଦଶବାର ଜଣ ପ୍ରତିଷ୍ଠିତ ପ୍ରସିଦ୍ଧ ପ୍ରଫେସର ପୋପଙ୍କ ଲେଖାର ଶୁଦ୍ଧ ସଂସ୍କରଣ ପାଇଁ ମିଳିତ ଭାବରେ କାମ କରୁଥିଲେ ଓ ସେମାନେ ଆଶା କରୁଥିଲେ ଆଠ ଦଶ ବର୍ଷରେ ପୂରା କାମ ସାରିବେ । ସେ କାମର ବିସ୍ତାର ଓ ଗଭୀରତା ମୁଁ ମୋ ନିଜ ପଢ଼ାପଢ଼ିରୁ ବୁଝୁଥିଲି । ତେଣୁ କୃଷ୍ଣ ଶୁଦ୍ଧ ସଂସ୍କରଣ ତିଆରି କରିବ, ପୁଣି ନିଜ ଖର୍ଚ୍ଚରେ ଏକା ଏକା ଓ ନିଜର ଅନ୍ୟାନ୍ୟ ସବୁ କାମ ଭିତରେ, ଏ ମୋର ଗୋଟାଏ ପିଲାଳିଆ କଥା ପରି ମନେହେଲା । କୃଷ୍ଣକୁ ସେଇଆ କହିଲି । କାମର ପରିସର ବିଷୟରେ ଧାରଣା ଦେଲି, ପୁଣି ଏ ଛାପା ବହିରୁ ନୁହେଁ, ତାଳପତ୍ର ପୋଥିରୁ, ଯାହାକି ବିଭିନ୍ନ ଜାଗାରୁ ସଂଗ୍ରହ କରିବାକୁ ହେବ ଓ ବିଶେଷ କରି ଓଡ଼ିଶା ପରି ଜାଗାରୁ ଯେଉଁଠି ପାଠର କୌଣସି ଚଳଣି ନାହିଁ, କୌଣସି ବଡ଼ କାମ କରିବାର ଚିନ୍ତାଧାରା, ନାହିଁ, ଓ ଯେଉଁଠି କ୍ଷୁଦ୍ରତା ଓ ଅସହନୀୟତାର ମନୋଭାବ ପ୍ରବଳ, ଏ କ'ଣ ସମ୍ଭବ, ଏ କଥା ମୁଁ ତାକୁ ବାରମ୍ବାର କହିଲି, ନିଜ ଉପରେ ପକେଇ, ନିଜକୁ କଷ୍ଟ ଦେଇ ଏ କାମ କରିବାର ଇଚ୍ଛା ସେ ଛାଡୁ, ପି.ଏଚ.ଡ଼ି. ଯେ କୌଣସି ଛୋଟ ବିଷୟରେ କରି ଦିଆଯାଇପାରେ ? ପରେ, ନିଜେ ପ୍ରତିଷ୍ଠିତ ହୋଇ ସାରିବା ପରେ, ନିଜର ସୁବିଧା ଦେଖି, ଗୋଟିଏ ଟିମ୍ ନେଇ, କୌଣସି ଅନୁଦାନର ସାହାଯ୍ୟ ନେଇ ଏ କାମ କରାଯାଇପାରେ । ଦେଶ ସ୍ୱାଧୀନ ହେବା ପରେ ବି ଯଦି ଜାତିର ପ୍ରତିଷ୍ଠିତ ଲେଖକମାନଙ୍କର ଲେଖାର ଶୁଦ୍ଧ ସଂସ୍କରଣ କରିବା ପାଇଁ ସରକାର ବା ବିଶ୍ୱବିଦ୍ୟାଳୟ ବା ଅନ୍ୟ ଅନୁଷ୍ଠାନମାନଙ୍କର କାହାରି କିଛି ଆଗ୍ରହ ନାହିଁ । କୃଷ୍ଣ କାହିଁକି ଏକା ଏକା କାଦୁଅରେ ପଶିବ, ଏହାହିଁ ମୋର କହିବାର କଥା ଥିଲା ।

କୃଷ୍ଣ ଚୁପ୍ ଚାପ୍ ମୋ କଥା ଶୁଣିଲା, ମୋର ମନେ ଅଛି ମୁଁ କାଠଗଡ଼ା ସାହିରେ ଜଣେ ଭଦ୍ରଲୋକଙ୍କର ଉପର ମହଲା ଭଡ଼ାନେଇ ରହୁଥିବା ଘରେ ଆମେ ଉଭୟେ ବସିଥାଉ । ସେଦିନ ଛୁଟିଥାଏ । ବୋଧହୁଏ ଦଶହରା ସମୟ ହେବ । ଚାରିପାଖରେ ଖୋଲା ପରିଷ୍କାର ଆକାଶ, କୃଷ୍ଣ ଆଗଦିନ ଗାଁରୁ ଆସିଥାଏ ଓ ଭୋରୁ ମୋ ପାଖକୁ ଆସିଥାଏ । କୃଷ୍ଣ କହିଲା, ଯତି, ତୁ ଯାହା କହୁଛୁ ମୁଁ କ'ଣ ଜାଣିନି । ତୁ ଯାହା କହୁଛୁ ସବୁ ଠିକ୍ । କିନ୍ତୁ ମତେ କହ, ଏ କାମ କିଏ କରିବ, ଏ ସରକାର



Digitized by srujanika@gmail.com

ଏ କାମ କରିବ ନାହିଁ । ଆଜି ନୁହେଁ କି ଆସନ୍ତା ପଚାଶ ବର୍ଷ ଭିତରେ ନୁହେଁ । ଆଉ ଓଡ଼ିଶାରେ ତ ବିଶ୍ୱବିଦ୍ୟାଳୟ ନାହିଁ । ଯାହା ବା ଗୋଟାଏ ଅଛି ସେ ତ ସେକେଣ୍ଡାରୀ ବୋର୍ଡ଼ । କର୍ତ୍ତାମାନଙ୍କର ଓଡ଼ିଆ ଜାତି ପାଇଁ ବା ବିଦ୍ୟାର ପ୍ରସାର ପାଇଁ କୌଣସି ଆଗ୍ରହ ନାହିଁ, ଆଉ ସଂପୂର୍ଣ୍ଣ ବିଶ୍ୱବିଦ୍ୟାଳୟ ହେଲେ ବି କିଛି ଲୋକ ସେଠି ଚାକିରୀ ପାଇଁ ଖାଲି ପିଟାପିଟି ହେବେ । ଆଉ ଅନୁଷ୍ଠାନ । ଜାତିପାଇଁ କାମ କରିବା ପାଇଁ ସେପରି ଅନୁଷ୍ଠାନ ଓଡ଼ିଶାରେ କାହିଁ ହେଲେ ଏ କାମ କେମିତି ହେବ ? କେବେ ହେବ ? ନାଁ ହବ ନାହିଁରେ ତୁ କହ ।'

ମୁଁ ଚୁପ୍ ରହିଲି । କୃଷ୍ଣ କଥାର କୌଣସି ଉତ୍ତର ମୋ ପାଖରେ ନଥିଲା । ସେ ପୁଣି କହିଲା, 'ମୁଁ ଖବର ପାଇଛି, ପୁରୁଣା ପୋଥିସବୁ ଓଡ଼ିଶାର ଅନେକ ଅନେକ ଜାଗାରେ ଅଛି, ଏପରିକି ସିଂହଭୂମ ଅଂଚଳରେ କି ମୁଁ ଅନେକ ପୋଥିର ସଂଧାନ ପାଇଛି । କିନ୍ତୁ ଏ ପୋଥି ଆଉ କେତେଦିନ ରହିବ । ଏଜେଣ୍ଟମାନେ ସବୁ ଗାଁ ଗାଁକୁ ଖେଦି ଗଲେଣି, ତାଳପତ୍ର ପୋଥିସବୁ ନେଇ ବାହାରକୁ ଚାଲାଣ କରି ଦଉଛନ୍ତି । ଆଉ ଆମ ସରକାରଙ୍କର ତ ଏ ବିଷୟରେ ହୋଲେ ଡ଼ୋଲେ ନାହିଁ । ପୋଥିପାଇଁ ଯାହାକିଛି ଟଙ୍କା ମ୍ୟୁଜିୟମକୁ ଦଉଛନ୍ତି ସେଥିରେ କ'ଣ ହେବ ? ପୋଥି ଆଣି ହବକି, ରଖିହବକି, ଏଡ଼ିଟ୍ କରି ହେବ କି ? ଏଥିରେ କ'ଣ କରାଯିବ କହ, ତେଣୁ ଯେତିକି ପାରିବି କରିବି, ଏଇଆ ମୁଁ ସ୍ଥିର କରିଛି । ତୁ ଖାଲି ମୋତେ ଟିକେ ସାହସ ଦେ, ଦମ୍ଭ ଦେ ।'

କୃଷ୍ଣକୁ ଦମ୍ଭ ଦବା ଲୋକ ମୁଁ କିଏ ? ସେ ତ ଅନ୍ୟମାନଙ୍କୁ ଦମ୍ଭ ଦିଏ, ଏ ବହୁତ ଦିନ ତଳର କଥା । ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ କି ଇଂରାଜୀ କୌଣସି ବିଭାଗ ଖୋଲି ନଥାଏ, ପରେ ସପ୍ତମ ଦଶକର ମଝାମଝି ସମୟରେ, ମୁଁ ବିଲାତରୁ ଫେରିଲାପରେ, କୃଷ୍ଣମତେ ଜଣେଇଦେଲା ଯେ ସେ ରାମାୟଣ ଉପରେ ପି.ଏଚ୍.ଡ଼ି. କାମ କଲା ଓ ଜଗମୋହନ ରାମାୟଣର ଶୁଦ୍ଧ ସଂସ୍କରଣ କାମ ଶେଷ କଲା । କେବଳ ରାମାୟଣ ନୁହେଁ, ପଛକୁ ପଛ ସେ ଜଗନ୍ନାଥ ଦାସଙ୍କର 'ଭାଗବତ', ଅଚ୍ୟୁତାନନ୍ଦଙ୍କର 'ହରିବଂଶ' ଓ ପୀତାମ୍ବର ଦାସଙ୍କର 'ନୃସିଂହ ପୁରାଣ'ର ଶୁଦ୍ଧ ସଂସ୍କରଣ ତିଆରି କଲା ଓ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ କାମ କରୁଥିଲା । ଭଗବାନ ତାକୁ ଆଉ ଗୋଟାଏ ବର୍ଷ ବଂଚେଇଥିଲେ ସେ କାମ ବି ସେ ସାରିଦେଇଥାନ୍ତା । ତେବେ ସାରଳାଙ୍କର 'ଚଣ୍ଡିପୁରାଣ' କାମ ସେ ସାରି ଦେଇଛି ଓ ଆହୁରି ଅନ୍ୟାନ୍ୟ ପ୍ରାଚୀନ ଲେଖା, ଯଥା 'ରୁଦ୍ର ସୁଧାନିଧି', 'ପରିମଳା' ଓ 'ରସକଲ୍ଲୋଳ' ପ୍ରଭୃତିର ମଧ୍ୟ ଶୁଦ୍ଧ ସଂସ୍କରଣ ବିଭିନ୍ନ ସମୟରେ ସେ କରି ଦେଇଛି ।

ତାଳପତ୍ର ପୋଥିରୁ ଆଧୁନିକ ବୈଜ୍ଞାନିକ ଭିତ୍ତିରେ ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରିବା କୃଷ୍ଣ ପାଇଁ କ୍ଲେଶକର ନଥିଲା, ଅତ୍ୟନ୍ତ ଆନନ୍ଦଦାୟକ ଥିଲା ଓ ବହୁ ବର୍ଷ ଧରି ତା ଜୀବନର ଅନ୍ୟତମ ମୁଖ୍ୟ ଲକ୍ଷ୍ୟଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ, କୃଷ୍ଣ ଯାହା କଲା, ଯେପରି ଭାବରେ ପ୍ରମୁଖ ପ୍ରାଚୀନ ସାହିତ୍ୟର ମୂଳ ସ୍ୱରୂପକୁ ଆଧୁନିକ ପାଠକମାନଙ୍କ ଆଗରେ ଖୋଲିଦେଲା ଓ ସ୍ୱାଭାବିକ ଭାବରେ ନିଧାର୍ଯ୍ୟ ଭାବରେ ଜାତିର ମୂଳପିଣ୍ଡକୁ ପ୍ରତିଷ୍ଠିତ କଲା, ଏ କାମ ଓଡ଼ିଶାରେ ଅତୀତରେ କେହି କରିନାହିଁ, ବର୍ତ୍ତମାନ କେହି କରୁନାହିଁ ଓ ଭବିଷ୍ୟତରେ ଏ କାମ କେହି କରିପାରିବ କି ନାହିଁ ଏକଥା କହିବା ଦୁଷ୍କର ।



Digitized by srujanika@gmail.com

କିନ୍ତୁ ଓଡ଼ିଆ ଜାତି କୃଷ୍ଣକୁ କି ସ୍ୱୀକୃତି ଦେଲା ? ଏକଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କିଛି ନାହିଁ, ସେ ନିଜେ କିଛି ଆଶା କରୁନଥିଲା, କି ସ୍ୱୀକୃତି ବା ସମର୍ଥନ ନ ପାଇବା ଯୋଗୁଁ ଦୁଃଖିତ ବି ନଥିଲା । କିନ୍ତୁ ଏଇଟା କ'ଣ ଶେଷ କଥା ? କେବଳ ପ୍ରାଚୀନ ସାହିତ୍ୟର ଏହି ଶୁଦ୍ଧ ସଂସ୍କରଣହିଁ ଯଦି ସେ କରିଥାନ୍ତା, ତେବେ ବିଲାତ ଆମେରିକାରେ ସେ ଯେ କି ଅସୀମ ସମ୍ମାନର ଅଧିକାରୀ ହୋଇଥାନ୍ତା ସେ କଥା ଆମ୍ଭେମାନେ କଳ୍ପନା କରି ପାରିବା ନାହିଁ । ସେସବୁ ଦେଶରେ ତାଠାରୁ ଯଥେଷ୍ଟ କମ କାମ କରି ବି, ଲୋକେ ଯଥେଷ୍ଟ ଯଶ ଓ ସମ୍ମାନ ପାଇଛନ୍ତି । ଏଠାରେ ? ଜଗମୋହନ ରାମାୟଣର କାମ ସାରିବାର ପ୍ରାୟ ୨୫ ବର୍ଷପରେ, ନିଜ ଅବସରକାଳୀନ ଟଙ୍କାରୁ ପ୍ରାୟ ୮୦ ହଜାରଟଙ୍କା ଖର୍ଚ୍ଚ କରି, କୃଷ୍ଣ ବହିକୁ ନିଜେ ନିଜେ ଛାପିଲା, କାରଣ ଜଗମୋହନ ରାମାୟଣର ଶୁଦ୍ଧ ସଂସ୍କରଣକୁ କେହି ଛାପିବାକୁ ରାଜି ହେଲେ ନାହିଁ ସେ ଟଙ୍କାର ଦଶ ଭାଗ ବି କୃଷ୍ଣ ଫେରି ପାଇନାହିଁ । ଏହାହିଁ ଓଡ଼ିଶା ! ଏହାହିଁ ଆମ ଓଡ଼ିଆଙ୍କର ନିଜ ଜାତି, ନିଜ ଐତିହ୍ୟ ଓ ନିଜ ଭାଷା ଓ ସାହିତ୍ୟ ପାଇଁ ପ୍ରୀତି ! କୃଷ୍ଣ ହୁଏତ ତାର ଚିରାଚରିତ ଢଙ୍ଗରେ ଏସବୁ କଥାକୁ ଆଡ଼େଇ ଆଡ଼େଇ ଦିଅନ୍ତା, କହନ୍ତା, 'ଛାଡ଼, ଛାଡ଼, ଅଯଥା ମୁଣ୍ଡ ଖରାପ କରନା । କାମ କରିବାକୁ ହେବ, କରି ଯା, ତାର ଅସଂଖ୍ୟ ଛାତ୍ର ତାକୁ ସେହିପରି ଭାବରେ ଦେଖିଛନ୍ତି । ଆମେ ବନ୍ଧୁମାନେ ସେହିପରି ଭାବରେ ଗୁଣୀ ହେଉଛୁ ।

ଏ ମୋର ପରମ ସୌଭାଗ୍ୟ ଯେ ମୁଁ କୃଷ୍ଣ ପରି ବନ୍ଧୁ ଜୀବନରେ ପାଇଥିଲି ।

❐ *ପୂର୍ବତନ ଇଂରାଜୀ ପ୍ରଫେସର*
*ଉତ୍କଳ ବିଶ୍ୱବିଦ୍ୟାଳୟ*

# କୃଷ୍ଣ

**ପ୍ରଫେସର ଦେବୀ ପ୍ରସନ୍ନ ପଟ୍ଟନାୟକ**

ଓଡ଼ିଆରେ ଗୋଟିଏ କଥା ଅଛି, ଥିଲେ ଚିରାକନା ହଜିଲେ ମାଠ । ଏହା ଅନେକାଂଶରେ ସତ । କିନ୍ତୁ ଜୀବନରେ ଏପରି କେତେକ ଜିନିଷ ଅଛି, ଯେଉଁଠି ଥିଲେ ମାଠ, ହଜିଲେ ବି ମାଠ, କୃଷ୍ଣ ସହିତ ମୋର ବନ୍ଧୁତା ଏଇ ପର୍ଯ୍ୟାୟର । ସତରେ କୃଷ୍ଣ । ରାଜେନ୍ଦ୍ର, ଆମକୁ ଚତୁର୍ବାମୂର୍ତ୍ତି ବୋଲି କହୁଥିଲେ ।

ଓଡ଼ିଶାରେ ପାଠୁଆ ଲୋକଙ୍କର ଘୋର ଅଭାବ । ଡିଗ୍ରୀଧାରୀ ବହୁତ କିନ୍ତୁ ପାଠୁଆ କମ୍ । ଗୋଟିଏ କଥା ମନେହେଲେ ବଡ଼ ଦୁଃଖ ଲାଗେ । ଆମେ କିଏ କି କାମ କରୁଚୁ ଏକଥା ଅଳ୍ପ ଲୋକେ ଜାଣନ୍ତି । ଜାଣିବା ଆଗ୍ରହ ବି ବହୁତ ଲୋକଙ୍କର କମ । ଯେତେବେଳେ ଲୋକେ ମତେ ପଚାରନ୍ତି,କୃଷ୍ଣବାବୁ ଯେ ଏତେକାମ କରିଛନ୍ତି ଆମେ ଜାଣି ନଥିଲୁ ମତେ ଅବାକ୍ ଲାଗେ । ମୁଁ ତ



Digitized by srujanika@gmail.com

ଭାବୁଚି ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ଦୃଷ୍ଟିରୁ ଦେଖିଲେ କୃଷ୍ଣର ମୃତ୍ୟୁ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଏକ ଯୁଗର ଅବସାନ ।

କୃଷ୍ଣ ଏକୁଟିଆ ସାରଳା ମହାଭାରତ, ଦାଣ୍ଡିରାମାୟଣ, ଭାଗବତ, ହରିବଂଶ ଓ ନୃସିଂହପୁରାଣ ଶୁଦ୍ଧପାଠ କରିଚି । ଓଡ଼ିଆରେ ଅସଂଖ୍ୟ ପୋଥି ସମ୍ପାଦନ କରି ତହିଁରେ ମୁଖବନ୍ଧ ମାନ ଲେଖିଛି । ଅସଂଖ୍ୟ ପ୍ରବନ୍ଧରୁ କିଛି ଅପ୍ରକାଶିତ । ସିଏ ଯଦି କୌଣସି ବିଦେଶୀ ରାଜ୍ୟରେ ଜନିଥାନ୍ତା ତେବେ ସିଏ ବଡ଼ରେ ଗଣାହୋଇଥାନ୍ତା । ଓଡ଼ିଶାରେ ଜନ୍ମହୋଇ ଏ ପ୍ରକାର ସ୍ୱୀକୃତି ଆଶା କରିବା ବୃଥା ।

କୃଷ୍ଣ ପାଖରେ ଶହେରୁ ଅଧିକ ଛାତ୍ର ରହି ପି.ଏଚ.ଡ଼ି. କରିଛନ୍ତି । ଏଥିରେ ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ମଧ୍ୟ ଯୁଗୀୟ ଧାରା ସମ୍ବନ୍ଧରେ ବିଶେଷ ଆଲୋଚନା ହୋଇଛି । ଏଇ ଯୁଗମାନଙ୍କ ବିଷୟରେ କୃଷ୍ଣ ଆମମାନଙ୍କ ପାଇଁ ଶ୍ରେଷ୍ଠ ପ୍ରମାଣ । ସିଏ ଯଦି ଆମକୁ କୌଣସି ବିଷୟରେ କିଛି କହେ, ତେବେ ତାହାଯେ ଅକାଟ୍ୟ ଆମେ ଧରି ନେଉଥିଲୁ ।

କୃଷ୍ଣ ମଣିଷଙ୍କ ଭିତରେ ହୀରା । ତାର ସ୍ନେହ ସମ୍ପର୍କ, ତାର ଉଦାରତା, ତାର ଅହଂ ବର୍ଜିତା ବ୍ୟବହାର, ତାର ବିନମ୍ରତା, ତାକୁ ସମସ୍ତଙ୍କର ପ୍ରିୟ କରିଥିଲା । ତାକୁ ଦେଖିଲେ 'ନମ୍ରନ୍ତି ଫଳିନା ବୃକ୍ଷାଃ, ନମ୍ରନ୍ତି ଗୁଣିନା ଜନାଃ' କଥାଟି ମନକୁ ଆସେ ।

ମାର୍ଚ୍ଚ ୨୭ ତାରିଖ ସଞ୍ଜରେ ଭୁବନେଶ୍ୱରରେ ପହଞ୍ଚିଲି । ୨୮ ସକାଳେ କୃଷ୍ଣ ଅସୁସ୍ଥତା ଖବର ପାଇଲି । ୨୮ ଉପରଓଳି ରାଜେନ୍ଦ୍ର, ଯତିଭାଇ ଓ ଗଣେଶ୍ୱରଙ୍କୁ ଧରି କଟକ ଗଲି । କଟକ ନର୍ସିଂହୋମରେ ସେ ଥାଏ । ମତେ ଦେଖି ଖୁସି ହେଲା ପରି ଲାଗିଲା । ମୁଁ ଯେତେବେଳେ ଶୁଣିଲି ଯେ ପେଟ ଖୋଲିଲା ପରେ ସାଙ୍ଗେ ସାଙ୍ଗେ ବନ୍ଦ କରିଦିଆଗଲା, ସେତେବେଳେ ମନରେ ପାପ ଛୁଇଁଲା । ପଚାରି ବୁଝିଲି ଯେ କୋଲନ ଓ ଲିଭର ଏତେ ଖରାପ ଯେ ତାକୁ ଛୁଇଁବାକୁ ଡାକ୍ତର ନାରାଜ ହେଲେ । ତେଣୁ ବନ୍ଦ କରି ଦିଆଗଲା । ତାର ଦି ତିନି ଦିନ ପରେ ପୁଣି ଯେତେବେଳେ ଗଲି ଶୁଣିଲି ଯେ ଜଣ୍ଡିସ ହୋଇଚି । ଜଣ୍ଡିସ ହେଇଚି ଯିବାର ପରୁଆନା । ତାପରେ ତାକୁ ଘରକୁ ନେଇ ଆସିଲେ । ମୁଁ ଘରକୁ ଗଲି । ତା ମୁଣ୍ଡରେ ହାତ ବୁଲେଇ ପଚାରିଲି କଷ୍ଟ ହେଉଚି ? ସେ କହିଲା ନା । କିନ୍ତୁ ମୁଁ ଲକ୍ଷ୍ୟ କଲି ଯେ ତାର ଚିହ୍ନିବା ଢେଉପରି ଗତି କରୁଚି ।

ପରଦିନ ସକାଳ ୬ଟା ବେଳେ ଯତି ଭାଇ ଯେତେବେଳେ କହିଲେ ଯେ କୃଷ୍ଣ ଚାଲିଗଲା, ସେତେବେଳେ ମନେହେଲା ଯେ ମୋ ଦେହରୁ କିଛି ଅଂଶ ଚାଲିଗଲା । ସକାଳୁ ଯତିଭାଇ ମତେ ନେଇଗଲେ ଦେଖିଲି କୃଷ୍ଣ କଡ଼େଇ ହୋଇ ଶୋଇଚି । ସବୁ ଶାନ୍ତ । ସାନପିଲା ଶୋଇଗଲା ପରି ପ୍ରଶାନ୍ତ ଦେଖି ମନ ଭିତରଟା କ'ଣ ହୋଇଗଲା । ଦଶଟା ବେଳକୁ ମୃତ ଶରୀର ପୁରୀ ଗଲା । ତା ପଛେ ପଛେ ଗୋବର ପାଣି ପକାହେଲା ବେଳେ ମନକୁ ଆସିଲା,

ଘରର ଘରଣୀ ଦେହ କିଳାଉଥିବେ<br>
ଘେନି ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ।



Digitized by srujanika@gmail.com

କୃଷ୍ଣ ମୋର ସହପାଠୀ । ଏକାସାଙ୍ଗରେ ଦିବର୍ଷ ଏମ.ଏ. ପଢ଼ିଛୁ, ଯଦିଓ ପରିଚୟ ବହୁ ଆଗରୁ । ବହୁକାମ ଆମେ ଏକାଠି କରିଛୁ । ମରଣର ଏତେ ପାଖରେ ଠିଆ ହୋଇ ସେ ସବୁ ଲେଖିବା ଅସମ୍ଭବ । ଏ ସବୁ ଲେଖିବା ପାଇଁ ଯେଉଁ ଦୂରତାର ପ୍ରୟୋଜନ ତା କେବେ ଆସିବ ବି ନାହିଁ କିଏ ଜାଣେ ? ତେବେ ଗୋଟିଏ କଥା । ଏକା ସାଙ୍ଗରେ କାମ କରିବା ଭିତରେ କୃଷ୍ଣ ଯେ କୁଟୁମ୍ବରୁ ପରିବାର ଆଉ ପରିବାରରୁ ମୋ ନିଜ ଅହଂର ଅଙ୍ଗ ହୋଇ ଯାଇଚି । ଏ ବିଷୟରେ ତିଳାର୍ଦ୍ଧେ ସନ୍ଦେହ ନାହିଁ । ସେଇଥିପାଇଁ ତାର ଚାଲିଯିବା ବେଶି କାଟୁଚି ।



# ଗବେଷକ ବନ୍ଧୁ କୃଷ୍ଣବାବୁ

**ଶ୍ରୀଯୁକ୍ତ ଦୁଃଖଶ୍ୟାମ ପଟ୍ଟନାୟକ**

**ଟିକିଏ ଆଗରୁ-**

ବନ୍ଧୁ ଡକ୍ଟର କୃଷ୍ଣଚରଣ ସାହୁ ଆଉ ଇହ ଜଗତରେ ନାହାନ୍ତି । ମାତ୍ର ୨୦/୨୧ ଦିନ ତଳେ ସାହିତ୍ୟ ଏକାଡ଼େମୀର ଗୋଟିଏ ସଭାରେ ଦେଖାହୋଇଥିଲା । ସଭାପରେ ଖୁବ୍ ଥଟ୍ଟା ପରିହାସ ହେଲା । ବାହୁରେ ହାତ ପକାଇଲି । ଦେଖିଲି ଚମଡ଼ାଟା ଲୋଳ ଚମ ହୋଇ ଦୋହଲୁଛି । ଆଶ୍ଚର୍ଯ୍ୟ ହୋଇ ପଚାରିଲି - କ'ଣ ହୋଇଛି ? ସେ କହିଲେ - କିଛି ଭଲ ଲାଗୁନାହିଁ । ମୁଁ କହିଲି - 'ଟିକେ ଭଲ ଡାକ୍ତରଙ୍କୁ ଦେଖାଇ ପରୀକ୍ଷା କରାଇଦିଅନ୍ତୁ ଇତ୍ୟାଦି । କଟକ ଯାଇ ଅପରେସନ୍ ହୋଇଛନ୍ତି । ଏ ସବୁ ମୁଁ ଜାଣିଲି ବହୁତ ପରେ । ଅର୍ଥାତ୍ ଅପରେସନ ହୋଇ ଫେରିବାର ମାତ୍ର ୨ଦିନ ପୂର୍ବରୁ ରାଜେନ୍ଦ୍ରଭାଇ ଓ ଦିନନାଥ କହିବାରୁ । ତାପରେ ୪ ତାରିଖରେ ତାଙ୍କଝିଅ ଦେବୀଠାରୁ ଫୋନ୍ ପାଇ ଦେଖିବାକୁ ଗଲି । ଗେଟ୍ ଭିତରେ ପଶୁ ପଶୁ ଦେଖିଲି ସାର୍ (ବିଧୁବାବୁ) ଫେରୁଛନ୍ତି । ପଚାରିଲି - 'ଅବସ୍ଥା କିପରି ?' ସାର୍ ମନଦୁଃଖରେ ଭାଙ୍ଗିପଡ଼ି କହିଲେ - 'ଆଉ କ'ଣ ଅଛି ? ଏ ସବୁ ଭଗବାନଙ୍କର ଲୀଳା ।' ଭିତରକୁ ଗଲି । ଦେଖିଲି ଅପରେସନ୍ ପରେ ପେଟସାରା ନଳା ଗୁଡ଼ିଆ ହୋଇ ନାକି ଓ ପରିସ୍ରା ନଳୀରେ ଟ୍ୟୁବ୍ ଲାଗିଛି ଏବଂ ବନ୍ଧୁ ମୋର ହଳଦିଆ ଦିଶୁଛି । ମୁଣ୍ଡଟିକୁ ଆଉଁସି ଦେଇ ପଚାରିଲି -'କଷ୍ଟ ହେଉଛି' ? ସେ କହିଲେ 'ନା ଭଲଲାଗୁଛି ।' ଯତି ବାବୁର କଥା ପଡ଼ିବାରୁ ପଚାରିଲେ - 'ଯତି କିପରି ଅଛି ?' ନିଜେ ମରଣ ମୁଖରେ ଥାଇ ମଧ ବନ୍ଧୁର କୁଶଳ ଜିଜ୍ଞାସାରୁ ସେ ଯେ 'ଦରଦୀ ବନ୍ଧୁଟିଏ' ଥିଲେ ଏଥିରେ ସନ୍ଦେହ ନାହିଁ । ତା'ପରେ ରାଜେନ୍ଦ୍ର ଭାଇ ଆସି ପହଞ୍ଚିଛନ୍ତି । ଆମେ ଦୁହେଁ ପୁଣି ଦେଖିବାକୁ ଗଲୁ । ତାଙ୍କୁ ନିଦ ଲାଗିଆସୁଥାଏ ବୋଲି ଶୋଇ



Digitized by srujanika@gmail.com

ବିଶ୍ରାମରେ କିଛି ଫେରିଆସିଲୁ । ୬ ତାରିଖ ରବିବାର ସକାଳେ ଗାଧୋଇ ପୂଜା ଘରକୁ ଯାଉଥାଏ । ଯତି ବାବୁଠାରୁ ଫୋନ୍ ଆସିଲା ଯେ- ''ଦୁଃଖିଶ୍ୟାମ ବାବୁ ! ଖବର ପାଇଲଣି ? କୃଷ୍ଣ ଆଉ ନାହିଁ ।'' ଆଖି ଲୁହରେ ଭରିଗଲା । ଆଉ କ'ଣ ଦେଖିବାରେ ରହିଲା ? ସେ ଶରୀରଟା ଯାହାକୁ କାଟି ଡାକ୍ତରମାନେ ଠିକ୍ କରିବାକୁ ଚାହୁଁଥିଲେ ସେତ ଅଲୋଡ଼ା ହୋଇଗଲା ବୋଲି ଆତ୍ମାପୁରୁଷ ଛାଡ଼ି ପଳାଇଲା । ଏ ଶରୀରଟା ତ ମୋର ବନ୍ଧୁ ନୁହେଁ ଯେ ମୋତେ ଅନେଇ ହସି ଥଟ୍ଟା କରିବ, କଥା କହିବ .. । ଏ ଶରୀର ସହିତ ଯେଉଁ ପତ୍ନୀ, ପୁତ୍ର, କନ୍ୟାମାନଙ୍କର ସମ୍ବନ୍ଧ, ସେମାନେ ବି ଏହାକୁ ଆଉ ରଖିବେ ନାହିଁ ଆଉ କିଛି ସମୟପରେ ପୋଡ଼ିଦେବେ । ମୁଁ ଶବ ଦେଖିପାରେ ନାହିଁ । ସେ ଦୃଶ୍ୟ ଦେଖିପାରିବି ନାହିଁ ବୋଲି ଆଉ ଗଲି ନାହିଁ । ପୂଜାକୁ ତ ଯାଉଥିଲି, ପୂଜାରେ ବସି ବନ୍ଧୁର ଆତ୍ମାର ସଦ୍‌ଗତି ହେଉ ବୋଲି ଲୁହଗଡ଼ାଇ ପ୍ରାର୍ଥନା କଲି ।

## ପ୍ରତିକୂଳ ଭିତରେ ବି ଗବେଷଣା-

କୃଷ୍ଣବାବୁ ସହ ମୋର ସମ୍ପର୍କ ୧୯୭୦ଠାରୁ । ସେ ରାଞ୍ଚିରୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ରିଡ଼ର ହୋଇ ଆସିବା ପରେ ମୋ ଅଫିସ ଓ ବସାପାଖ ବିଜେବି ନଗରରେ ଭଡ଼ାଘରେ ରହୁଥିଲେ । ସେ ତାଙ୍କ ପତ୍ନୀ, ତାଙ୍କ ବଡ଼ଝିଅ କୁମୁଲୁ ଓ ମୁଁ ଅନେକ ସମୟରେ ତାସ୍ ଖେଳୁଥାଉ । ଏ ତାସ୍ ଖେଳିବା ମୂଳରେ ଗୋଟିଏ ଉଦ୍ଦେଶ୍ୟ ଥାଏ ତାଙ୍କର ମାନସିକ ରୋଗଗ୍ରସ୍ତ ପତ୍ନୀଙ୍କ ମନକୁ ପ୍ରସନ୍ନ ରଖିବା । ତାଙ୍କର ପାରିବାରିକ ସୁଖଦୁଃଖ ସହିତ ମୁଁ ଅତି ନିବିଡ଼ ଭାବରେ ସଂପୃକ୍ତ ଥିଲି । ବନ୍ଧୁ ଭାବରେ ତଥା ଜ୍ୟୋତିଷ ଜାଣିଥିବାରୁ ସେ ସବୁକଥା କହୁଥିଲେ ଓ ପଚାରୁଥିଲେ ପତ୍ନୀଙ୍କର ମାନସିକ ଅସୁସ୍ଥତା ଭିତରେ ଏବଂ ପତ୍ନୀ ବିୟୋଗ ପରେ ଏଡ଼େବଡ଼ ସଂସାରକୁ ସେ ଏକୁଟିଆ ହୋଇ ନିଜର ଗବେଷଣା କାର୍ଯ୍ୟକୁ ଯେପରି ଅବ୍ୟାହତ ରଖିଥିଲେ, ତାହାର ତୁଳନା ନାହିଁ । ସମସ୍ତ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ନିଜର କର୍ତ୍ତବ୍ୟ ସାଧନ କରିବାରେ ସେ ଅତି ଦକ୍ଷଥିଲେ ।

## ପ୍ରାଚୀନ ଗ୍ରନ୍ଥର ନିପୁଣ ସଂପାଦକ

କୃଷ୍ଣ ବାବୁ ଯେତେବେଳେ ପ୍ରଥମେ ଭୁବନେଶ୍ୱର ଆସିଲେ ସେତେବେଳେ ସେ ସଂଗ୍ରହ କରିଥିବା ତାଳପତ୍ର ପୋଥିଗୁଡ଼ିକୁ ଆଣି ପୋଥି ସଂଗ୍ରହ କରିବା ଓ ପୋଥି ସଂପାଦନ କରିବା-ମୋପରି ତାଙ୍କର ଏକ ବ୍ୟକ୍ତିଗତ ନିଶାଥିଲା । ସେ ତାଙ୍କ ପୋଥିଗୁଡ଼ିକର ଗୋଟିଏ ଡେସକ୍ରିପ୍‌ଟିଭ୍ କାଟେଲଗ୍ ସାଇକେଲୋଷ୍ଟାଇଲ୍‌ରେ ଛାପିଥାନ୍ତି । ତାଙ୍କ ସହ ପୋଥି ସଂପାଦନା ବିଷୟରେ ଅନେକ ଚର୍ଚ୍ଚା ହୋଇଛି । ପୋଥି ସଂପାଦନା ଏକ ବିଜ୍ଞାନ । ଏହା ଓଡ଼ିଶାରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କଠାରୁ ମୁଁ ଓ ଡକ୍ଟର କୃଷ୍ଣଚରଣ ସାହୁ ହିଁ ଜାଣିଛୁ । ଚାକିରି କ୍ଷେତ୍ରରେ ସଂପାଦକ ଭାବରେ ଦୀର୍ଘ ୨୯ ବର୍ଷ ଅଭିଜ୍ଞତା ଅର୍ଜନ କଲରି । ସେ ଅଭିଜ୍ଞତାର ମୂଲ୍ୟ ସମାଜ ଶୋଷକ ଶାସକ ଗୋଷ୍ଠୀ ଏକ ସୁପର୍ କିରାଣୀ ଗୋଷ୍ଠୀର ହୋଇଥିବାରୁ ଯେପରି କିଛି ବୁଝିଲେ ନାହିଁ କି ମର୍ଯ୍ୟାଦାବନ୍ତ ଭାବରେ କାମ କରାଇଦେଲେ ନାହିଁ ଠିକ୍ ସେହିପରି ଡକ୍ଟର କୃଷ୍ଣଚରଣ ସାହୁଙ୍କର ସଂପାଦନ ଜ୍ଞାନର ବିନିଯୋଗ ଏ ମୂର୍ଖ ଓଡ଼ିଆ ଜାତି କରିପାରିଲା ନାହିଁ । ସଂପାଦନ କଳାରେ ଯେଉଁ ବୈଜ୍ଞାନିକ ଦୃଷ୍ଟିକୋଣ-ତାହା ମୁଁ କୃଷ୍ଣବାବୁଠାରେ ଦେଖିଥିଲି । ରାମକଥା ଉପରେ ଗବେଷଣାକରି ଆନ୍ତର୍ଜାତିକ ଖ୍ୟାତି



Digitized by srujanika@gmail.com

ଲାଭ କରିଥିବା ଫାଦର କ୍ୟାମିଲ୍ ବୁଲ୍‌କେଙ୍କ ସମ୍ପର୍କରେ ଆସି କୃଷ୍ଣବାବୁଙ୍କର ଗବେଷଣାରେ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ସ୍ୱତଃ ଆସିଯାଇଥିଲା । ସେ ଅନେକ ଛୋଟ ବଡ଼ ପ୍ରାଚୀନ ଗ୍ରନ୍ଥ ଅତ୍ୟନ୍ତ ନିପୁଣ ଭାବରେ ସଂପାଦନ କରିଛନ୍ତି । ତାଙ୍କ ସଂପାଦିତ ହରିବଂଶ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ନିକଟରେ ଆତ୍ମପ୍ରକାଶ ଲାଭ କରିଛି । ବହିଟି ଛାପିବାବେଳେ ଗ୍ରନ୍ଥମାନଙ୍କର କାଳ ନିରୂପଣ ମତେ ପଚାରି ସେ କହିଥିଲେ । ସେ ଗ୍ରନ୍ଥ ଉଦ୍‌ଘାଟିତ ବି ହେଲା । କୃଷ୍ଣବାବୁ ଯାଇ ଏବେ ସ୍ୱର୍ଗରେ । ନିଜ ଗ୍ରନ୍ଥଟିରୁ ଖଣ୍ଡିଏ ସେ ପାଇପାରିଲେ ନାହିଁ ।

'ତାଙ୍କର ଭାଗବତ'-

ପଣ୍ଡିତ ଓଡ଼ିଆ ଗ୍ରନ୍ଥ ସଂପାଦନା କଲେ ସବୁବେଳେ ସଂସ୍କୃତ ଦୃଷ୍ଟିରେ ଦେଖିଥାଏ । ଜଗନ୍ନାଥ ଦାସଙ୍କର ଭାଗବତ ଓଡ଼ିଆର ଘରେ ଘରେ ପ୍ରଚଳିତ । କିନ୍ତୁ ଆମେ ଯେଉଁ ଭାଗବତ ବଜାରରୁ କିଣି ପଢୁଛୁ ସେ ସବୁ ଅତ୍ୟନ୍ତ ଭ୍ରମ ପ୍ରମାଦ ପୂର୍ଣ୍ଣ । ଏଣୁ ରାଜକିଶୋର ଦାସ୍ ଜଗନ୍ନାଥ ଦାସଙ୍କ ଭାଗବତର ଏକ ଶୁଦ୍ଧ ସଂସ୍କାରଣ ପ୍ରକାଶ କଲେ । ଏହି ଶୁଦ୍ଧ ସଂସ୍କରଣ ଅପେକ୍ଷାକୃତ ଶୁଦ୍ଧ ହେଲେ ହେଁ ଏହାକୁ ସଂସ୍କୃତ ଭାଗବତ ସହ ମିଳାଇ ସଂସ୍କୃତ ଭାଗବତ ସହ ସମାନ କରିବା ଲାଗି ଏଥିରେ ଅନେକ ସଂଯୋଜନ ବିଯୋଜନ ହେବା ଫଳରେ ଜଗନ୍ନାଥ ଦାସଙ୍କ ଲିଖିତ ଭାଗବତ ଓ ତାର ବୈଶିଷ୍ଟ୍ୟ ପାଠକମାନଙ୍କ ନିକଟରେ ପହଞ୍ଚି ପାରୁନାହିଁ । ବହୁ ଶ୍ରମ କରି ଅନେକ ପୋଥି ସଂଗ୍ରହ କରି କୃଷ୍ଣବାବୁ ଯେଉଁ ଭାଗବତ ସଂପାଦନା କରିଛନ୍ତି ସେଥିରେ ବୈଜ୍ଞାନିକ ରୀତିରେ ଜଗନ୍ନାଥ ଦାସଙ୍କ ଭାଷା ଓ ଭାବର ଭାଗବତଟିଏ ପ୍ରସ୍ତୁତ ହୋଇଛି । ଏହାର ପ୍ରକାଶ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପ୍ରସ୍ତୁତ ହେଉଥିବା ବେଳେ ଗଭୀର ଷଡ଼ଯନ୍ତ୍ରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଂପାଦନ କଳାରେ ଅନଭିଜ୍ଞ ଏକ ଖୋସାମଦିଆ ପଣ୍ଡିତ ଦ୍ୱାରା ସରକାରୀ ଚାପରେ ଭାଗବତର ଏକ ସଂସ୍କରଣ ତରବରିଆ ଛାପିଦେବା ଫଳରେ କୃଷ୍ଣବାବୁଙ୍କ ଶୁଦ୍ଧ ଭାଗବତ ଆଉ ଲୋକ ଲୋଚନକୁ ଆସିପାରିଲା ନାହିଁ । ଓଡ଼ିଆଙ୍କ ହାତରେ ସବୁକିଛି ମାଙ୍କଡ଼ ହିଁ ହୁଏ । ଏ ଜାତି ସାରଳା ମହାଭାରତକୁ ଯାହା କଲ୍ୟାଣ, ସଂପାଦନା ସଂସ୍ଥା ମାଧମରେ ଯେପରି ଓଡ଼ିଶାର ସଂସ୍କୃତ ଗ୍ରନ୍ଥମାନଙ୍କୁ ଭ୍ରମ ପ୍ରମାଦ ସଙ୍କୁଳ କରି ଛାପିଲା ଏବଂ ସର୍ବୋପରି ଭାଷା ତାତ୍ତ୍ୱିକ ଅଭିଧାନ ନାମରେ ଯେଉଁ ଅର୍ଥଶ୍ରାଦ୍ଧ କଲା ସେ ଅର୍ଥର ବିନିଯୋଗରେ ସାମାନ୍ୟତମ ନିଷ୍ଠା ଧଳାହାତୀ ମାନଙ୍କର ଥିଲେ ଏ ଜାତିର ସାରସ୍ୱତ ସମ୍ପଦର ଅଭିବୃଦ୍ଧି ଘଟିଥାନ୍ତା । କୃଷ୍ଣବାବୁଙ୍କ ଭାଗବତ ଛପାହୋଇଥିଲେ ଓଡ଼ିଆଜାତି ଜଗନ୍ନାଥ ଦାସଙ୍କୁ ପାଇପାରିଥାନ୍ତା । ସାରଳା ମହାଭାରତ ଯେପରି ସଂସ୍କୃତ ମହାଭାରତର ଅନୁକରଣ ନୁହେଁ, ଠିକ୍ ସେହିପରି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ସଂସ୍କୃତ ଭାଗବତ ନୁହେଁ । ସାରଳା ମହାଭାରତରେ ଆମେ ଯେପରି ଓଡ଼ିଆ ସାରଳା ଦାସଟିକୁ ଦେଖିବାକୁ ପାଉ ଏବଂ ଜଗମୋହନ ରାମାୟଣରେ ଆମେ ଯେପରି ଓଡ଼ିଆ ବଳରାମ ଦାସଟିଏ ଦେଖିବାକୁ ପାଉ ସେପରି ଓଡ଼ିଆ ଜଗନ୍ନାଥଦାସଟିକୁ ଓଡ଼ିଆଭାଗବତରେ ଦେଖିବାକୁ ପାଉନାହୁଁ । ସାରଳା ଦାସ ଓ ବଳରାମ ଦାସ ଯେପରି ମୌଳିକ ସ୍ରଷ୍ଟାର ଗୌରବ ଅର୍ଜନ କରିପାରିଛନ୍ତି, ଜଗନ୍ନାଥ ଦାସ ଆମର ଅଜ୍ଞ ହିନ୍ଦୀ ଅନୁବାଦକ ପଣ୍ଡିତଙ୍କ ହାତରେ ପଡି ସଂସ୍କୃତ ଭାଗବତର ଅନୁବାଦଟିଏ ହୋଇଛନ୍ତି ସିନା ସ୍ରଷ୍ଟାଟିଏ ହୋଇ ଠିଆ ହୋଇପାରିନାହାଁନ୍ତି । କୃଷ୍ଣବାବୁଙ୍କୁ ଏହା ଅତି ବାଧିଥିଲା । ଏହି ଚିନ୍ତା ତାଙ୍କୁ ଅବସନ୍ନ କରିଦେଇଥିଲା ।



Digitized by srujanika@gmail.com

ତାଙ୍କ ନିୟମିତ ଜୀବନରେ ଏହି ଦୁରାରୋଗ୍ୟ ବ୍ୟାଧିର ମୂଳରେ ଯଦି ଏକ ସୁଦୂର କାରଣର କେହି ଅନୁସନ୍ଧାନକରେ ତେବେ ତାଙ୍କ ପ୍ରତି କରାଯାଇଥିବା ଅବିଚାରରୁ ହିଁ ତାଙ୍କର ମୃତ୍ୟୁ ବୋଲି କୁହାଯିବ ।

## ପ୍ରାଣ : 'ଜଗମୋହନ ରାମାୟଣ'

କୃଷ୍ଣବାବୁ ଦେଖିଲେ ସାରଳା ମହାଭାରତ ଯେନ କେନ ପ୍ରକାରେଣ ଛାପି ସରକାର ସାରଳାଦାସଙ୍କୁ କିଛି ପରିମାଣରେ ଜୀବିତ ରଖିପାରିଲେ ଏବଂ ଜଗନ୍ନାଥ ଦାସଙ୍କ ଭାଗବତକୁ ଭଲ କାଗଜରେ ଅନଭିଜ୍ଞ ହିନ୍ଦୀ ପଣ୍ଡିତଙ୍କଦ୍ୱାରା ଭୁଲ ଅର୍ଥସହ ଛାପି ବଜାରରେ ମିଳୁଥିବା ଭଲ ସଂସ୍କାରଣ ପାଇବାରେ ଲୋକଙ୍କୁ ବଞ୍ଚିତ କରି ଜଗନ୍ନାଥ ଦାସଙ୍କ ଶ୍ରାଦ୍ଧ କରିଦେଲେ । ବାକି ରହିଲେ ବଳରାମଦାସ । କୃଷ୍ଣବାବୁ ଜୀବନ ବ୍ୟାପି ସାଧନା କରିଥିଲେ ଜଗମୋହନ ରାମାୟଣର ସଂପାଦନା ଲାଗି । ଏତେ ବଡ଼ ବହି ଛାପିବ କିଏ ? ତେଣୁ ତାଙ୍କ ଜୀବନ ବ୍ୟାପି ସାଧନାର ସୌଧ ଜଗମୋହନ ରାମାୟଣ ଗ୍ରନ୍ଥକୁ ସେ ନିଜେ ଅର୍ଥ ବ୍ୟୟ କରି ବହୁ କଷ୍ଟରେ ପ୍ରକାଶ କରିଥିଲେ । ଓଡ଼ିଆ ଲୋକେ ଓଡ଼ିଆଭାଷାରେ ଓଡ଼ିଆ ଲେଖକର ନିଜତ୍ୱ ଥାଇ ଅବିକଳ ଭାବରେ ଗ୍ରନ୍ଥଟିଏ ପଢ଼ିବାକୁ ପାଆନ୍ତୁ ଏବଂ ସେଥିରେ ଓଡ଼ିଆ କବିର ମୌଳିକତା ଭିତରେ ତାର ଅନ୍ତରାତ୍ମା ସହିତ ପରିଚିତ ହୁଅନ୍ତୁ ଏବଂ ନିଜେ ଭଲ ଓଡ଼ିଆ କବିର ଉତ୍ତରଦାୟାଦ ଭାବରେ ଗର୍ବ ଅନୁଭବ କରନ୍ତୁ ବୋଲି- ସେ ଚାହୁଁଥିଲେ । ଜଗମୋହନ ରାମାୟଣ ହିଁ ତାଙ୍କର ପ୍ରାଣଥିଲା । ଏହାକୁ ସେ ନିବିଡ଼ ଭାବରେ ଅଧ୍ୟୟନ କରିଥିଲେ ।

ଡକ୍ଟର କୃଷ୍ଣଚରଣ ସାହୁ ସ୍ୱଦେହରେ ଆଉ ନାହାଁନ୍ତି । ଗ୍ରନ୍ଥ ସଂପାଦନା କ୍ଷେତ୍ରରେ ତାଙ୍କର ଶ୍ରମସାଧନା ଓ ବୈଜ୍ଞାନିକ ଗବେଷଣା ସମସ୍ତ ଗବେଷକଙ୍କ ପାଇଁ ଦୀପ୍ତ ଆଲୋକସ୍ତମ୍ଭ ଭଳି ମାର୍ଗ ପ୍ରଦର୍ଶନ କରିବାରେ ସହାୟକ ହେବ । ପଞ୍ଚସଖା ଏକ ସମୟର କି ନୁହେଁ ଏବଂ ଦୀନକୃଷ୍ଣ ଏକ ନା ଅନେକ ଏପରି ଅନେକ ଐତିହାସିକ ତତ୍ତ୍ୱ ଏକ ନା ଅନେକ ଏପରି ଅନେକ ଐତିହାସିକ ତତ୍ତ୍ୱ ଓଡ଼ିଆ ସାହିତ୍ୟର ଇତିହାସରେ କୃଷ୍ଣବାବୁଙ୍କୁ ନିଶ୍ଚୟ ଉଲ୍ଲେଖଯୋଗ୍ୟ ଭାବରେ ଗ୍ରହଣ କରିବ । ଆଜି ତାଙ୍କର ଅନାବିଳ ବନ୍ଧୁତ୍ୱ, ଗବେଷଣାରେ ନିଷ୍ଠା ଏବଂ ସରଳ ଅମାୟିକ ବ୍ୟବହାରକୁ ସମ୍ବଳକରି ଆମେ ତାଙ୍କ ଆତ୍ମାର ସଦ୍‌ଗତି କାମନା ବ୍ୟତୀତ ଆଉ କ'ଣ ବା କରି ପାରିବୁ ? ଜଗମୋହନ ରାମାୟଣ ଭିତରେ ତାଙ୍କୁ ଦେଖିହେବ । ତାଙ୍କ ରାମାୟଣଟିର ପ୍ରଚାର ଓ ପ୍ରସାର ହିଁ ତାଙ୍କ ପ୍ରତି ସମ୍ମାନ ହେବ ।





Digitized by srujanika@gmail.com

# ଶ୍ରଦ୍ଧାଞ୍ଜଳି

**ଶ୍ରୀଯୁକ୍ତ ମତଲୁବ୍ ଅଲୀ**

ହଠାତ୍ ପ୍ରଫେସର କୃଷ୍ଣଚରଣ ସାହୁଙ୍କ ଅସୁସ୍ଥତାର ଖବର ପାଇ ମୁଁ ଗତ ୫ ତାରିଖ ସକାଳେ ତାଙ୍କ ଘରକୁ ଯାଇଥିଲି । ମୋ ସହିତ ପ୍ରଫେସର ଗଣେଶ୍ୱର ମିଶ୍ର ଓ ସାହିତ୍ୟ ଏକାଡ଼େମୀର ସଂପାଦକ ଡଃ ହରପ୍ରସାଦ ପରିଚ୍ଛା ପଟ୍ଟନାୟକ ମଧ୍ୟ ଯାଇଥିଲେ । ସେତେବେଳେ ତାଙ୍କ ଅବସ୍ଥା ଆଦୌ ଭଲ ନଥିଲା । ତାଙ୍କ ସହିତ ମୋର ଦୀର୍ଘଦିନରେ ସଂପର୍କଥିଲା । ବାଣୀବିହାରରେ ସେ ଥିବା ସମୟରେ ବହୁ କାର୍ଯ୍ୟକ୍ରମ ଅବସରରେ ମୁଁ ତାଙ୍କ ସଂପର୍କରେ ଆସିଛି ଏବଂ ତାଙ୍କ ଅତି ନିକଟରୁ ଦେଖିଛି ।

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ବିଷୟରେ ତାଙ୍କର କୃତିତ୍ୱ ଓ ଗବେଷଣା ଅତ୍ୟନ୍ତ ଉଲ୍ଲେଖନୀୟ । ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଓ ପ୍ରାଚୀ ପ୍ରକାଶନୀର କାର୍ଯ୍ୟକ୍ରମ ସହିତ ଡଃ ସାହୁଙ୍କର ଏକକ ସାଧନା ଓ ଗବେଷଣା ତୁଳନୀୟ । 'ଜଗମୋହନ ରାମାୟଣ' ସଂପାଦନା ଏବଂ ତାହାକୁ ନିଜେ ପ୍ରକାଶ କରିବା ଘଟଣା ତାଙ୍କର ଭାଷା ସାହିତ୍ୟ ପ୍ରୀତି ଓ ଜାତୀୟ ସ୍ୱାଭିମାନର ପରିଚାୟକ । ଏହା ବ୍ୟତୀତ ସାରଳାମହାଭାରତ ସଂପାଦନା, କହେକୃଷ୍ଣ ଦାସ କବି' ଓ ସର୍ବୋପରି ଓଡ଼ିଆ ରାମ ସାହିତ୍ୟ ସଂପର୍କରେ ତାଙ୍କର ଗବେଷଣା ନିବନ୍ଧ ଆଦି ତାଙ୍କର ଉଲ୍ଲେଖ ଯୋଗ୍ୟ କୃତି । ଏହା ବ୍ୟତୀତ ସେ ରାଞ୍ଚି ଓ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଅଧାପନକରି ଓଡ଼ିଶାର ସୁନାମକୁ ବଜାୟ ରଖିଥିଲେ । ସେ ଅତ୍ୟନ୍ତ ସ୍ନେହୀ ଓ ଛାତ୍ରବତ୍ସଳ ଅଧାପକ ଓ ନିରଳସ ଗବେଷକଥିଲେ । ସେ ଅତ୍ୟନ୍ତ ସରଳ ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ତାଙ୍କର ଆକସ୍ମିକ ଦେହାନ୍ତରେ ମୁଁ ଅତ୍ୟନ୍ତ ମର୍ମାହତ ଓ ତାଙ୍କର ସ୍ୱର୍ଗତ ଆତ୍ମାପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରି ତାଙ୍କର ଶୋକ ସନ୍ତପ୍ତ ପରିବାର ବର୍ଗ, ଆତ୍ମୀୟ ସ୍ୱଜନ ଓ ବିଶେଷକରି ପୁତ୍ର ଶ୍ରୀମାନ ବିଭୂତି ଭୂଷଣ ସମବେଦନା ଜ୍ଞାପନ କରୁଛି ।

❒ *ମାନ୍ୟବର ମନ୍ତ୍ରୀ*
*ଗ୍ରାମ୍ୟ ଉନ୍ନୟନ ବିଭାଗ, ଓଡ଼ିଶା*



Digitized by srujanika@gmail.com

# ଶ୍ରଦ୍ଧାଞ୍ଜଳି

**ପ୍ରଫେସର ଖଗେଶ୍ୱର ମହାପାତ୍ର**

ପ୍ରଫେସର କୃଷ୍ଣଚରଣ ସାହୁ ମୋର ଥିଲେ ଜଣେ ବନ୍ଧୁ । ସହକର୍ମୀ ଏବଂ ପରସ୍ଥିତିକ୍ରମେ ସାମୟିକଭାବେ ପ୍ରତିପକ୍ଷ ମଧ । ବନ୍ଧୁଭାବରେ ମତେ ମୁଗ୍ଧ କରିଥାଏ- ଲଘୁ ଆଳାପ, ସହକର୍ମୀଭାବରେ ଅଗାଧ ପାଣ୍ଡିତ୍ୟ ଏବଂ ପ୍ରତିପକ୍ଷ ଭାବରେ ତାଙ୍କର ମୁହାଁମୁହିଁ କଥା । ଆମେ ଏକତ୍ର ବିଶ୍ୱଭାରତୀରେ କାମ କରିଥିଲୁ । ତା'ପରେ ବିଭିନ୍ନ ବିଷୟରେ ଆମେ ସାଙ୍ଗହୋଇ କାମ କରିଥିଲୁ ଏବଂ ଶେଷରେ ଓଡ଼ିଆ ଶବ୍ଦତାତ୍ତ୍ୱିକ ଅଭିଧାନ ସଂକଳନ କାର୍ଯ୍ୟରେ ସେ ସହଯୋଗୀଥିଲେ । ମତେ ବେଶୀ ଦୁଃଖ ଲାଗୁଛି ଯେ, ଅଭିଧାନର ପ୍ରକାଶିତ ପ୍ରଥମଭାଗ ସେ ଦେଖିପାରିଲେ ନାହିଁ ଏବଂ ଦ୍ୱିତୀୟ ଓ ତୃତୀୟ ଭାଗ ପାଇଁ ଆରମ୍ଭ କରିଥିବା ସଂକଳନକାମ ସେ ଶେଷକରିପାରିଲେ ନାହିଁ । ତାଙ୍କର ତିରୋଧାନ ଫଳରେ ଅଭିଧାନ ସଂକଳନ କାର୍ଯ୍ୟରେ ତାଙ୍କର ସ୍ଥାନ ମୋ ପାଇଁ ଅପୂରଣୀୟ ରହିଗଲା । ଗତ ବର୍ଷ ତାଙ୍କର ଜନ୍ମଦିନରେ ତାଙ୍କ ସଂପାଦିତ ଜଗମୋହନ ରାମାୟଣ ଉନ୍ମୋଚନ ଉତ୍ସବରେ ବହିଟି ଉନ୍ମୋଚନ କରିବାର ଗୌରବ ମୁଁ ଲାଭ କରିଥିଲି ଏବଂ ସେଦିନ ସଂଧ୍ୟାର ସଭା ପରବର୍ତ୍ତୀ ମଜଲିସ୍ ଭୁଲିଯାଇନାହିଁ । କିନ୍ତୁ ଭାଗ୍ୟର କି ବିଡ଼ମ୍ବନା ଯେ ଜନ୍ମତିଥିରେ ମତେ ତାଙ୍କ ଶ୍ରାଦ୍ଧ ସଭାରେ ଯୋଗଦେବାକୁ ପଡ଼ିବ । ମଣିଷ ଜୀବନ ଅସ୍ଥିର । ତେଣୁ ତାଙ୍କର ବିୟୋଗପାଇଁ ମୁଁ ଦୁଃଖିତ ନୁହେଁ କାରଣ ସେ ଯାହା କରିଯାଇଛନ୍ତି ତାହା ତାଙ୍କୁ ଆମ ନିକଟରେ ଚିରଦିନ ଅମର କରି ରଖିବ ।

ଅତି ସାମନ୍ୟ ଘଟଣାରୁ ବ୍ୟକ୍ତିତ୍ୱର ମହତ୍ତ୍ୱ ଓ ବନ୍ଧୁତ୍ୱର ମାଧୁର୍ଯ୍ୟ ମୁଁ ଅନୁଭବ କରିଛି । ମନେପଡୁଛି, ମୋର ଜଣେ ଗବେଷକ ଛାତ୍ରଙ୍କର ଶାନ୍ତିନିକେତନରେ ମୌଖିକ ପରୀକ୍ଷା । ନିର୍ଦ୍ଧାରିତ ପରୀକ୍ଷକ ସମ୍ମତି ଦେଇଛନ୍ତି । ଟ୍ରେନ୍‌ରେ ଟିକଟ୍ ସଂରକ୍ଷଣ କରାଯାଇଛି କିନ୍ତୁ ସାଢ଼େ ପାଞ୍ଚଟାରେ ଜଣାଇଲେ ଯେ ଯାଇପାରବେ ନାହିଁ । ଅନନ୍ୟୋପାୟ ହୋଇ ମୁଁ ଚିଠି ଖଣ୍ଡିଏ ଲେଖି କୃଷ୍ଣବାବୁଙ୍କ ପାଖକୁ ପଠାଇଲି । ସେ ଘରେ ନଥିଲେ । ୬ଟାରେ ଘରକୁ ଫେରି ଚିଠି ପାଇ ଘଣ୍ଟାକ ମଧ୍ୟରେ ପ୍ରସ୍ତୁତ ହୋଇ ଅପେକ୍ଷା କଲେ। ମୋ ଗାଡ଼ିଗଲା, ସେ ତତ୍‌କ୍ଷଣାତ୍ ଷ୍ଟେସନକୁ ଆସି ଶାନ୍ତିନିକେତନ ଯାଇ ପରୀକ୍ଷା କଲେ । ବିପଦବେଳେ ସାହାଯ୍ୟ କରିବା ଏବଂ ବିଶେଷକରି ଛାତ୍ରଛାତ୍ରୀମାନଙ୍କର ସୁବିଧାପାଇଁ ଆକୁଣ୍ଠିତଭାବେ ଆଗେଇ ଆସିବା ବିଷୟରେ ତାଙ୍କର ତୁଳନା ନାହିଁ ।

ଶେଷରେ କହିବି, ମଧ୍ୟଯୁଗୀୟ ବୈଷ୍ଣବ ଭକ୍ତମାନଙ୍କର ଆଶ୍ରୟଥିଲା କୃଷ୍ଣ ଚରଣ । ବର୍ତ୍ତମାନ ଯୁଗରେ ଶିକ୍ଷାଜଗତରେ କୃଷ୍ଣଚରଣ ଥିଲେ ଅନୁରୂପଭାବେ ସଖା ସହୋଦର ଓ ତ୍ରାଣକର୍ତ୍ତା । ଭଗବାନ ଶ୍ରୀକୃଷ୍ଣ କୃଷ୍ଣଚରଣଙ୍କ ଅଶରୀର ଆତ୍ମାକୁ ଶାନ୍ତିପ୍ରଦାନ କରନ୍ତୁ, ଏତିକି କାମନା ।

❒ ନିର୍ଦ୍ଦେଶକ,
*ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ଭୁବନେଶ୍ୱର*



Digitized by srujanika@gmail.com

# ସାର୍ ଚାଲିଗଲେ !

ଡକ୍ଟର ନିଶାମଣି ମିଶ୍ର

ଛଅ ତାରିଖ ସନ୍ଧ୍ୟାରେ ଆଞ୍ଚଳିକ ସମ୍ବାଦ ଶୁଣିବାପାଇଁ 'ଟିଭି'ଟା ଖୋଲି ଦେଲି । ଶୁଣିଲି- ପ୍ରାଚୀନ ଓଡ଼ିଆ ସାହିତ୍ୟର ଗବେଷକ, ରାମାୟଣ ବିଶେଷଜ୍ଞ ଅଧ୍ୟାପକ କୃଷ୍ଣଚରଣ ସାହୁଙ୍କର ପରଲୋକ ହୋଇଗଲା । ସମ୍ବାଦଟି ମୋତେ ମ୍ରିୟମାଣ କରିଦେଲା । ସେ ପୀଡ଼ିତ ଥିବା କଥା ଶୁଣିଥିଲି, କିନ୍ତୁ ଏତେ ଶୀଘ୍ର ଯେ ଆମକୁ ଛାଡ଼ି ଚାଲିଯିବେ, ସେ କଥା ଭାବି ନଥିଲି ।

ତାଙ୍କର ମୁଁ ଛାତ୍ର ନୁହେଁ, ତଥାପି ତାଙ୍କୁ 'ସାର୍', ଡାକେ । ସାର୍ ଡାକିଲେ ମୋତେ ଖୁସି ଲାଗେ । ତାଙ୍କ ସଂସ୍ପର୍ଶରେ ମୁଁ ବହୁତ ଆସିଥିଲି । ୧୯୮୦ ମସିହାକଥା, ମୁଁ ସେତେବେଳେ ଗବେଷଣାରତ ଥାଏ । ସେ ସମ୍ପର୍କରେ ତାଙ୍କଠାରୁ କିଛି ପରାମର୍ଶ ଓ ଉପଦେଶ ପାଇବା ଆଶାରେ ଦିନେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗକୁ ଯାଇ ତାଙ୍କ ପ୍ରକୋଷ୍ଠରେ ପଶିଲି । ଦେଖିଲି- ପାଞ୍ଚ ଛଅ ଗବେଷକ ତାଙ୍କୁ ଘେରିବସିଛନ୍ତି ଓ ସେ ପ୍ରତ୍ୟେକଙ୍କୁ କିଛି କିଛି ପରାମର୍ଶ ଦେଉଛନ୍ତି । ମୋତେ ଦେଖି ଖୁବ୍ ଖୁସି ହେଲେ । ପିଲାମାନଙ୍କୁ ମୋର ପରିଚୟ ଦେଲେ । ମୋର ଯିବାର ଉଦ୍ଦେଶ୍ୟ ଓ ଗବେଷଣାର ବିଷୟବସ୍ତୁ ଶୁଣି କହିଲେ- ''ଏ ବିଷୟରେ ଆପଣଙ୍କୁ ମୁଁ କ'ଣ ଅବା ଅଧିକ ପରାମର୍ଶ ଦେଇ ପାରିବି ।'' ତଥାପି ମୁଁ  ନେଇଥିବା କିଛି ଲେଖା ତାଙ୍କୁ ପଢ଼ିବାକୁ ଦେଲି । ସେ ପଢ଼ିବହୁତ ପ୍ରଶଂସା କଲେ ଏବଂ ତାଙ୍କରି ଉତ୍ସାହ ଓ ପ୍ରେରଣାରୁ ମୁଁ ଗବେଷଣା ଦିଗରେ ଆଗେଇ ଚାଲିଲି ।

ଛାତ୍ର ଓ ଗବେଷକମାନଙ୍କ ପ୍ରତି ତାଙ୍କ ମନୋଭାବ ଏଇପରି ଥିଲା । ତାଙ୍କ ତତ୍ତ୍ୱାବଧାନରେ ବହୁ ଛାତ୍ର ଆଜି ପିଏଚ୍.ଡ଼ି. ଓ ଡି.ଲିଟ୍. ପାଇଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟର ପୁନରୁଦ୍ଧାର କରି ସେ କେବଳ ନିଜ ଜ୍ଞାନର ପରିସର ଯେ ବଢ଼ାଇଥିଲେ ତା ନୁହେଁ, ଜ୍ଞାନକୁ ବାଣ୍ଟିବାଦ୍ୱାରା ତା'ର ମହତ୍ତ୍ୱ ମଧ ବଢ଼ାଇଥିଲେ । ଆମର ଗୋଟିଏ ବଡ଼ ଦୁର୍ଗୁଣ ହେଉଛି- ପରର ଗୋଡ଼ଟାଣି ତଳକୁ ଖସାଇ ଦେବା । ସେଥିରେ ଆମେ ଆନନ୍ଦ ପାଉ । କିନ୍ତୁ ତାଙ୍କର ନୀତିଥିଲା- ଅନ୍ୟର ହାତଟାଣି ଉପରକୁ ଉଠାଇନେବା । ସେଇଗୁଣପାଇଁ ସେ ଅନେକଙ୍କର ଚିର ସ୍ମରଣୀୟ ହୋଇ ରହିବେ । ବହୁ ସଭା ସମିତିରେ ମୁଁ ତାଙ୍କ ସହିତ ମିଶିଛି । ହସହସ ମୁଖ ଓ ମିଷ୍ଟଭାଷଦ୍ୱାରା ସେ ସମସ୍ତଙ୍କୁ ନିଜର କରିନିଅନ୍ତି । ବର୍ଷକତଳେ ବାଣୀବିହାର ଠାରେ ତାଙ୍କ ସହିତ ଦେଖା ହୋଇଥିଲା । ମୁହଁରେ ସେଇ ହସ, କିନ୍ତୁ ତାହା ବେଦନା ମିଶ୍ରିତ ପରି ମନେ ହେଲା । ପଚାରିଲି - 'ସାର୍' କିପରି ଅଛନ୍ତି ? କହିଲେ - ''ପୂର୍ବପରି ସାହିତ୍ୟ ସାଧନା ଆଉ କରିପାରୁ ନାହିଁ ।'' ହୁଏତ ସେଥିପାଇଁ ସେ ବିମର୍ଷ ଥିଲେ । ଓଡ଼ିଆ ସାହିତ୍ୟକୁ ତାଙ୍କର ଯଥେଷ୍ଟ ଅବଦାନ ରହିଛି । ଅନେକ ତାଙ୍କଦ୍ୱାରା ଉପକୃତ ହୋଇଛନ୍ତି ।



Digitized by srujanika@gmail.com

ପରର ଉପକାର କରିବା, ଅନ୍ୟକୁ ସାହାଯ୍ୟ କରିବା ତାଙ୍କ ଜୀବନର ନୀତି ଓ ଆଦର୍ଶଥିଲା । ଏପରି ଜଣେ ବ୍ୟକ୍ତିଙ୍କୁ ହରାଇବା ଦୁର୍ଭାଗ୍ୟର ବିଷୟ । ଉତ୍କଳମଣି ଯଥାର୍ଥରେ କହିଛନ୍ତି - ମଣିଷ ଜୀବନକୁ ବର୍ଷ, ମାସ, ଦିନ, ଦଣ୍ଡରେ ବିଚାର କରାଯାଏ ନାହିଁ । କର୍ମ ହେଉଛି ଜୀବନର ପ୍ରକୃତ ମାନଦଣ୍ଡ । କର୍ମଦ୍ୱାରା ମଣିଷ ବଞ୍ଚିରହେ । 'ସାର୍', ଚାଲିଗଲେ ସୁଦ୍ଧା ନିଜର କର୍ମ ଓ ଗୁଣଦ୍ୱାରା ଚିରଦିନ ବଞ୍ଚିରହିବେ । ତାଙ୍କ ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରଭୁ ଚକାଡ଼ୋଳାଙ୍କୁ ମିନତି ଜଣାଇ ରହୁଛି ।

ଓଁ ଶାନ୍ତିଃ, ଶାନ୍ତିଃ, ଓଁ ଶାନ୍ତିଃ ।

❒ *ଅବସର ପ୍ରାପ୍ତ ପ୍ରାଧାପକ*
*ଶହୀଦନଗର, ଭୁବନେଶ୍ୱର*

# ଗୁରୁଣାଂ ଗୁରୁ କୃଷ୍ଣ ଚରଣ

**ପ୍ରଫେସର ବୈଷ୍ଣବ ଚରଣ ସାମଲ**

ଗୁରୁ ଚାଲିଗଲେ । ଜଣେ ଆଦର୍ଶ ଶିକ୍ଷକଙ୍କର ଅକାଳ ତିରୋଧାନ ହୋଇଗଲା । ଜଣେ ଏକନିଷ୍ଠ ସାରସ୍ୱତ ସାଧକଙ୍କର ହୋଇଗଲା ବିୟୋଗ । ମଣିଷ ପରି ମଣିଷଟିଏ ବିଦାୟ ନେଇଗଲେ ଏଇ ପାପ ତାପକ୍ଲିଷ୍ଟ ଓ ଧରଣୀରୁ ତାଙ୍କର ମର କଳେବର ମିଶିଗଲା ମାଟି, ପାଣି, ପବନ, ଆକାଶ ଓ ଅଗ୍ନିରେ । ଆଉ ଦେଖିହେବ ନାହିଁ ସେଇ ପ୍ରଶସ୍ତ ଛାତି, ଆଜାନୁଲମ୍ବିତ ବାହୁ, ହସ ହସ ମୁଖ ମଣ୍ଡଳ । ଦେଖି ହେବ ନାହିଁ ସେଇ ପକ୍ୱକେଶ ଓ ନିଶ । ଶୁଣିହେବ ନାହିଁ ସ୍ନେହ ପ୍ରୀତି ମମତାବୋଳା ବଚନ । ସଂଶୟ ମୋଚନ ପାଇଁ ପ୍ରଶ୍ନ କରିହେବ ନାହିଁ ଆଉ ତାଙ୍କୁ । ସବୁ ନୀରବ ହୋଇଗଲା । ସମୁଦ୍ର ହୋଇ ଗଲା ନିସ୍ତରଙ୍ଗ । ଆକାଶ ହୋଇଗଲା ସ୍ତବ୍ଧ । ଧରିତ୍ରୀ ପାଲଟିଗଲା ମୂକ ।

'ଜାତସ୍ୟହି ଧ୍ରୁବ ମୃତ୍ୟୁ ଧ୍ରୁବ ଜନ୍ମ ମୃତସ୍ୟଚ' - ଜନ୍ମ ହେଲେଇ ମୃତ୍ୟୁ । କେହି ତମ୍ବାମୁଣ୍ଡ ବାନ୍ଧି ରହିବେ ନାହିଁ । ଯିଏ ଯେତେ ନିଜକୁ ଶକ୍ତିଶାଳୀ କହୁ, ଜ୍ଞାନବାନ୍ କହୁ, ଆପଣାର ଢ଼ୋଲ ପିଟୁ- ସବୁ ଅଢ଼େଇ ଦିନ ପାଇଁ । ସମସ୍ତେ ଯାଆନ୍ତି । ହାଟ ସଉଦା ସରିଗଲେ ବାହୁଡ଼ିବାକୁ ହୁଏ । ସିଏ ବାହୁଡ଼ି ଗଲେ - ମର୍ତ୍ତ୍ୟରୁ ଅମର୍ତ୍ତ୍ୟକୁ, ଭୂମିରୁ ଭୂମାକୁ, ମୃତରୁ ଅମୃତକୁ । ସେ ଅମୃତ ସନ୍ତାନ, କିଏ ତାଙ୍କୁ ଅଟକାଇ ପାରିଥାନ୍ତା ଏଇ ଜ୍ୱାଳା ଆଉ ଜଞ୍ଜାଳର ଧରଣୀରେ ? ସେ ଗଲେ । ଅଥଚ ସେ କାନ୍ଦେଇ ଦେଇଗଲେ ତାଙ୍କର ପ୍ରିୟଜନମାନଙ୍କୁ, ସ୍ନେହାସ୍ପଦ ଛାତ୍ର ଛାତ୍ରୀ ଗବେଷକ ଓ ଗବେଷିକାମାନଙ୍କୁ । ସାରସ୍ୱତ କାନନର ସିଏ ଏକ ନିଆରା ଫୁଲଟିଏ- ସୌନ୍ଦର୍ଯ୍ୟ ଓ ସୌରଭର ଫୁଲଟିଏ । ଝଡ଼ି ପଡ଼ିଲା କାଳ-ବାତ୍ୟାରେ । ଯିବା କଥା-ଗଲେ । କାହିଁ ସିଏତ ଆଦୌ ଜଣାଯାଉ ନଥିଲେ ଯିବେ ବୋଲି ? ତାଙ୍କ ଚଉରାଶି ଅଙ୍ଗୁଳି ଦେହ ଭିତରେ ଯେ ଗୋଟାଏ ଚରମ ବ୍ୟାଧି



Digitized by srujanika@gmail.com

ଶଇତାନ ଅଦେଶ୍ୟରେ ଘୂରି ବୁଲୁଥିଲା ଓ ତାଙ୍କୁ କୋରି କୋରି ଖାଉଥିଲା, କାହିଁ ଦିନେ ହେଲେ ତ ସିଏ ଏକଥା କାହାକୁ କହି ନାହାନ୍ତି । ନିଜର ଚାଲିଚଳଣି କଥାବାର୍ତ୍ତାରେ ତ ଆଦୌ ପ୍ରକାଶ ପାଇ ନାହିଁ ବ୍ୟାଧି-ବ୍ୟାଧର ରୁକ୍ଷ ଶରାଘାତ । ତାରି ଭିତରେ ସେ ବିଭିନ୍ନ ସଂସ୍ଥାନମାନଙ୍କରେ ଯୋଗ ଦେଇଛନ୍ତି । ଗବେଷକଙ୍କୁ ଦିଗଦର୍ଶନ ଦେଇଛନ୍ତି । ନିଜେ ଲେଖିଛନ୍ତି । ଏଇ ମାର୍ଚ୍ଚ ମାସରେ ବାଣୀବିହାର ଓଡ଼ିଆ ବିଭାଗରେ ଅନୁଷ୍ଠିତ ଉଜ୍ଜୀବନ ପାଠ୍ୟକ୍ରମରେ ଯୋଗ ଦେଇ ପାଠ ପଢ଼ାଇଛନ୍ତି । କ'ଣ ହେଲା ଯେ ହଠାତ୍ ଶୋଇଗଲେ ମହାନିଦ୍ରାରେ, ଏକ କ୍ରାନ୍ତିକାରୀ ସାରସ୍ୱତ ମହାରଥୀଙ୍କର ଅବସାନ ଘଟିଗଲା । ହାୟ କାଳ ! ସତେ ତୁ ଏଡ଼େ ନିର୍ମମ !! ତୁ ତାଙ୍କୁ କବଳିତ କରି ଦେଇ କ'ଣ ପାଇଲୁ ? କ'ଣ ଜିତିଗଲୁ ତୋ ନିର୍ମମତାରେ ? ଉଡ଼ାଇପାରିଲୁ ତୋର ବିଜୟ କେତନ ? ନା - ତୁ ହାରିଗଲୁ ତାଙ୍କ ପ୍ରଜ୍ଞା ଓ ପ୍ରତିଭା, ବ୍ୟକ୍ତିତ୍ୱ ଓ ବିରାଟତ୍ୱ ନିକଟରେ ? କିଏ କ୍ଷୁଦ୍ର ହୋଇଗଲା - ତୁ ନା ସେ ? ହେ ମହାକାଳ ! କାହିଁକି ତୋର ଏ ଈର୍ଷା, ଏ ନିର୍ମମତା ? ସିଏ ତ ତୋଠାରୁ କିଛି ନେଇଯାଇ ନାହାନ୍ତି; ବରଂ ଦେଇଯାଇଛନ୍ତି ଅନେକ । ତାଙ୍କୁଇ ନେଇ ତୁ ଧନ୍ୟ ହେବୁ ।

ସିଏ ଆଦର୍ଶ ଅଧ୍ୟାପକ କୃଷ୍ଣଚରଣ, ନିଜ ପରଭେଦ ନାହିଁ । ବଡ଼ ସମ୍ବେଦନଶୀଳ ତାଙ୍କ ହୃଦୟ । କିଏ ତାଙ୍କୁ ମାପିବ ? ଆକାଶରେ ବ୍ୟାପ୍ତିକୁ କ'ଣ ମାପି ହୁଏ ? ମାପି ହୁଏ କ'ଣ ସମୁଦ୍ରର ଗଭୀରତାକୁ ? କ୍ଷୁଦ୍ରବୁଦ୍ଧି ମଣିଷ ନିଷ୍ଫଳ ଚେଷ୍ଟା କରେ । ସିଏ କିନ୍ତୁ ସେଇମିତି ବିରାଟ ହୋଇ ରହିଯାଏ କାଳରୁ କାଳକୁ ଡେଇଁ ଅନନ୍ତ କାଳକୁ । ବିଦ୍ୟା ଓ ବିନୟର ସେ ମୂର୍ତ୍ତିମନ୍ତ ପ୍ରତୀକ । ଶ୍ରୀମଦ୍ ଭଗବତ ଗୀତାରେ କୁହାଯାଇଛି-

ବିଦ୍ୟା ବିନୟ ସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନିଚୈବ ଶ୍ୱାପାକେଚ ପଣ୍ଡିତାଃ ସମଦର୍ଶନ ।

ପ୍ରକୃତରେ କୃଷ୍ଣଚରଣ ପଣ୍ଡିତ ବ୍ୟକ୍ତି । ସମଦର୍ଶନ ତାଙ୍କର ସ୍ୱଧର୍ମ । ସମ୍ବେଦନା ତାଙ୍କର ଆଦର୍ଶ । କିଏ ତାଙ୍କୁ ଭୁଲ ବୁଝିଛି । କିଏ ବୁଝିଛି ଠିକ୍ । ସିଏ କିନ୍ତୁ ନିର୍ବିକାର । ସୁଖ ଓ ଦୁଃଖରେ ସେ ଅବିଚଳ । ସେ ସତ୍ । ତେଣୁ ସେ ଅନନ୍ତ ଅକ୍ଷୟ । ସେ ଶାନ୍ତ ଓ ପୂର୍ଣ୍ଣତାର ଦୀପ୍ତି । ଆତ୍ମାରେ ତାଙ୍କର ସୁଖ, ଆତ୍ମାରେ ଆମୋଦ ଓ ଆତ୍ମାରେ ଦୃଷ୍ଟି । ତେଣୁ ସେ ପ୍ରକୃତରେ ଯୋଗୀ ସିଦ୍ଧ ସାଧକ, 'ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ ନିଶ୍ଚୟ ।' କୃଷ୍ଣ ଚରଣ ସନ୍ତୋଷ ପାଇଛନ୍ତି ଆତ୍ମାର । ସେ ଦୃଢ଼ଚେତା, ବଳିଷ୍ଠ ବ୍ୟକ୍ତିତ୍ୱସଂପନ୍ନ । ଅଥଚ ଆଦୌ ଆତ୍ମପ୍ରୌଢ଼ୀନାହିଁ, ଆତ୍ମପ୍ରଚାର ନାହିଁ, ଅଛି ଆତ୍ମ ନିବେଦନ । ତାଙ୍କର ଜ୍ଞାନ ପୂର୍ବଜନ୍ମ ସଂସ୍କାର ଅନୁଯାୟୀ ଜ୍ଞାତା ଓ ଜ୍ଞେୟ ଦୁହିଁଙ୍କ ମଧ୍ୟରେ ସଂପର୍କ ସ୍ଥାପନ କରେ । ସେ ଜାଣିଥିଲେ ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶଗୁଡ଼ିକହିଁ କ୍ଳେଶ । ପାତଞ୍ଜଳି ଯୋଗ ଦର୍ଶନରେ ତେଣୁ କୁହାଯାଇଛି 'ଅବିଦ୍ୟାସ୍ମିତାରାଗ ଦ୍ୱେଷାଭି ନିବେଶାଃ କ୍ଳେଶାଃ ।' ଏହି ପଞ୍ଚକ୍ଳେଶହିଁ ମିଥ୍ୟା ଜ୍ଞାନ । ମହାନ୍ ପୁରୁଷ କୃଷ୍ଣଚରଣ ଏ କଥା ଭଲ କରି ଜାଣିଥିଲେ । ତେଣୁ 'ଶ୍ରଦ୍ଧାବାନ୍ ଲଭେତ ଜ୍ଞାନମ୍' ଦୃଷ୍ଟିରୁ ସେ ଜ୍ଞାନାର୍ଜନ କରିଥିଲେ । ସେହି ଜ୍ଞାନକୁ ସେ ଅଧ୍ୟୟନ ଅଧ୍ୟାପନା ଓ ଗବେଷଣାରେ ବିନିଯୋଗ କରିଗଲେ । ଶାନ୍ତିନିକେତନ ବିଶ୍ୱଭାରତୀରୁ ରାଞ୍ଚି ଓ ରାଞ୍ଚିରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଏକ ଦୀର୍ଘଯାତ୍ରା - ତାପରେ ଅବସର । ମାତ୍ର ସାତଟି



Digitized by srujanika@gmail.com

ବର୍ଷପରେ ଅମୃତଧାମକୁ ଯାତ୍ରା । ତାରି ଭିତରେ ସେ ଏ ଜାତିକୁ ଦେଇଗଲେ ଅମୂଲ୍ୟ ସାରସ୍ୱତ ଅବଦାନ । ପ୍ରାଚୀନ ପୋଥି-ଅହଲ୍ୟାକୁ ଉଦ୍ଧାର କଲେ । ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରେ ସେହିଁ ଏ ଦିଗରେ ସଂକ୍ରାନ୍ତି ପୁରୁଷ । କେତେକେତେ ଜନପଦକୁ ସେ ଯାଇଛନ୍ତି ପୋଥି ଅନୁସଂଧାନରେ । କେତେ ବିଚିତ୍ର ଅନୁଭୂତି । ମନେହେବ ଏକ ବିପୁଳକାୟ ଉପନ୍ୟାସ । ଜଗନ୍ନାଥ ଦାସଙ୍କ 'ଭାଗବତ'କୁ ସେ ଶୁଦ୍ଧ ସଂସ୍କରଣ କରି ପ୍ରକାଶ କଲେ । ସାରଳା ଦାସଙ୍କ ମହାଭାରତର ଶୁଦ୍ଧ ସଂସ୍କରଣ କଲେ । ସୁଚିନ୍ତିତ ମୁଖବନ୍ଧ ଲେଖିଲେ । ଆଦିପର୍ବ, ମୂଷଳିପର୍ବ, ସ୍ୱର୍ଗାରୋହଣ ପର୍ବ, ଗଦାପର୍ବ ଇତ୍ୟାଦି ପ୍ରକାଶ କଲେ । ଚଣ୍ଡୀପୁରାଣକୁ ସଂପାଦନା କରି ପ୍ରକାଶ କଲେ । ବଳରାମ ଦାସଙ୍କ ଜଗମୋହନ ରାମାୟଣକୁ ତିରୋଧାନର ପ୍ରାୟ ଏକବର୍ଷ ପୂର୍ବରୁ ନିଜ ହାତରୁ ଖର୍ଚ୍ଚକରି ପ୍ରକାଶ କଲେ । ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ'- ସଂପାଦନା କଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଅନେକଦିନ ପଡ଼ିବା ପରେ ଏବେ ଲୋକଲୋଚନକୁ ଆସିବାର ଉଦ୍ୟମ ହେଉଛି । କିଏ ଜାଣେ କ'ଣ ତାର ଭାଗ୍ୟ ? ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ରୁଦ୍ର ସୁଧାନିଧି, ଅଚ୍ୟୁତାନନ୍ଦଙ୍କ । 'ଚାରିଖାନି' ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା', 'ଗୋବିନ୍ଦଚନ୍ଦ୍ର', ବଳରାମ ଦାସଙ୍କ 'ବ୍ରହ୍ମାଣ୍ଡଭୂଗୋଳ', ନରସିଂହ ସେଣଙ୍କ 'ପରିମଳା' - ଇମିତି କେତେ ଯେ କେତେ ପ୍ରାଚୀନ ସାହିତ୍ୟର ଅମୂଲ୍ୟ ରତ୍ନକୁ ସେ ଆବିଷ୍କାର କରି ଲୋକ ଲୋଚନକୁ ଆଣିଛନ୍ତି । 'ଶ୍ରୀଜଗନ୍ନାଥ ଲୀଳାମୃତ' ପ୍ରକାଶ କରିଛନ୍ତି । ପ୍ରାଚୀନ କବିତା ମଧ ପ୍ରକାଶ କରିଛନ୍ତି । ଏକକ ପ୍ରଚେଷ୍ଟାରେ ଏହା କ'ଣ ଏକ ବିରଳ ଦୃଷ୍ଟାନ୍ତ ନୁହେଁ କି ? ସେ ପୁଣି ଓଡ଼ିଆ ରାମ ସାହିତ୍ୟର ନିରଳସ ଗବେଷକ । ଇଂରାଜୀରେ ରାମ ସାହିତ୍ୟ ଉପରେ ମହାନିବନ୍ଧ ଲେଖି ସେ ପିଏଚ.ଡ଼ି. ଉପାଧି ପାଇଥିଲେ । ସର୍ବ ଭାରତୀୟ ସ୍ତରର ରାମ ସାହିତ୍ୟ ଗବେଷକମାନଙ୍କ ମଧ୍ୟରେ ସେ ଜଣେ ସମ୍ମାନିତ ବ୍ୟକ୍ତି । Medieval Oriya Literature ତାଙ୍କର ଏକ ଉଚ୍ଚକୋଟିର ଗ୍ରନ୍ଥ । 'କହେ କୃଷ୍ଣଦାସକବି' ତାଙ୍କର ଦୀନକୃଷ୍ଣ ଓ ରସକଲ୍ଲୋଳ କାବ୍ୟ ସଂପର୍କରେ ଏକ ପ୍ରାମାଣିକ ଗ୍ରନ୍ଥ । ପ୍ରାୟୋଗିକ ସମାଲୋଚନାର ଏହା ଏକ ସଫଳ ଦୃଷ୍ଟାନ୍ତ । 'ପ୍ରାଚୀନ ସାହିତ୍ୟ' ଓ 'ମଧ୍ୟକାଳୀନ ସାହିତ୍ୟ' ତାଙ୍କର ଦୁଇଟି ମୂଲ୍ୟବାନ ସମାଲୋଚନାତ୍ମକ ପୁସ୍ତକ । ମଧ କାଳୀନ ଓଡ଼ିଆ କାବ୍ୟରେ ଓ ସନ୍ଥସାହିତ୍ୟରେ ସେ ସୁଫୀ ଦର୍ଶନକୁ ତୁଳନାତ୍ମକ ଭାବରେ ବିଚାର କରିଅଛନ୍ତି । ସାରଳା ମହାଭାରତ, ଚଣ୍ଡୀପୁରାଣ, ଜଗମୋହନ ରାମାୟଣ ଇତ୍ୟାଦିରେ ଇତିହାସକୁ ଖୋଜିଛନ୍ତି । ବଡ଼ ସୂକ୍ଷ୍ମଧି ସମାଲୋଚକ ଓ ଗବେଷକ । ଇତିହାସ, ପୁରାଣ ଓ ସାହିତ୍ୟକୁ ସେ ସନ୍ତୁଳିତ କରିଦେଇଛନ୍ତି । ଓଡ଼ିଶାର ଐତିହ୍ୟ, ପରଂପରା, ସଂସ୍କୃତିକୁ ଦେଖାଇ ଦେଇଛନ୍ତି । ଶ୍ରୀଜଗନ୍ନାଥଙ୍କ ସଂପର୍କରେ ସୁଚିନ୍ତିତ ମତଦେଇ ଅଛନ୍ତି । ତେଣୁ ସେ ହୋଇଯାଇଛନ୍ତି ପ୍ରାଚୀନ ଓଡ଼ିଆ ସାହିତ୍ୟର ଅଥରେଟି- ସାରଳା ସାହିତ୍ୟ ଓ ସନ୍ଥସାହିତ୍ୟର ଅଥରେଟି । ନିଜସ୍ୱ ମୌଳିକ ଦୃଷ୍ଟି ଭଙ୍ଗୀଟିଏ ସର୍ବତ୍ର ତାଙ୍କର ପରିଲକ୍ଷିତ ।

ସାହିତ୍ୟ କୃତି ପାଇଁ ସେ ଲୋକରେ ସମ୍ମାନିତ ହୋଇଛନ୍ତି । ସରକାରୀ ଅନୁଷ୍ଠାନମାନଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିନାହିଁ । ସେଥିପାଇଁ ସେ ଅନାସକ୍ତ । ପ୍ରକୃତରେ ସେ ନିଷ୍କାମ ସାରସ୍ୱତ ସାଧକ ।

ସିଏ ଗଲେ । ଏଥର ଆଉ କିଏ କହିବ ଦୀନକୃଷ୍ଣ କେତେଜଣ । କିଏ କହିବ ପଞ୍ଚସଖା ଥିଲେ କି ନଥିଲେ । କିଏ ପୁଣି କହିବ ବିଲଙ୍କା ରାମାୟଣ ସାରଳା ଦାସଙ୍କର ବା ଆଉ କାହାର ! ନାଥ ସାହିତ୍ୟ ସଂପର୍କରେ କିଏ ପୁଣି ଶେଷ ସମାଧାନ କରିବ ?



Digitized by srujanika@gmail.com

ସେ ଥିଲେ ବନ୍ଧୁବତ୍ସଳ, ଛାତ୍ରବତ୍ସଳ । ତାଙ୍କ ସ୍ନେହ ଓ ମମତାର ପଟାନ୍ତର ନାହିଁ । ସେ ଓଡ଼ିଆ ସାହିତ୍ୟ ଆକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ସେଇ ନକ୍ଷତ୍ର ଖସି ଯିବାର ନାହିଁ । ବ୍ୟାଧି-ଜାରାର ତୀରାଘାତରେ ସେ ଶୋଇଗଲେ । ତାଙ୍କ ପାଦ ଆଉ ଭୂଇଁ ଛୁଇଁଲା ନାହିଁ । ତାଙ୍କ ଅପୋଡ଼ା ପିଣ୍ଡ ହୁଏତ ଭାସିଯାଉଥିବ ସମୁଦ୍ରରେ । କେବେ ହୁଏତ ଲାଗିବ ମହୋଦଧି କୂଳରେ । ସେଥିରୁ ପୁଣି ଗଢ଼ିଉଠିବ ନୂତନ ଦାରୁବ୍ରହ୍ମ - ତାହାହିଁ ଗଢ଼ିଦେବ ଏକ ସାରସ୍ୱତ ସେତୁ । ସେଇ ସେତୁ ହେବ ପ୍ରାଚୀନରୁ ଆଧୁନିକକୁ, ମଣିଷରୁ ମଣିଷକୁ ।

ସେଇ ଅମର ଆତ୍ମାକୁ ମୋର ପ୍ରାଣର ପ୍ରଣାମ । ତାଙ୍କ ଅଶରୀରୀ ଆଶିଷ ଆମର କାମ୍ୟ । କ'ଣ ତାଙ୍କୁ ଦେଇ ହେବ କେବଳ ଅଶ୍ରୁ-ଅର୍ଘ୍ୟ ବ୍ୟତୀତ ।

ହେ ଗୁରୁ ! ହେ ସାରସ୍ୱତ ସାଧକ !! ମୋର ଅଶ୍ରୁ ଅର୍ଘ୍ୟ ନିଅ ! ଏତିକି ମାତ୍ର ମାଗୁଣି ।

❑ *ଓଡ଼ିଆ ବିଭାଗ*
*ଶାନ୍ତିନିକେତନ*

# "ଅଇକ୍ଷିଣି" ଯାଇପାରିବିନି

ଡକ୍ଟର ଜଗନ୍ନାଥ ମହାପାତ୍ର

ବୁଝିଲେ ସାର୍ !

ବିରାଜ କହିଛି ମତେ ଲେଖିବାକୁ । ମୋତେ ତ ଆପଣ ଲେଖା ନ ଶିଖାଇ ଛୁ ମାରିଲେ । ଯାହାକୁ ଲେଖା ଶିଖାଇଛନ୍ତି ସେ ପରା ଆପଣଙ୍କ କାମ ପାଇଁ ଲାଗିପଡ଼ିଛି । ଚେଷ୍ଟା କରୁଛି ଗୁରୁ ଋଣ ହାଲୁକାକରିବା ପାଇଁ । ହେଲେ ଗୁରୁ ଋଣ କେହି କ'ଣ ଶୁଝି ପାରେ ? ଲେଖା ବଦଳରେ ମୋତେ ଆପଣ ଗୋଟିଏ କଥା ଶିଖାଇଛନ୍ତି 'ଅଇକ୍ଷିଣି' । ଏ ଶବ୍ଦଟି ମୋ ପିଲାମାନଙ୍କୁ ମଜାଲାଗେ । କିଏ 'ଅଇକ୍ଷିଣି ସାର୍' କହନ୍ତି ତ କିଏ 'ଛ' ଆଂଗୁଳିଆ ସାର୍' କହନ୍ତି । ହେଲେ ସମସ୍ତେ ଆପଣଙ୍କ ଧୀର ଓ ଶାନ୍ତ ପ୍ରକୃତିକୁ ଭଲ ପାଆନ୍ତି । ଆପଣଙ୍କୁ ଗାଳି ଦେଲେ ତ ଆପଣ ହସିଦିଅନ୍ତି । ଏହାଠୁ ମଣିଷର ଆଉ କ'ଣ ଭଲ ଗୁଣ ଦରକାର । ଆପଣ ହେଲେ ନିଦାବିଷ୍ଣୁ । ସବୁ ହଜମ କରିଦିଅନ୍ତି । ଛାଡ଼, ହିଂସାକରିବା ପରିବର୍ତ୍ତେ ମୁଁ ଆପଣଙ୍କୁ ବହୁତ ଟେକିଲିଣି । ଲାଭ କିଛି ନାହିଁ । କାରଣ ଆପଣ ଆଉ ତ ଅଇକ୍ଷିଣି ଆସିପାରିବେନି, ପରେ ଦେଖିବା ।



Digitized by srujanika@gmail.com

ଅପରେସନ୍ ଦିନ ଲିକ୍ ନର୍ସିଂହୋମ୍ ଯାଇଥିଲି । ବିଜୟ, ପୃଥ, ପୂତୁରା, ବାଣୀବିହାର ଡେଙ୍ଗାମିଆଁ ଓ ଆଉସବୁ କିଏ ଆପଣଙ୍କ ରୁମ୍‌ରେ ଥାଆନ୍ତି । ରକ୍ତ ଯୋଗାଡ଼ ପାଇଁ ସମସ୍ତେ ଗଲେ । ଖାଲି ବିଜୟ ଓ ମୁଁ । ପଚାରିଲି 'ସାର୍' କ'ଣ କହନ୍ତୁ । ଉତ୍ତର- 'ପିଲାଙ୍କର କ'ଣ ହେବ ?' ସେଇ ଡାକ୍ତରୀ ଅଭିନୟରେ କହିଲି । 'କିଛି ହେବନାହିଁ, ବିଜୟ ଅଛି, ଆପଣଙ୍କର ବହୁ ବଡ଼ବଡ଼ ସାଙ୍ଗ ଅଛନ୍ତି, ଆମେ ଅଛୁ । ତାଙ୍କ ପାଇଁ କାହିଁ ବ୍ୟସ୍ତ ହେଉଛନ୍ତି ? ସବୁଠିକ୍ ହେଇଯିବ । ହେଲେ, ଜାଣିଥିଲି, Where shoe pinches ଭିତରର କୋହକୁ ଦାବି ପାରିଲିନି, ପଳେଇ ଆସିଲି ଭୁବନେଶ୍ୱରକୁ । ପୁଣି ଲାଗିଗଲି ରିହାର୍ସଲରେ ।

କ'ଣ ଲେଖିବି ? ଭଲ ଲେଖି ନ ଆସିଲେ ବି ଅଙ୍ଗେ ନିଭାଇବା କଥା ବହୁତ । ଆପଣଙ୍କ ସାହିତ୍ୟ ଜଗତକୁ ଦାନକଥା ମୁଁ କିଛି କହିପାରିବିନି । କିନ୍ତୁ ବ୍ୟକ୍ତିଗତ ସଂପର୍କଟା ମୋତେ ବହୁତ ଆକର୍ଷଣ କରିଛି । ଦେହଖରାପ ବେଳେ ମୁଁ ଯେତେବେଳେ କହେ, 'ଗାଡ଼ି ପଠାଉଛି, ସଙ୍ଗେ ସଙ୍ଗେ ଆସନ୍ତୁ । ଅଇକ୍ଷିଣି ଡାକ୍ତର ଯାଇପାରିବିନି ।' ହେଲେ ସେଦିନ କେମିତି ମୁଁ ସଙ୍ଗେ ସଙ୍ଗେ ଯାଇ ନାକରୁ ପରିଶ୍ରାଜାଗାରୁ ନଳୀସବୁ କାଢ଼ିଦେଲି, ଆଉ ଲେଖିଦେଲି ଯେ - 'ଆପଣ ଆମ ସାଙ୍ଗରେ ଆଉ ବସାଉଠା କରିବାକୁ ଇଚ୍ଛାନକରି ସେପୁରକୁ ନିଜ ଇଚ୍ଛାରେ ଚାଲିଗଲେ ।' ଏଇଟା କିନ୍ତୁ ଅନ୍ୟାୟ କଲେ । ରାଜେନ୍ଦ୍ରଦାସଙ୍କ କାନ୍ଦ ଓ ମୋ କୋହ କେବଳ ଫୋନ୍‌ରେ ରହିଗଲା । ହଉ ଯାହା କଲେ କଲେ, ଟିକେ ମନେରଖିଥିବେ ପୂର୍ବକଥା । ସେଠି ଏଠିକା ହୋଟେଲ ଅପେକ୍ଷା ଭଲ ଭଲ ହୋଟେଲ୍ ଥିବ । ସବୁ ବନ୍ଦୋବସ୍ତ କରି ଗୋଟିଏ ଟେବୁଲ୍ ରିଜର୍ଭ କରି ମୋତେ ଖବର ଦେଲେ ବୟସ ପୟସକୁ ବେଖାତିର କରି ମୁଁ ଅଇକ୍ଷିଣି ପହଁଞ୍ଚିବି । ରହିଲି ।

ଡାକ୍ତର !

❑ ବି,୩୫ ଶହୀଦନଗର
ଭୁବନେଶ୍ୱର

# ମୃତ୍ୟୋଃ ର୍ମାଂ ଅମୃତମ୍ ଗମୟ

ଡକ୍ଟର ଉଦୟନାଥ ତ୍ରିପାଠୀ

**କଥାରେ ଅଛି :-**

''ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।''

ମୃତ୍ୟୁ ହିଁ ଚିରନ୍ତନ ସତ୍ୟ । ସଂସାରରେ ଜନ୍ମ ହେଲେ ଏହା ସମସ୍ତଙ୍କୁ ଦିନେ ନା ଦିନେ, ଅନ୍ୟ କିଛି ମିଳୁ କି ନାହିଁ, ଏହା ନିଶ୍ଚୟ ପ୍ରାପ୍ତି ହେବ ।



Digitized by srujanika@gmail.com

ସର୍ବସାଧାରଣଙ୍କର କୃଷ୍ଣ ସାର୍, ଆପଣାର ଓ ନିକଟତମ ସହକର୍ମୀ ମାନଙ୍କର କୃଷ୍ଣ, ସମସ୍ତ ପ୍ରିୟ ଛାତ୍ରଙ୍କର ପ୍ରଫେସର ସାହୁ ସବୁଦିନ ପାଇଁ ଚିରନିଦ୍ରାରେ ଶୋଇ ଯାଇଛନ୍ତି ।

ତାଙ୍କର ଶୃଙ୍ଖଳିତ ସ୍ନେହପୂର୍ଣ୍ଣ ଜୀବନ ଯାପନ ଅନୁସରଣୀୟ । ସେ ସ୍ୱାବଲମ୍ବୀ, ଅତି ଅମାୟିକ, ଧର୍ମ ପରାୟଣ ଓ ପୁଣ୍ୟାତ୍ମା । ସେ ଅନ୍ୟ କାହାରିକୁ ଅସୁବିଧାରେ ନପକାଇ ସ୍ୱଳ୍ପ ସମୟ ମଧ୍ୟରେ ଦେହ ତ୍ୟାଗ କଲେ । ସେ ଅଜାତ ଶତ୍ରୁ, ସମସ୍ତଙ୍କର ଆଦରଣୀୟ, ସରଳ ନିରାଡ଼ମ୍ବର ଜୀବନ ଯାପନରେ, ନିଜ କାମ ନିଜେ କରିବାରେ ଥିଲେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ସେ ସର୍ବଦା ସହାନୁଭୂତିଶୀଳ, ସ୍ନେହ ମମତାର ଉତ୍ସ, ପ୍ରତ୍ୟୁତ୍ପନ୍ନ ମତି, ବୁଦ୍ଧିଦୀପ୍ତ ଓ ପ୍ରଚଣ୍ଡ ପ୍ରତିଭାର ଗନ୍ତାଘର । ସେ କେବେ କୌଣସି ପ୍ରତିଦାନର ଆଶା କରି ନାହାନ୍ତି ବରଂ ନିଜ ଜୀବନ ମଧ୍ୟରେ ବହୁବାର ନିର୍ଯ୍ୟାତିତ ହୋଇଛନ୍ତି । ସାରଙ୍କର ସରଳ ନିରାଡ଼ମ୍ବର କର୍ମମୟ ଜୀବନ ଏକ ଶିକ୍ଷଣୀୟ ଇତିହାସ । ତାଙ୍କର ଅସାଧାରଣ କର୍ମନିଷ୍ଠା ଓ ନିଃସ୍ୱାର୍ଥପର ସ୍ନେହ ଓ ପଠନଲିପ୍ସା ଅନୁକରଣୀୟ । ତାଙ୍କୁ ନମ୍ରତାର ମୂର୍ତ୍ତିମନ୍ତ ପ୍ରତୀକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତାଙ୍କର ଅକୁଣ୍ଠିତ ପ୍ରେରଣା କେତେ ଛାତ୍ରଙ୍କୁ ମଣିଷ ଭଳି ମଣିଷ କରି ପାରିଛି । ତାଙ୍କର ବ୍ୟକ୍ତିଗତ ଆଚରଣ, କାର୍ଯ୍ୟରେ ଉଚ୍ଚ ମାନବିକ ମୂଲ୍ୟବୋଧ ଓ ଚରିତ୍ରବତ୍ତାର ପରିଚୟ ପ୍ରତିପଦକ୍ଷେପରେ ପ୍ରକଟିତ ହେଉଥିଲା ।

ସାର୍‌ଙ୍କ ବିୟୋଗରେ ତାଙ୍କର ଆତ୍ମୀୟ, ପ୍ରିୟ ଛାତ୍ର, ସହକର୍ମୀ ଓ ବନ୍ଧୁଙ୍କର ଯେଉଁ ଅପୂରଣୀୟ କ୍ଷତି ଘଟିଲା ତାକୁ ସହିବାର ସାମର୍ଥ୍ୟ ଭଗବାନ ସେମାନଙ୍କୁ ଦିଅନ୍ତୁ ଏବଂ ସାରଙ୍କର ଦିବ୍ୟ ଆତ୍ମାର ସଦ୍‌ଗତି ହେଉ ଏହାହିଁ ପରମାତ୍ମାଙ୍କ ନିକଟରେ ପ୍ରାର୍ଥନା ।

❒ *ମୁଖ୍ୟ ଚିକିତ୍ସକ*
*ଉତ୍କଳ ବିଶ୍ୱବିଦ୍ୟାଳୟ ଡାକ୍ତରଖାନା*

# ମୋତେ ଠକିଦେଲେ

କୁମାରୀ ଅପରାଜିତା ମହାପାତ୍ର

ମୋର ଝାପ୍‌ସା ମନେ ଅଛି, ପିଲାବେଳେ ଥରେ ବୋଉ ସାଙ୍ଗରେ ବାଣୀବିହାର ଯାଇଥାଏ । ଆପଣଙ୍କ ରୁମ୍‌କୁ ଗଲି ଡାହାଣ ହାତ ବଢ଼ାଇ ମତେ ଆଦର କଲେ । ଦେଖିଲି, ଆପଣଙ୍କର ଛଅଟି ଆଙ୍ଗୁଠି । ବୋଉ ସାଂଗରେ ଜିଦି ଲଗାଇଲି "କାହିଁକି ତୋ ସାର୍‌ଙ୍କର ଛଅଟା ଆଙ୍ଗୁଠି କହ ?" ସେ ବି କ'ଣ କହିବ ଅତି ବ୍ୟସ୍ତ ହେବାରୁ କହିଲା; ଯେଉଁମାନେ ବଡ଼ ମଣିଷ, ବିଦ୍ୱାନ, ପଣ୍ଡିତ ସେମାନଙ୍କର ଛଅଟା ଆଙ୍ଗୁଠି ଥାଏ । ମୋ ପିଲାମନ ସେଦିନ ବୁଝିଯାଇଥିଲା ସତ ହେଲେ ଆଜି



Digitized by srujanika@gmail.com

ଏବେ ବଡ଼ ହେଲାପରେ ମଧ ଆପଣ ନାହାନ୍ତି ଏକଥା ବୁଝିବାକୁ ଆଦୌ ଇଚ୍ଛାହେଉନି । ଯେତେବେଳେ ଆମ ଘରକୁ ଆସନ୍ତି ମୁଁ ଖାଇବାକୁ ଦେଲେ କହନ୍ତି, ''ଏଇନେ ତୁ ଦେଉଛୁ ତୁ ଶାଶୁଘରକୁ ଗଲେ କିଏ ଦେବ ?'' ମୁଁ ଅଛି ଆଉ ଆପଣ ଠକି ଦେଇ ଚାଲିଗଲେ । ମୁଁ ଶାଶୁଘରକୁ ଗଲାବେଳେ ଆଉ ଆଶୀର୍ବାଦ ଦେବାପାଇଁ ଆପଣ ନଥିବେ ।

ଆପଣ କେଉଁଠି ମୁଁ ଜାଣିନି ଯେଉଁଠି ଥାଆନ୍ତୁ ଆମ ସମସ୍ତଙ୍କୁ ମମତା ଭରା ଦୃଷ୍ଟିରେ ଚାହିଁଥାନ୍ତୁ । ସବୁବେଳେ ଭଲ ମଣିଷ ହେବାକୁ କହୁଥିଲେ । ମୁଁ ହୋଇପାରିବିକି ନାହିଁ ଜାଣିନି ତଥାପି ଆପଣଙ୍କ ସ୍ମୃତି ମତେ ରାସ୍ତା ଦେଖାଇବ ବୋଲି ଭାବୁଛି ।

❑❑❑

# ଟିକେ ଅପେକ୍ଷା କଲନି

ଅଜା,

ଆମ ସ୍ୱପ୍ନକୁ ପୂରା କରିବାପାଇଁ ଆମକୁ ମହାରାଷ୍ଟ୍ର, ଗଞ୍ଜ ପଠାଇ ଦେଲ । ଫେରି ଆସି କେତେ ଖୁସିରେ କହିଥାନ୍ତୁ ଆମେ ଇଂଜିନିୟର, ଡାକ୍ତର ହୋଇଗଲୁ । ଆମସ୍ୱପ୍ନ ବାସ୍ତବ ହେବାପାଇଁ ବହୁ ସମୟଅଛି  କିନ୍ତୁ ତମ ଶେଷ ଦର୍ଶନ ପାଇଁ ଯିବା ପର୍ଯ୍ୟନ୍ତ ବି ଅପେକ୍ଷା କଲନି । ଆମେ ଯାଇ କାହାକୁ ଅଜା ! ଅଜା! ବୋଲି ଡାକିବୁ ?

❑ *ତୁମର ହତଭାଗ୍ୟ ନାତି,*
*ନାତୁଣୀ -ବାପି ଓ ମୁନା*



Digitized by srujanika@gmail.com

# ସେ ହସ ଭୁଲିବାର ନୁହେଁ

**ଶ୍ରୀମତୀ ବନ୍ଦିତା ସାହୁ**

ବାବୁଜୀ, ବାବୁଜୀ ଡାକ ଆଜି ଆମମାନଙ୍କ ପାଟିରୁ ସରିଗଲା । ରହିଗଲା ଖାଲି ତାଙ୍କର ସ୍ମୃତି । ଆଜି କ'ଣ ରୋଷେଇ ହବ, କ'ଣ ଖାଇବୁ, ଆଜି କେଉଁ ଶାଢ଼ୀ ପିନ୍ଧିବୁ ଇତ୍ୟାଦି ପ୍ରତ୍ୟେକ କଥାରେ ଯାହା ଉପରେ ନିର୍ଭର କରୁଥିଲୁ ଆଜି ସେ ଆମ୍ଭମାନଙ୍କୁ ଘାଣ୍ଟୁ କରି ଦେଇ ଚାଲିଗଲେ । ଏ ଦୁଃଖ ନା ସହିବାର ନ କହିବାର ।

ଛାତ୍ରବତ୍ସଳ ବାବୁଜୀ ଆମର ନିଜ ସୁଖ ଦୁଃଖକୁ ଛାତ୍ର ଛାତ୍ରୀମାନଙ୍କ ନିକଟରେ ହିଁ ପ୍ରକାଶ କରିଥାନ୍ତି । ପିଲାମାନଙ୍କୁ ଖୁସି କରିବା ହିଁ ଉଦ୍ଦେଶ୍ୟ । ତେଣୁ କେବେ ନିଜ ଦୁଃଖ କଷ୍ଟ ସେ ଆମ ଆଗରେ ପ୍ରକାଶ କରନ୍ତି ନାହିଁ । ତାଙ୍କ ଜୀବନ ବିଷୟରେ ଯାହାକିଛି ଆମେ ଶୁଣୁ, ସେ ଛାତ୍ରଛାତ୍ରୀଙ୍କ ନିକଟରେ କହୁଥିବା ବେଳେ, ଭିତରେ ଥାଇ । ସେଇମାନଙ୍କ ନିକଟରେ ସେ ଗପନ୍ତି - ସେ କେମିତି ପିଲାଟି ଦିନରୁ କଷ୍ଟ କରି ନିଜ ଜୀବନ ଗଢ଼ି ଥିଲେ । ପିତା ୰ନଟବର ସାହୁ ମାଇନର ସ୍କୁଲ ହେଡ଼ପଣ୍ଡିତ । ସମ୍ପତ୍ତି ବାଡ଼ି ଅଛି କିନ୍ତୁ ପ୍ରାଥମିକ ଶିକ୍ଷା ପରେ ନଇନାଳପାରି ହୋଇ କୁଳଶ୍ରୀ ମାଇନର ସ୍କୁଲ, ପ୍ୟାରିମୋହନ ଏକାଡ଼େମୀ, ରେଭେନ୍ସା କଲେଜ ଇତ୍ୟାଦିରୁ ନିଜ ଶିକ୍ଷା ସମାପ୍ତ କରିବା କଷ୍ଟସାଧ ଥିଲା । ପ୍ରଫେସର ଫାଦରକାମିଲ୍ ବୁଲ୍‌କେଙ୍କ ତତ୍ତ୍ୱାବଧାନରେ ନିଜର ପିଏଚ.ଡ଼ି. ଡିଗ୍ରି ସମାପ୍ତ କରିଥିଲେ । କର୍ମକ୍ଷେତ୍ରର ଆରମ୍ଭ ସେ କରିଥିଲେ ଜଗତ୍‌ସିଂହପୁର ନିକଟସ୍ଥ କାଦୁଅପଡ଼ା ସରକାରୀ ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବରେ । ତାପରେ ରାଞ୍ଚି ୟୁନିଭରସିଟି, ବିଶ୍ୱଭାରତୀ, ଉତ୍କଳ ୟୁନିଭରସିଟିରେ ସେ ପ୍ରଫେସର ଭାବରେ କାର୍ଯ୍ୟ କରିଥିଲେ । ଏସବୁ ତ ପ୍ରାୟ ସମସ୍ତଙ୍କୁ ଜଣା । କିନ୍ତୁ ତାଙ୍କ ଜୀବନାନୁଭୂତି ହୁଏତ ସେହିମାନେ ମନେ ରଖିବେ, ଯେଉଁମାନଙ୍କ ନିକଟରେ ସେ କହୁଥିଲେ । ଥରେ ସେ କହୁଥିଲେ ସେ କେମିତି ଜଣେ ଗୁଣ୍ଡା ପ୍ରକୃତର ଛାତ୍ରକୁ ସଜାଡ଼ି ଭଲ ମଣିଷ କରି ପାରିଥିଲେ । ରାଞ୍ଚି ୟୁନିଭରସିଟିର ଛାତ୍ରଟିଏ, କପି କରୁଥାଏ ଧରାପଡ଼ିଗଲା । ତାପରେ ଛୁରୀଧରି ମାରିବାପାଇଁ ଧମକ ଦେଲା । ବାବୁଜୀ ବିଚଳିତ ନ ହୋଇ ମଧୁର ଭାଷାରେ କଥା କହି ତା ହାତରୁ ଛୁରୀଟି ନେଇ ଗଲେ ଓ ପରଦିନ ତା' ଘରକୁ ଯାଇ ଛୁରୀଟି ତାକୁ ଦେଇ ଦେଲେ । ଛାତ୍ରଟି କାନ୍ଦିପକାଇ ବାବୁଜୀଙ୍କ ଗୋଡ଼ ଧରି ପକାଇଲା । ନିଜ ଭୁଲ ବୁଝି ଭଲବାଟରେ ଚାଲିବାର ଶପଥ ନେଇଥିଲା ।

ଛାତ୍ରମାନଙ୍କୁ ଉଚିତ୍ ଦିଗରେ ନେବାର ପ୍ରୟାସ ତ ତାଙ୍କର ଥିଲା । କେବେ କାହାର ଦେହ ଖରାପ ହେଲେ, ଯେତେବାଟ ହେଉ ତାକୁ ଦେଖିବାକୁ ଚାଲିଯାଉଥିଲେ । ଛାତ୍ର ଛାତ୍ରୀମାନେ ମଧ ନିଜ ଜୀବନର ପ୍ରତ୍ୟେକଟି ଘଟଣା, ଦୁଃଖ, ସୁଖ ଆଦି ତାଙ୍କ ନିକଟରେ କହି ନିଜ ଜୀବନର ସମସ୍ୟାର ସମାଧାନ କରୁଥିଲେ ।



Digitized by srujanika@gmail.com

ଛାତ୍ରବତ୍ସଳ, ଗବେଷକ, ସାହିତ୍ୟିକ, ଉଦାର ପ୍ରକୃତିର ସେ ଯାହାକିଛି ବି ଥାନ୍ତୁ ନା କାହିଁକି ଆମ ପାଇଁ ତ କେବଳ ବାବୁଜୀ ହିଁ ଥିଲେ । ପିଲାମାନେ ତ ତାଙ୍କର ଜୀବନ ଥିଲେ । ମୋର ମନେ ଅଛି ରାଞ୍ଚିରେ ଥିବାବେଳେ, ହିନ୍ଦୁ ମୁସଲମାନ ମଧ୍ୟରେ ଲଢ଼େଇ ଚାଲିଥାଏ । ସାରା ରାତି ବାହାରେ ରହି ସେ ଆମକୁ ପହରା ଦେଉଥାନ୍ତି, କାଳେ କେତେବେଳେ କିଏ ପଶି ଆସିବ । ହିନ୍ଦୁମାନେ ଜଣେ ମୁସଲମାନକୁ ଗୋଡ଼ାଉଥିବା ବେଳେ ସେ ଆମ ଘରକୁ ଦଉଡ଼ି ଆସିଲା । ଜଣାଶୁଣା ଲୋକ । ସେ ମୁସଲମାନ ହୋଇଥିଲେ ମଧ୍ୟ ବାବୁଜୀ ତାକୁ ଘରେ ଲୁଚାଇ ରଖିଲେ । ଭୋରୁ ସେ ନିଜେ କାଳେ ବାବୁଜୀଙ୍କ ଉପରେ କିଛି ବିପଦ ଆସିବ ଭାବି ଚାଲିଗଲା । ସେ ଘରୁ ବାହାରି ଅଳ୍ପଦୂର ଯାଇଛିକି ନାହିଁ ତାକୁ କେହି ମାରିଦେଇଥିଲା ।

ଯେତେ କଷ୍ଟ ହେଲେ ବି ଆମ ମୁହଁରେ ହସ ଦେଖିବାହିଁ ତାଙ୍କ ଉଦ୍ଦେଶ୍ୟଥିଲା, ଆମ ଆଖିରୁ ଲୁହ ଗଡ଼ିଲେ ତାଙ୍କୁ ଲୁହ ଗଡ଼ିଲା ପରି ଲାଗୁଥିଲା । ହୁଏତ ସେଥିପାଇଁ ସେ ତାଙ୍କ କଷ୍ଟ ଆମ ଆଗରେ କେବେ ପ୍ରକାଶ କରନ୍ତି ନାହିଁ । ମାଆ ଚାଲିଗଲା, ଭାଇ ଦୂରରେ, ତେଣୁ ସେ ହିଁ ଆମ ପାଇଁ ସବୁକିଛି ଥିଲେ । ନିଜେ ହସି ଆମକୁ ହସାଉଥିଲେ । ମୃତ୍ୟୁ ପୂର୍ବଦିନ ରାତି ବାରଟାରେ । ଯମ ସହିତ ଜୀବନ ମରଣ ସଂଘର୍ଷ କରୁଥିବାବେଳେ ମଧ୍ୟ, ମୁଁ ଯେତେବେଳେ ତାଙ୍କ ପାଖରେ ଯାଇ ବସିଲି ମତେ ଅନାଇ ହସି ଦେଲେ । ସେ ସୁନ୍ଦର ସାତ୍ତ୍ୱିକ ହସ ଅଳ୍ପକେତେ ସମୟ ପାଇଁ ତାଙ୍କୁ ମୁହଁରେ ସେମିତି ରହିଲା ଯାହାକି ମୁଁ ଜୀବନ ସାରା ଭୁଲିପାରିବି ନାହିଁ ।



# ଜଣେ ପ୍ରିୟପରିଜନର ଶ୍ରଦ୍ଧାଞ୍ଜଳି

ଡକ୍ଟର ବିରାଜ ମୋହନ ଦାସ

ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । କିଏ କ'ଣ ଆରପାରିର ଡାକକୁ କେବେ ଏଡ଼ାଇ ପାରିଛି, ନା ପାରିବ ? କିନ୍ତୁ ବେଳେବେଳେ ମୃତ୍ୟୁ ଆକସ୍ମିକ ଭାବରେ ଆସି ପହଞ୍ଚି ଯାଉଥିବାରୁ ସୃଷ୍ଟି ହୋଇଥାଏ ଅନେକ ବିଭ୍ରାଟ । ତାହା କେବଳ ଅବିଶ୍ୱାସ୍ୟ ମନେ ହୁଏ ନାହିଁ ମାନସିକ ସ୍ତରରେ ମଧ୍ୟ ସେଭଳି ମୃତ୍ୟୁକୁ ଗ୍ରହଣ କରିନେବା ଆଦୌ ସହଜ ହୁଏ ନାହିଁ, ଆତ୍ମୀୟ ସ୍ୱଜନ ଏବଂ ପ୍ରିୟ ପରିଜନଙ୍କ ପକ୍ଷରେ । ସେମିତିକା ଏକ ଆକସ୍ମିକ ଅଘଟଣ ସଂଘଟିତ ହୋଇଛି ନିକଟରେ । ଓଡ଼ିଆ ପ୍ରାଚୀନ ଏବଂ ମଧ୍ୟ ଯୁଗୀୟ ସାହିତ୍ୟର ବିଶିଷ୍ଟ ଗବେଷକ, ବିଦ୍ୱାନ୍, ଯଶସ୍ୱୀ ଆଲୋଚକ ପ୍ରଫେସର ଡକ୍ଟର



Digitized by srujanika@gmail.com

କୃଷ୍ଣଚରଣ ସାହୁ ଆଉ ଇହ ଜଗତରେ ନାହାନ୍ତି । ଏହା ଅବିଶ୍ୱାସ୍ୟ ହେଲେ ମଧ୍ୟ ସତ । ତାଙ୍କ ଭଳି ଉଦାର ପ୍ରାଣ, ଉଚ୍ଚମନା ବ୍ୟକ୍ତିଙ୍କର ପ୍ରିୟ ପରିଜନମାନଙ୍କର ପରିଧି ବ୍ୟାପକ ନିଶ୍ଚୟ । ତେବେ ତାରି ଭିତରେ ମୁଁ ନିଜକୁ ଜଣେ ବୋଲି ମନେ କରେ । ଅବଶ୍ୟ ସେ ଅଧିକାର ମୋତେ ସେ ଦେଇଥିଲେ ମୋ ପ୍ରତି ତାଙ୍କର ଶ୍ରଦ୍ଧାଶୀଳ ମନୋଭାବ ମାଧ୍ୟମରେ ।

ଗତବର୍ଷ ଏବଂ ତା' ପୂର୍ବ ବର୍ଷ ତାଙ୍କ ଜୟନ୍ତୀ ପାଳନ ନିମିତ୍ତ ଆୟୋଜିତ ସମ୍ବର୍ଦ୍ଧନା ସଭାରେ ଆୟୋଜକମାନଙ୍କ ଅନୁରୋଧ କ୍ରମେ ମୋତେ ଦେବାକୁ ପଡ଼ିଥିଲା ସମ୍ବର୍ଦ୍ଧିତ ବ୍ୟକ୍ତିତ୍ୱ, ଡକ୍ଟର କୃଷ୍ଣଚରଣଙ୍କ ସମେତ ଅତିଥିମାନଙ୍କର ପରିଚୟ । ମାତ୍ର ସେ ପରିଚୟ ପ୍ରଦାନରେ ସନ୍ତୁଷ୍ଟ ନଥିଲି ମୁଁ । କାରଣ ସେ ଗୁରୁଦାୟିତ୍ୱ ମୋତେ ତୁଲାଇବାକୁ ପଡ଼ିବ ବୋଲି ସୂଚନା ମୋତେ ମିଳିନଥିବାରୁ ମୋର ପୂର୍ବ ପ୍ରସ୍ତୁତି ନଥିଲା । ଆଉ ମାତ୍ର ଅଳ୍ପଦିନ ପରେ ଏଇମାସ ୧୬ ତାରିଖ ଦିନ ତାଙ୍କର ଯେଉଁ ଜୟନ୍ତୀ ଉତ୍ସବ ପାଳିତ ହେବାକୁ ଥିଲା ସେଦିନ ମୁଁ ଆୟୋଜକମାନଙ୍କୁ ଅନୁରୋଧ କରି ପୂର୍ବ ପ୍ରସ୍ତୁତି ସହ ତାଙ୍କ ପରିଚୟ ଦେବି ବୋଲି ସ୍ଥିର କରିଥିଲି । କିନ୍ତୁ ସେ ସୁଯୋଗ ମିଳିଲା ନାହିଁ କି କେବେ ବି ଆଉ ମିଳିବ ନାହିଁ ।

ତାଙ୍କ ସହିତ ପରିଚୟ ମୋର ୧୯୮୦ ମସିହାରୁ । ଅଣାଅଶୀ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟରେ ଜଣେ ସହକାରୀ ରୂପେ ଯୋଗଦେବାପରେ । କିନ୍ତୁ ପରେ ଏହାଖାଲି ପରିଚୟରେ ସୀମିତ ନରହି ଘନିଷ୍ଠତର ହୋଇଗଲା । କାର୍ଯ୍ୟାଳୟ ସମ୍ପର୍କରୁ ଏକଦମ୍ ଅଲଗା । ଅବଶ୍ୟ ଏହାର କାରଣ ଥିଲା ମୋର ଯତ୍ କିଞ୍ଚିତ୍ ସାହିତ୍ୟାନୁରାଗ । ପରେ ପରେ ସେ ମୋତେ ତାଙ୍କ ପ୍ରିୟ ପରିଜନମାନଙ୍କର ପରିସରଭୁକ୍ତ କରିନେଇ ତାଙ୍କ ପୃଷ୍ଠପୋଷକତାରେ ଅନୁଷ୍ଠିତ ଯାବତୀୟ ପାରିବାରିକ, ସାଂସ୍କୃତିକ ତଥା ସାହିତ୍ୟିକ ଉତ୍ସବାନୁଷ୍ଠାନଗୁଡ଼ିକରେ ମୋତେ ସାମିଲ କଲେ । ଏଥିପାଇଁ ନିଜକୁ ଗୌରବାନ୍ୱିତ ମନେ କରୁଥିଲି ମୁଁ ।

ଭୁବନେଶ୍ୱରବାସୀ ମୋର ପ୍ରମୁଖ ମଙ୍ଗଳାକାଂକ୍ଷୀମାନଙ୍କ ଭିତରେ ସେଥିଲେ ଅନ୍ୟତମ । ବିନାଦ୍ୱିଧାରେ, ଅନାୟାସରେ ସେ ରାଜି ହୋଇଯାନ୍ତି ଆମମାନଙ୍କଦ୍ୱାରା ଆୟୋଜିତ ହେଉଥିବା ସାହିତ୍ୟିକ ସଭାମାନଙ୍କରେ ପୌରୋହିତ୍ୟ କରିବା ପାଇଁ । ସେଥିପାଇଁ ଯାଇ ତାଙ୍କ ପାଖରେ ପହଞ୍ଚିଲେ, କହନ୍ତି; 'ଆରେ ତୁମେ ସଭାକରୁଚ- କହୁଚ, ଯିବି ନାହିଁନା ! ଯିବି, ଯାଇ ପହଞ୍ଚିବି- ଯାଆ' । ଏଇ ଗତ ଫେବୃଆରୀ ୧୩ ତାରିଖ ଦିନ 'କୃଷ୍ଣ ପ୍ରସାଦ ସ୍ମୃତି ପରିଷଦ' ଆନୁକୂଲ୍ୟରେ କଥାକାର ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ରଙ୍କର ତୃତୀୟ ବାର୍ଷିକ ଶ୍ରାଦ୍ଧୋତ୍ସବ ଉପଲକ୍ଷେ ଯେଉଁ ସଭା କରିଥିଲୁ ତାହା ତାଙ୍କର ଅଧ୍ୟକ୍ଷ୍ୟତାରେ ଅନୁଷ୍ଠିତ ହୋଇଥିଲା । ଯେତବେଳେ କୌଣସି ସାହିତ୍ୟାଲୋଚନା ପ୍ରସଙ୍ଗରେ ମୁଁ କହେ; 'ସାର୍ ଏକାମ ମୋଦ୍ୱାରା ହବନି ।' ସେ ବାରମ୍ବାର ପିଠି ଥାପୁଡ଼ାଇ ଦେଇ କହନ୍ତି, 'ତୁମେ ପାରିବ, ବେଶ୍ ପାରିବା' । ଏମିତି ସାହସ ଏବଂ ପ୍ରେରଣା ପ୍ରଦାନ, ଏକାଳରେ ଦୁର୍ଲ୍ଲଭ ନିଶ୍ଚୟ । ମୋ ଉପରେ କେବଳ ନୁହେଁ, ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା ସବୁଛାତ୍ର ଛାତ୍ରୀମାନଙ୍କ ଉପରେ । ଏତାଦୃଶ ଛାତ୍ରବତ୍ସଳତା ଏବେ ସହଜଲଭ୍ୟ ନୁହେଁ । ତାଙ୍କ ପାଖରେ ମୁଁ କୌଣସି ଉପାଧି ପାଇଁ ପାଠ ପଢ଼ି ନାହିଁ ସତ; ମାତ୍ର ସାହିତ୍ୟ ସଂପର୍କିତ ଜ୍ଞାନ ପ୍ରଦାନ କରି ଯେଉଁ କେତେଜଣ ମୋ ମନରେ ସେଥିପ୍ରତି ଆଗ୍ରହ ସୃଷ୍ଟି କରିଛନ୍ତି ସେମାନଙ୍କ ଭିତରେ ସେ ଜଣେ । ଏହି



Digitized by srujanika@gmail.com

ବର୍ଷିୟାନ୍ ସାହିତ୍ୟ ସାଧକମାନେ ମୋତେ ପରିଣତ ବୟସରେ ସାହିତ୍ୟ-ଶିକ୍ଷା ପ୍ରଦାନ କରିଥିବାରୁ ସେମାନଙ୍କୁ ମୁଁ 'ଦୀକ୍ଷାଗୁରୁ' ରୂପେ ବରଣ କରିଛି ।

ଅବସର ଗ୍ରହଣପରେ ସେ ଯାଇ ରହିଲେ ପ୍ରସିଦ୍ଧ ତୀର୍ଥସ୍ଥଳୀ ଏକାମ୍ରକ୍ଷେତ୍ରର ପେଣ୍ଠ; ଲିଙ୍ଗରାଜ ମନ୍ଦିରର ଅଦୂରରେ । ବେଶ୍ ସୁନ୍ଦର ପରିବେଶ । ବିଭୀଷଣେଶ୍ୱର ମନ୍ଦିରର ବେଢ଼ାକୁ ଲାଗି ଘର । ବାହାରପଟ ବାରନ୍ଦାରେ ବସି ସାମ୍ନାକୁ ଅନାଇଲେ ଆଖିରେ ପଡ଼େ ବିଭୀଷଣେଶ୍ୱରଙ୍କ ମନ୍ଦିର ପୁଣି ଟିକିଏ ମୁହଁ ବୁଲାଇଦେଲେ ଦିଶିଯାଏ ଲିଙ୍ଗରାଜ ମହାପ୍ରଭୁଙ୍କ ମନ୍ଦିରର ଅଭୟ ପ୍ରଦାୟୀ ନେତ ।

ସେତେବେଳେ ଅଧିକ ସମୟ ବୋଧହୁଏ ସେ ବିନିଯୋଗ କରୁଥିଲେ ପୋଥି ସଂପାଦନାରେ । ଯେତେବେଳେ ତାଙ୍କ ପାଖକୁ ଯାଇଛି ଦେଖେ ଚାରିପଟେ ଖେଳେଇ ହୋଇ ପଡ଼ିଥାଏ ତାଳପତ୍ରର ପୋଥି । ତା'ଭିତରୁ ଖେଦାଟିଏ ଧରି ହଜିଯାଇଥାନ୍ତି ସେ । ତା'ରି ଫଳଶ୍ରୁତି ସ୍ୱରୂପ ଏହି ସମୟ ଭିତରେ ଆମକୁ ମିଳିଛି ଜଗମୋହନ ରାମାୟଣ ଓ ହରିବଂଶ ଗ୍ରନ୍ଥ ଦୁଇଟି । ଓଡ଼ିଶା ସରକାରଙ୍କଦ୍ୱାରା ପ୍ରସ୍ତୁତ କରାଯାଉଥିବା ଓଡ଼ିଆ ଶବ୍ଦକୋଷର ସଂକଳନରେ ମଧ ରହିଥିଲା ତାଙ୍କର ପ୍ରମୁଖ ଭୂମିକା । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ-କୃତିଗୁଡ଼ିକର ବହୁ ଆୟସସାଧ୍ୟ ସଂପାଦନା କାର୍ଯ୍ୟ ସେ କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ଦୃଷ୍ଟିକୋଣରୁ ସେଗୁଡ଼ିକୁ ବିଶ୍ଳେଷଣ ତଥା ଅନୁଶୀଳନ କରିଯାଇଛନ୍ତି । ଏହି ସଂପାଦିତ ଗ୍ରନ୍ଥଗୁଡ଼ିକର ମୁଖବନ୍ଧ ରଚନାରେ ସେଯେଉଁ ମୌଳିକତା ଏବଂ ଅନ୍ତର୍ଦୃଷ୍ଟିର ପରିଚୟ ପ୍ରଦାନ କରିଛନ୍ତି ତାହା ଅନନ୍ୟ । କେବଳ ଭାରତୀୟ ସାହିତ୍ୟ କ୍ଷେତ୍ରରେ ନୁହେଁ ଆନ୍ତର୍ଜାତିକ ସାହିତ୍ୟ କ୍ଷେତ୍ରରେ ମଧ ଏହି ମୁଖବନ୍ଧ ସମେତ ତାଙ୍କ ଇଂରାଜୀ ନିବନ୍ଧ ଗୁଡ଼ିକ ଓଡ଼ିଆ ପ୍ରାଚୀନ ସାହିତ୍ୟର ସ୍ଥାନକୁ ଯେ ସୁନିର୍ଦ୍ଦିଷ୍ଟ କରିବାକୁ କ୍ଷମ ହେବ ଏଥିରେ ଦ୍ୱିମତ ନାହିଁ ।

ଗତ ଶୁକ୍ରବାର ତା ୪।୪।୯୭ ରିଖ ସଂଧ୍ୟା ସମୟରେ ଦେଖାହୋଇଥିଲା ତାଙ୍କ ସାଙ୍ଗରେ । ଅଳ୍ପ କଥାବାର୍ତ୍ତା ମଧ ହୋଇଥିଲୁ । କିଛି ଅଧିକ ସମୟ ରହିଯିବାରୁ କହିଥିଲେ, 'ଯାଉନ କାହିଁକି, ରାତି ହେଲାଣି !' ରବିବାର ଦିନ ମଧ୍ୟାହ୍ନରେ ତାଙ୍କ ସ୍ୱର୍ଗାରୋହଣ କଥା ଶୁଣିବାବେଳକୁ ପାର୍ଥିବ ଶରୀରକୁ ତାଙ୍କର ନିଆ ହୋଇ ଯାଇଥିଲା ପୁରୀର ସ୍ୱର୍ଗଦ୍ୱାରକୁ । ମୋର ଶେଷଦେଖା ତାଙ୍କ ସହିତ ଖୁବ୍‌କମ୍‌ଦିନ ତଳେ ଜୀବିତାବସ୍ଥାରେ ହୋଇଥିବାରୁ ସେ ନାହାନ୍ତି କଥାଟି ମୋ ପାଇଁ ଅବିଶ୍ୱାସ୍ୟ । ଲାଗୁଛି, ସେ ନୂଆ ପୋଥିଗଦାଟିଏକୁ ରୂପାନ୍ତରିତ ହୋଇଯାଇଛନ୍ତି । ତେବେ ତାଙ୍କ ଘରେଥିବା ତାଳପତ୍ର ପୋଥିମାନଙ୍କ ଭଳି ନୁହେଁ ସେ ପରିଣତ ହୋଇଛନ୍ତି ଗାଁରେ ଆମଠାକୁର ଘରେ, ଚନ୍ଦନ ସିନ୍ଦୂର ବିମଣ୍ଡିତ ହୋଇ ପୂଜା ପାଉଥିବା ଭାଗବତ ଗାଦୀଙ୍କ ରୂପରେ- ଯାହାଙ୍କ ସ୍ୱରୂପ ମନେ ପକାଇ ହାତ ଯୋଡ଼ି ବସିଲେ ଦୁର୍ବଳ ହୋଇଯାଉଥିବା ମନୋବଳ, ଦୃଢ଼ ହୋଇଯିବ । ମନରେ ପଙ୍ଗୁ ଗିରି ଲଘନ କରିବାର ସାହସ ଭରିଯିବ ।

❒ ଜି.ଏଲ. ୧୦୮
ବୀରସୁରେନ୍ଦ୍ର ସାଏ ନଗର, ଭୁବନେଶ୍ୱର - ୪



Digitized by srujanika@gmail.com

# ଅଶ୍ରୁଳ ପ୍ରଣାମ

ଡଃ ବିଜୟ କୁମାର ମହାନ୍ତି

ପ୍ରାଚୀନ ତଥା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ଗବେଷକ ତଥା ସମାଲୋଚକ ଭାବେ ଡଃ ସାହୁଙ୍କୁ କେବଳ ଜାଣିଥିଲି । ସାକ୍ଷାତ ହୋଇ ନଥିଲା କେବେ ୧୯୮୧ରେ ଶିକ୍ଷକ-ଗବେଷକ ଭାବେ ବାଣୀବିହାର ଓଡ଼ିଆ ବିଭାଗରେ ଯୋଗଦେଲା ପରେ ତାଙ୍କର ପ୍ରତ୍ୟକ୍ଷ ସଂସର୍ଶରେ ଆସିଲି । ସେ ମୋ ଗବେଷଣାର ଦିଗ୍‌ଦର୍ଶକ ନଥିଲେ । କିନ୍ତୁ ସବୁ ସମୟରେ ତାଙ୍କର ସହାସ୍ୟ ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ମୋତେ ଉତ୍ସାହିତ କରୁଥିଲା । ପ୍ରଥମ ସାକ୍ଷାତରୁ ହିଁ ତାଙ୍କ ପ୍ରତି କେମିତି ଏକ ଭକ୍ତିପୂତ ଆନ୍ତରିକତା ମୋ' ଭିତରେ ସୃଷ୍ଟି ହୋଇଥିଲା ।

ମୁଁ ହସକୁ ଭଲ ପାଏ । ମନ ଖୋଲି ହସୁଥିବା ମଣିଷକୁ ଭକ୍ତି/ଶ୍ରଦ୍ଧା କରେ । ଡଃ ସାହୁଙ୍କର ସ୍ନେହସିକ୍ତ ହସ ଭିତରେ ମୁଁ ବାନ୍ଧି ହୋଇଯାଇଥିଲି । ଷୋଳବର୍ଷ ଭିତରେ ତାଙ୍କର ସେ ହସ ତାଙ୍କର କେବେ ମଉଳି ଯାଇଥିବାର ମୁଁ ଦେଖିନି । ହାଟ, ବଜାର, ସାହିତ୍ୟ ସଭା, ପରୀକ୍ଷା ଖାତା ଦେଖା-ଯେଉଁଠି ଯେତେବେଳେ ଦେଖା ହୋଇଛନ୍ତି ଚେନାଏ ହସ ଭିତରେ ଭଲମନ୍ଦ କଥା ହୋଇଛନ୍ତି । ପ୍ରେରଣା ଦେଇଛନ୍ତି । ଆଶୀର୍ବାଦ କରିଛନ୍ତି । ତାଙ୍କ ଘରକୁ ସଶ୍ରଦ୍ଧ ନିମନ୍ତ୍ରଣ କରିଛନ୍ତି । ତାଙ୍କର ତେଜସ୍ୱୀ ଠାଣି ଭିତରେ ଅମାୟିକ ବ୍ୟକ୍ତିତ୍ୱ, ଜ୍ଞାନର ଗଭୀରତା କେବଳ ମତେ ନୁହେଁ, ଅନେକଙ୍କୁ ମୁଗ୍ଧ କରିଥିଲା ।

ହଠାତ୍ ଶୁଣିଲି ସାର୍‌ଙ୍କ ଦେହ ଖରାପ କଥା । ସକାଳୁ ସକାଳୁ ଦେଖିବାକୁ ଗଲି ତାଙ୍କ ଘରକୁ । ପାଦ ଛୁଇଁ ପ୍ରଣାମ କଲି । ମତେ ଦେଖି କ'ଣ କହିଲେ କିଛି ବୁଝି ହେଲାନି । ଲୁହ ଟୋପାଏ ଆଖି କଣକୁ ବୋହି ଆସିଲା । ସଦା ହସ ହସ ମୁହଁରେ ଅନେକ ଯନ୍ତ୍ରଣାର ଆଭାସ ଫୁଟି ଉଠୁଥାଏ । ନିଃଶ୍ୱାସ ନେବାରେ ଭୀଷଣ କଷ୍ଟ ହେଉଥାଏ । ମୋ ମୁହଁକୁ ଚାହିଁ ରହଥାନ୍ତି । ହେଲେ କିଛି କହି ପାରୁ ନଥାନ୍ତି । ଗୋଟାଏ ବିକଳ ବିଦଗ୍ଧ ପରିବେଶ ଭିତରେ ଘରର ଅନ୍ୟମାନେ ଉପସ୍ଥିତ ଥାନ୍ତି । ଡାକ୍ତରଙ୍କ ନିରାଶାବାଣୀ ସମସ୍ତଙ୍କୁ ବିଚଳିତ କରି ଦେଇଥାଏ । ମୃତ୍ୟୁ ସହିତ ସଂଗ୍ରାମରତ ସାରଙ୍କ ସେ ଯନ୍ତ୍ରଣା କାତର ମୁହଁକୁ ଅଧିକ ସମୟ ଦେଖି ପାରିଲିନି । ସେଇ ଅବସ୍ଥାରେ ଦେଖି ହରାଇଥିବା ମୋର ବାପା ବୋଉଙ୍କ ରୂପ ମୋ ଆଖି ଆଗରେ ଭାସି ଉଠିଲା । ସାରଙ୍କ ପୁଅ, ଝିଅଙ୍କୁ ଚାହିଁଲି । ହରାଇବା କଷ୍ଟ ମୂଲ୍ୟ କରିବାକୁ ଭଗବାନ ତାଙ୍କୁ ଶକ୍ତି ଦିଅନ୍ତୁ - ମନେ ମନେ ଏତିକି ପ୍ରାର୍ଥନା କଲି । ସାରଙ୍କୁ ଏ ଜନ୍ମର ଶେଷ ସାକ୍ଷାତ ଓ ଅଶ୍ରୁଳ ପ୍ରଣାମ ଜଣାଇ ଆସିଲି ।

ଚବିଶ ଘଣ୍ଟା ପୂରିଲାନି । ଖବର ପାଇଲି 'ସାର୍ ଆଉ ନାହାନ୍ତି ।' ହସରୁ ଆରମ୍ଭ ହୋଇ ଯନ୍ତ୍ରଣାରେ ଶେଷ ହୋଇଥିବା ମୁହଁର ଅନେକ ଛବି ଆଖି ଆଗକୁ ଆସିଲେ । ଏବେ ମଧ୍ୟ ଆସୁଛନ୍ତି । ତାଙ୍କର ଅମର ଆତ୍ମା ଶାନ୍ତି ଲାଭକରୁ ।

❒ ବି.ଜେ.ବି. କଲେଜ, ଭୁବନେଶ୍ୱର



Digitized by srujanika@gmail.com

# ତ୍ୱମେବ ଗୁରୁ, ଶିଷ୍ୟ ତ୍ୱମେବ !

ଅଧ୍ୟାପକ ହୃଷୀକେଶ ମଲ୍ଲିକ

ପ୍ରଫେସର ଡକ୍ଟର କୃଷ୍ଣ ଚରଣ ସାହୁ ଚାଲିଗଲେ- ଏଇ ଦାରୁଣ ଦୁଃସଂବାଦଟି ମୁଁ ପାଇଲି ଗତ ତା ୭.୦୪.୯୭ରିଖ ରବିବାର ଅପରାହ୍ଣରେ । ସେତେବେଳକୁ ପୁରୀ ସ୍ୱର୍ଗଦ୍ୱାରାଠାରେ ସ୍ୱର୍ଗତ ସାହୁଙ୍କର ମରଶରୀରର ଜଳି ଯାଇ ସାରିଥିଲା । ଦୁଃଖ ରହିଗଲା, ତାଙ୍କର ଅସୁସ୍ଥତା ସଂବାଦ ମୁଁ କୌଣସି ପ୍ରକାରେ ପାଇ ପାରିଲି ନାହିଁ କି ମୃତ୍ୟୁ ପୂର୍ବରୁ ତାଙ୍କ ସହ ଥରୁଟିଏ ସାକ୍ଷାତ୍ କରି ପାରିଲି ନାହିଁ । ପ୍ରାୟ ଛ'ମାସ ପୂର୍ବରୁ ବାଣୀବିହାର ଓଡ଼ିଆ ବିଭାଗରେ ଡକ୍ଟର ବୈଷ୍ଣବ ଚରଣ ସାମଲଙ୍କ ରୁମ୍‌ରେ ତାଙ୍କ ସହ ମୋର ଶେଷ ସାକ୍ଷାତ୍ ହୋଇଥିଲା । ସାଥିରେ ଥିଲେ ତାଙ୍କର ଗବେଷକ ଛାତ୍ର ମୋର କବି ବନ୍ଧୁ ଡକ୍ଟର ପ୍ରସନ୍ନ କୁମାର ମହାନ୍ତି । ହସ ହସ ମୁହଁରେ ତାଙ୍କର ସ୍ୱଭାବ ସୁଲଭ ଢଙ୍ଗରେ ପଚାରିଲେ - 'କିହୋ', ତମେ ଏଇନେ କୋଉଠି ?' କହିଲି- 'ସାର୍, ରେଭେନ୍ସାରେ' । ପରମ ତୃପ୍ତିରେ କହିଲେ - 'ଭଲ, ଭଲ !'

୧୯୭୬-୧୯୭୮ ଏଇ ଦୁଇବର୍ଷ ମୁଁ ତାଙ୍କର ଛାତ୍ର ଥିଲି, ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ । ସେ ମଧ୍ୟଯୁଗର ସାହିତ୍ୟ ପଢ଼ାଉଥିଲେ । ଶ୍ରେଣୀ ଗୃହକୁ ଯିବା ଆଗରୁ ପରୀକ୍ଷା ଦେବାକୁଥିବା ମେଧାବୀ ଛାତ୍ରଟିର ଅଂତରଂଗ ଆବେଗ ନେଇ ଅଧ୍ୟେତବ୍ୟ ବିଷୟରେ ତାଙ୍କର ପ୍ରସ୍ତୁତି ପର୍ବକୁ ଯେଉଁମାନେ ପ୍ରତ୍ୟକ୍ଷ ନକରିଛନ୍ତି, ଭାଷାରେ ବୁଝାଇ ତାଙ୍କୁ ଏବିଷୟରେ କହିହେବ ନାହିଁ । ତାଙ୍କପରି କ୍ୱଚିତ୍ ଅଧ୍ୟାପକ, ଜୀବନରେ ମୁଁ ଦେଖିଛି, ଯେଉଁମାନେ ନିଜ ପାଠ ବିଷୟରେ ଏତେଟା ସଚେତନ । ଅପରିହାର୍ଯ୍ୟ କାରଣ ନଥିଲେ ଆମେ କେହି ତାଙ୍କ କ୍ଲାସ୍ ବନ୍ଦ କରୁ ନଥିଲୁ । ସେ ଏପରି ଭାବେ ବିଷୟର ଅବତାରଣା କରୁଥିଲେ, ତାହା ସବୁଦିନ ପାଇଁ ମନ ଓ ହୃଦୟରେ ଛାପା ହୋଇ ରହିଯାଉଥିଲା । ଯେଉଁମାନେ ତାଙ୍କ କ୍ଲାସ୍‌ର ପଠିତାଂଶକୁ ଲେଖି ନେଉଥିଲେ ତାହା କେବଳ ପରୀକ୍ଷା ନୁହେଁ, ଜୀବନ ପାଇଁ ଏକ ବ୍ୟାପକ ଓ ଦୃଢ଼ୀଭୂତ ସାରସ୍ୱତ ପ୍ରସ୍ତୁତି ହୋଇ ରହିଯାଉଥିଲା । ପ୍ରାଚୀନ ଓ ମଧ୍ୟଯୁଗ- ଉଭୟ ସାହିତ୍ୟରେ ତାଙ୍କର ଅଦ୍ଭୁତ ବ୍ୟୁତ୍ପତ୍ତି ଥିଲା । ସାହିତ୍ୟକୁ ଶ୍ରଦ୍ଧାକରିବାର ଅନୁରାଗ ମୁଁ ଅନେକଙ୍କ ପରି ତାଙ୍କଠାରୁ ଶିଖିଥିଲି । ଆଜି ତାଙ୍କର ସ୍ୱର୍ଗପ୍ରାପ୍ତି ପରେ ଏକଥାରେ ଅକୁଣ୍ଠଭାବେ ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ ।

ପ୍ରଫେସର ସାହୁଙ୍କ ପ୍ରକୋଷ୍ଠଟି ସବୁବେଳେ ଗବେଷଣାରତ ଛାତ୍ର ଛାତ୍ରୀଙ୍କର ସାଧନକୁଞ୍ଜ ହୋଇ ରହୁଥିଲା । ଖେଦା ଖେଦା ଦୁଷ୍ପ୍ରାପ୍ୟ ତାଳ ପତ୍ର ପୋଥି । ଅଧ୍ୟୟନ, ଅନୁଧ୍ୟାନ, ମନନ ଓ ଗବେଷଣାରେ ସକାଳୁ ସଂଜ ହୋଇ ଯାଉଥିଲା । ପ୍ରାଚୀନ ସାହିତ୍ୟ ଓ ସାହିତ୍ୟ ସାଧକମାନଙ୍କ



Digitized by srujanika@gmail.com

ସଂପର୍କରେ ଗବେଷଣା କଲାବେଳେ ତାଙ୍କର ଦୃଷ୍ଟିକୋଣ ଅତ୍ୟନ୍ତ ମୌଳିକ ଥିଲା । ବୋଧହୁଏ ପ୍ରାଚୀ ଅନୁଷ୍ଠାନରେ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରମୁଖଙ୍କୁ ବାଦ୍ ଦେଲେ ପ୍ରାଚୀନ, ମଧ୍ୟ ଯୁଗୀୟ ସାହିତ୍ୟରେ ଏତେ ପ୍ରବଳ ନିଷ୍ଠା ଖୁବ୍ କ୍ୱଚିତ୍ ସାହିତ୍ୟ ସାଧକ, ଅଧ୍ୟାପକ, ଗବେଷକ ମାନଙ୍କଠାରେ ଦେଖିବାକୁ ମିଳେ । ଆମେ ଏମ୍.ଏ. ପଢ଼ିବା ବେଳକୁ ତାଙ୍କର 'କହେ କୃଷ୍ଣ ଦାସ କବି' ଗବେଷଣାତ୍ମକ ସମାଲୋଚନା ଗ୍ରନ୍ଥଟି ସଦ୍ୟ ପ୍ରକାଶ ପାଇଥାଏ । ଏହି ବହିଟି ପଢ଼ି ତାଙ୍କ ପ୍ରତି ମୋର ଶ୍ରଦ୍ଧା ଜନ୍ମ ହୋଇଥିଲା । ତାଛଡ଼ା ଡକ୍ଟର ସାହୁଙ୍କର ହିନ୍ଦୀ ସାହିତ୍ୟରେ ଗଭୀର ପ୍ରବେଶଥିଲା । ଏଣୁ ସାହିତ୍ୟ ସମାଲୋଚନାରେ ଏକ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣରେ ତାଙ୍କୁ ଏହି ବହୁଭାଷା ଜ୍ଞାନ ଓ ବହୁ-ଅଧ୍ୟୟନ ଜ୍ଞାନ ସହାୟତା କରୁଥିଲା । ଦାଣ୍ଡି ରାମାୟଣ (୰ବଳରାମ ଦାସ କୃତ) ଉପରେ ସେ ଖୁବ୍ ପଣ୍ଡିତମନ୍ୟ ବ୍ୟକ୍ତିଥିଲେ ।

ପ୍ରସଙ୍ଗ ବହିର୍ଭୂତ ହେଲେମଧ ଅନ୍ୟ ଗୋଟିଏ କଥା ଉଲ୍ଲେଖ କରିବାର ଅପରିହାର୍ଯ୍ୟତା ମୁଁ ଏଠାରେ ସଂବରଣ କରିପାରୁ ନାହିଁ । ନିକଟରେ ଏକ ନିବନ୍ଧ ଲେଖି (ଚନ୍ଦ୍ରିକା ମହାପାତ୍ରଙ୍କ ଦ୍ୱାରା ପ୍ରକାଶିତ ମାସିକ ମହିଳା ପତ୍ରିକା ସାବିତ୍ରୀରେ ପ୍ରଥମେ ଓ ହଳଧର ଧୀରଙ୍କଦ୍ୱାରା ସଂପାଦିତ । 'ଚଲାପଥ' ବାର୍ଷିକ ସଂଖ୍ୟା - ୧୯୯୭ରେ ପ୍ରକାଶିତ) ସାରଳା ଦାସଙ୍କ ଜନ୍ମସ୍ଥାନ ଯାଜପୁର ମୁଁ ପ୍ରମାଣ କରିବାର ନମ୍ର ଉଦ୍ୟମ କରିଛି (ଯାହାକି, ଏଯାବତ୍ ସମାଲୋଚକ ଓ ଗବେଷକଙ୍କଦ୍ୱାରା ଖଣ୍ଡିତ ହୋଇନାହିଁ ।) ଏଣୁ ଯାଜପୁର ନିକଟବର୍ତ୍ତୀ 'କେନ୍ଦ୍ରାପଡ଼ା ଅଞ୍ଚଳର ବହୁ ପୁରୁଣା ଖାନ୍ଦାନି ପରିବାର ମଧ୍ୟରୁ ଯେଉଁ ପୋଥି ଏବେବି ଲବ୍ଧ ହେଉଛି ତାହାକୁ ସାରୋଳ ମହାଭାରତର ଅଞ୍ଚଳରୁ ମିଳୁଥିବା ପୋଥି ଅପେକ୍ଷା ଅଧିକ ମୌଳିକ କହିବା ମଧ କେତେକ ଦୃଷ୍ଟିରୁ ଅସମୀଚୀନ ନୁହେଁ ।

ତେବେ ସେ ଯାହା ହେଉ, ମୁଁ ମୂଳତଃ ଗବେଷକ ନୁହେଁ, କବି । ଏଣୁ ଡଃ ସାହୁ ଯଦି ଈଶ୍ୱର ସାରୋଳା ମହାଭାରତ ତଥା ଅନ୍ୟ କେତେକ ପ୍ରାଚୀନ କୃତିର ଅପେକ୍ଷାକୃତ ଶୁଦ୍ଧ ସଂସ୍କରଣ ପ୍ରସ୍ତୁତି ପାଇଁ ବଞ୍ଚାଇ ରଖିଥାନ୍ତେ ତେବେ ଓଡ଼ିଆ ସାହିତ୍ୟ ପ୍ରଭୂତଭାବେ ଲାଭବାନ ହୋଇଥାନ୍ତା ନିଶ୍ଚୟ । କିନ୍ତୁ ମୁଁ ଓ ମୋ ପରି ଅନ୍ୟ ଅନେକଙ୍କର ଇଚ୍ଛା, ଅନିଚ୍ଛାକୁ ମୃତ୍ୟୁ କେବେ ସମ୍ମାନ ଦେବ ନାହିଁ । ତାହାହିଁ ହେଲା ଓ ଡଃ ସାହୁ ଈଶ୍ୱରଙ୍କ ଇଚ୍ଛାନୁକ୍ରମେ (ବୋଧହୁଏ) ଆମ ସମସ୍ତଙ୍କୁ ବିଶେଷକରି ଓଡ଼ିଆ ମଧ୍ୟଯୁଗୀୟ ଓ ପ୍ରାଚୀନ ସାହିତ୍ୟର ଶୁଦ୍ଧ ରୂପକୁ ମୁଖ୍ୟତଃ ଲୋକଲୋଚନକୁ ଆଣିବା ପୂର୍ବରୁ ସବୁଦିନ ପାଇଁ ଆଖି ବୁଜିଦେଲେ । ତେବେ ତାଙ୍କ ଦ୍ୱାରା ଅପୂର୍ଣ୍ଣ ରହିଯାଇଥିବା ଏହି କଷ୍ଟସାଧ୍ୟ ସାହିତ୍ୟକର୍ମର ପୂର୍ଣ୍ଣାହୁତି ତାଙ୍କର ପ୍ରିୟ ଗବେଷକ ଛାତ୍ରାଛାତ୍ରୀଙ୍କଦ୍ୱାରା ସମ୍ପନ୍ନ ହେଉ, ଏହା ମୁଁ ଆଶାକରେ । ଈଶ୍ୱର ଡଃ ସାହୁଙ୍କୁ ପୁନଶ୍ଚ ଆମ ଗହଣକୁ ଫେରାଇ ଆଣନ୍ତୁ ! ନୂଆଭାବେ, ନୂଆ ଆଖିନେଇ ସେ ଛାଡ଼ିଯାଇଥିବା ତାଙ୍କ ଗବେଷଣାକୁ ଠିକ୍ ଛାଡ଼ିଥିବା ଜାଗାରୁ ବା ତାଙ୍କ ପ୍ରିୟ ଛାତ୍ର, ଉତ୍ତର-ଗବେଷକଙ୍କଦ୍ୱାରା ସଂପନ୍ନ ହୋଇଥିବା ପର୍ଯ୍ୟାୟରୁ ପୁନଶ୍ଚ ଆରମ୍ଭ କରନ୍ତୁ ।

ଡଃ ସାହୁ ଆମ ନିକଟରେ କେବଳେ ଗବେଷଣା ପାଇଁ ନୁହେଁ , ପ୍ରଜ୍ଞା ସାହିତ୍ୟ ଗୋଷ୍ଠୀର ଜଣେ ପ୍ରତିଷ୍ଠାତା ସଭ୍ୟ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ଚିରଦିନପାଇଁ ମନେ ରହିବ । ପ୍ରଜ୍ଞା ଗୋଷ୍ଠୀ ସହିତ ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ଓ ପ୍ରଫେସର ରାଜେନ୍ଦ୍ର



Digitized by srujanika@gmail.com

ପ୍ରସାଦ ଦାସ ପ୍ରମୁଖ ଯେଉଁମାନେ ସକ୍ରିୟଭାବେ ଜଡ଼ିତ ଥିଲେ, ସେମାନଙ୍କ ମଧ୍ୟରେ ଡ଼ଃ ସାହୁଥିଲେ ପ୍ରମୁଖ । 'ପ୍ରଜ୍ଞା' ପ୍ରାଚୀନ ତଥା ମଧ୍ୟଯୁଗୀୟ ସାହିତ୍ୟର ନୂତନ ବୁଝାମଣାରେ ମାର୍ଗଦର୍ଶନ ଦେଇଥିବା ବେଳେ ଆଧୁନିକ ସ୍ୱାଧୀନଉତ୍ତର ସାହିତ୍ୟ ବିଶେଷ କରି ଆଧୁନିକ ଓଡ଼ିଆ କବିତାକୁ ଲୋକପ୍ରିୟ କରାଇବାରେ ପ୍ରମୁଖ ଭୂମିକା ନେଇଥିଲା । ଡଃ ସାହୁ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର ସତୀର୍ଥମାନେ ଏବେ ବି ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶକ ସ୍ରଷ୍ଟା ଓ ସମାଲୋଚକ । ଡଃ ସାହୁଙ୍କ ବିୟୋଗପରେ ତାଙ୍କ ସ୍ମୃତି ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ଯଦି ସେମାନେ 'ପ୍ରଜ୍ଞା'ର ପୁନଃ ପ୍ରକାଶନରେ ଉଦୟଶୀଳ ହୁଅନ୍ତେ, ତେବେ ଆଧୁନିକ ସାହିତ୍ୟକୁ ଲୋକପ୍ରିୟ କରିବାରେ ତାହା ଯେପରି ସକ୍ରିୟ ତଥା ଉଲ୍ଲେଖନୀୟ ଭୂମିକା ନେଇଥିଲା, ଏବର ଉତ୍ତର-ଆଧୁନିକ ସାହିତ୍ୟକୁ ବୁଝି, ବୁଝାଇବାରେ ମଧ ପ୍ରମୁଖ ଭୂମିକା ନେଇ ପାରନ୍ତା ।

ଆଜି ପାଣ୍ଡିତ୍ୟ ପ୍ରଦର୍ଶନ ନୁହେଁ, ଡଃ ସାହୁଙ୍କ ଅମର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାର ଅବକାଶ । ଏହି ଅବକାଶରେ ମୁଁ ଆଉ ଅଧିକ କିଛି ନଲେଖି ଡଃ ସାହୁଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିଛି । ଅନ୍ଧଯୁଗର କାହାଣୀ (ମୁଁ ଓ ମୋର କବିବନ୍ଧୁ ଅଧ୍ୟାପକ ଶତ୍ରୁଘ୍ନ ପାଣ୍ଡବଙ୍କ ଦ୍ୱାରା ସଂପାଦିତ ଜରୁରୀ କାଳୀନ ପରିସ୍ଥିତି ଭିତ୍ତିକ 'ଗଳ୍ପ' ସଂକଳନ, ଯାହାକି 'ସମାବେଶ' ପ୍ରକାଶନୀଦ୍ୱାରା ପ୍ରକାଶିତ) ବହିଟିର ଏକ ଯଥାଯଥ ଉତ୍ସାହପ୍ରଦ ସମୀକ୍ଷା ଡଃସାହୁ ଆମର ଅନୁରୋଧ କ୍ରମେ ଆମେ ଛାତ୍ରଥିବା ଅବସ୍ଥାରେ ଲେଖିଥିଲେ । କବିତାଟିଏ ପ୍ରକାଶ ପାଇଲେ ଓ ତାଙ୍କ ମନକୁ ଗଲେ ବିନା ସଂକୋଚରେ ଶତମୁଖ ହୋଇ ସେ ମୋର (ମୋ'ପରି ଅନେକଙ୍କର ବି !) ପ୍ରଶଂସା କରୁଥିଲେ । ଆଜି ବାଗ୍‌ଦେବୀଙ୍କ କୃପାରୁ ମୁଁ ଲେଖା ଅବ୍ୟାହତ ରଖିଛି । ଆଗକୁ ହୁଏତ କିଛି କବିତା ଓ ଗବେଷଣାତ୍ମକ ଗ୍ରନ୍ଥ ମୋଦ୍ୱାରା ଲିଖିତ ହୋଇ ପ୍ରକାଶିତ ହେବ । ସେତେବେଳକୁ ଆଉ କାହାକୁ ଏମିତି ଜିଗର କରି କହିହେବ ସାର୍, ଯଦି ଭଲଲାଗେ ଧାଡ଼ିଏ ରିଭ୍ୟୁ ଲେଖିଦେବେ । ଡଃ ସାହୁଙ୍କର ଉଦର କର୍କଟ ଜନିତ ରୋଗଯୋଗୁଁ ହୋଇଥିବା ଆକସ୍ମିକ ମୃତ୍ୟୁରେ ଯେଉଁ ଜାତୀୟ କ୍ଷତି ହେଲା, ତାହା ତ କେବେବି ଭରଣା ହେବାର ନୁହେଁ । ତାଙ୍କ ମୃତ୍ୟୁରେ ମୋର ଓ ମୋ ପରି ଅନେକଙ୍କର ଯେଉଁ ବ୍ୟକ୍ତିଗତ କ୍ଷତି ହେଲା ତାହାବି ସବୁଦିନ ପାଇଁ ଅପୂରଣୀୟ ରହିଲା । ଏକାନ୍ତରେ ବସିଥିବା ବେଳେ ଗଲା ଅଇଲାବେଳେ ଅନେକ ଦିନ ଯାଏ ତାଙ୍କର ହସ ହସ ସଦା ପ୍ରଫୁଲ୍ଲ ମୂର୍ତ୍ତିଟି ମନେ ପଡ଼ିବ, ଆଖି ଅଶ୍ରୁପ୍ଲୁତ ହେବ - ଏଲୁହ ପୋଛିବ କିଏ ? ଈଶ୍ୱର ତାଙ୍କ ଶୋକ ସଂତପ୍ତ ପରିବାର ବର୍ଗଙ୍କୁ ଶାନ୍ତି ଦିଅନ୍ତୁ । ମୋର ଅତୃପ୍ତିରେ ତାଙ୍କର ସର୍ଜନଶୀଳ ସକ୍ରିୟ ମୁଖ ମଣ୍ଡଳଟି ବାରବାର ସାକାର ହେଉଥାଉ- ଏତିକି କାମନା ।

❐ *ରେଭେନ୍ସା ମହାବିଦ୍ୟାଳୟ*, କଟକ-୩



Digitized by srujanika@gmail.com

# କୃଷ୍ଣ ଚରଣ

ଅଧ୍ୟାପକ ବସନ୍ତ କୁମାର ତ୍ରିପାଠୀ

ଆଉ ତୁମ ପାଇଁ ହାଣ୍ଡିରେ ଚାଉଳ
ପଡ଼ିବ ନାହିଁ,
ସାଥୀ ପରିଜନ, ଆତ୍ମୀୟ ସ୍ୱଜନ 'କୃଷ୍ଣ' 'କୃଷ୍ଣ'
ଆଉ ଡାକିବେ ନାଇଁ
ପୁଅ, ଝିଅ, ସଂସାର ଜଂଜାଳ ପଛରେ ଛାଡ଼ି
ଦିବ୍ୟ ଯାନରେ ଉଡ଼ିଗଲ ଦୂରେ
ଆମ ଏ ପୁରକୁ ଅଂଧାର କରି ।

ଓଡ଼ିଆ ସାହିତ୍ୟ, ସମାଲୋଚନାର
ତୁମେ ପରିଚିତ ହସ୍ତାକ୍ଷର,
କେତେ ଯେ ପୋଥି, ପୁରାଣର ତୁମେ ବ୍ୟାଖ୍ୟାକାର,
ତୁମ ବିୟୋଗରେ ବିରହ ବିଧୂରା
ପ୍ରାଚୀନ ସାହିତ୍ୟ ଝୁରୁଚି ନିତି
'କୃଷ୍ଣ' ପରି ଆଉ ନିଇତି ସକାଳୁ
କିଏ ମୋତେ ସତେ ଘାଣ୍ଟିବ ବସି ।

କେଉଁ ସତ୍ୟର ଦ୍ୱାହି ଦେଇ
ଏଠି ଏମିତି ହୁଏ,
ସୁନେଲି ସକାଳେ କଳାକଳା ମେଘ
ଅକାଶ ଦେହରେ ବିଛେଇ ଯାଏ,
ମେଲି ଯାଇଥିବା ସୁଖର ସଂସାର
ନିମିଷ ଭିତରେ ଉଜୁଡ଼ି ଯାଏ ।



Digitized by srujanika@gmail.com

ଆଡ଼ମ୍ବର ନାହିଁ, ଅହଂକାର ନାହିଁ
ନାହିଁ ଅଳସ,
କର୍ମଯୋଗୀର ବଜ୍ର କଠିନ ଜୀବନ ବ୍ରତ
ବରିନେଇ, ତୁମେ ଜୀବନର ରଣ ଝୁଝିବା ପାଇଁ
ସଂଗ୍ରାମ ଭୂଇଁରେ ନିଜ ଜୀବନକୁ
ଦେଲ ଉଛୁର୍ଗି ।

କେଉଁ ମଣିଷରେ ମଣିଷଟିଏ ମୁଁ
କଲମରେ ମୋର କେତେ ବା ବଳ
ତୁମେ ହିମାଳୟ, ମୁନିଜନଙ୍କର ଚିର ଆବାସ
ମୁଁ ଉଇଁ ହୁଂକା, ନାଗ ଗୋଖରଙ୍କ ବିଷ ନିଶ୍ବାସ
ତୁମ ଯଶ କୀର୍ତ୍ତି ବଖାଣିବାକୁ
ମୁଁ ଅକିଞ୍ଚନ
ଓଡ଼ିଶା ଯାହାକୁ ମଥାନତ କରେ ତା ପାଦରେ
ମୁହିଁ ଗଲି ଶରଣ
କୃଷ୍ଣ ଚରଣ !

□□□

## ବନ୍ଦନ ଘେନ ବନ୍ଦନ

ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମଲ୍ଲିକ

ବନ୍ଦନ ଘେନ ବନ୍ଦନ
ଏ ଜାତିର ହୃଦ ଚନ୍ଦନ
ସାହିତ୍ୟର ପ୍ରାଣସ୍ପନ୍ଦନ
ହେ ଉତ୍କଳ ଭାରତୀ ନନ୍ଦନ !

ଆର୍ତ୍ତର ବିୟୋଗେ ଆର୍ତ୍ତସ୍ୱରେ ଯେବେ
ଉତ୍କଳ ଜନନୀ କରୁଥିଲେ ଉଚ୍ଚେ କ୍ରନ୍ଦନ
ହେ ସାହିତ୍ୟ ସାଧକ ସସ୍ନେହରେ ତୁମେ
କହିଥିଲ ମାତ "କର ନାହିଁ ଆଉ ରୋଦନ
ଘେନୁଛି ଶପଥ ପ୍ରାଚୀନ ସାହିତ୍ୟ
ଆଜିଠୁଁ ହେବ ମୋ ଜୀବନ !"



Digitized by srujanika@gmail.com

କେତେ ଗବେଷଣା କେତେ ସମ୍ପାଦନା
କରିଗଲ କେତେ ପ୍ରାଚୀନ ସାହିତ୍ୟ ମନ୍ଥନ
କୃଷ୍ଣ ପ୍ରାୟ କୃଷ୍ଣ ପରଶ ଧର ଯେ୍
କେତେ ସୁଧା ଗ୍ରନ୍ଥ ଚୟନ
ହେଲା ପ୍ରାଚୀନର ପୁନଃ ନିର୍ମାଣ
କଳା କୌଶଳରେ ଥିଲ ତୁମେ ସଦା ନବୀନ !

ଗଢ଼ିଗଲ କେତେ ସାହିତ୍ୟ କୋଣାର୍କ
ଗବେଷଣା ବାରବାଟୀ
ଉତ୍କଳ ଜନନୀ ପଦେ ଅର୍ପିଗଲ
କେତେ ଶ୍ରଦ୍ଧା - ସୁମନଟି !

ଯେତେକାଳ ଥିବ ଓଡ଼ିଆ ସାହିତ୍ୟ
ହେବ ତମ ଯଶୋଗାନ
କୀରତି ତୁମ୍ଭର ରହିବ ହେ ସ୍ରଷ୍ଟା
ଏ ମରତେ ଅମଳିନ ।

ଦୀପଟିଏ ଭଳି ଜଳୁଥିବ ସଦା
ଜଳୁଥିବ ଯଶୋଦେହେ
ଜ୍ଞାନାଲୋକ ରଶ୍ମି ଦେଉଥିବ ବିଞ୍ଚି
ଲିଭିବାର ସେତ ନୁହେଁ !

ଛାର କାଳ ତାର ଶକ୍ତି କି ମାତର
ଛୁଇଁବସେ ଅଗ୍ନି ଶିଖା
କାଳ ଜୟୀ ସ୍ରଷ୍ଟା ରହିଥିବ ସଦା
ଦେଉଥିବ ଜ୍ଞାନ-ଦୀକ୍ଷା !

ହେ ଅମର ପୁରୁଷ ବନ୍ଦନ ଘେନ ବନ୍ଦନ
ଶ୍ରୀ ଚରଣେ ଢାଳୁ ଭକତି-ପ୍ରଣୟ-ସୁମନ
ଘେନ ଜାତି ଅଭିନନ୍ଦନ
ହେ ଉତ୍କଳ ଭାରତୀ ନନ୍ଦନ !!

□□□



Digitized by srujanika@gmail.com

# ଶ୍ରୀ ଗୁରୁଦେବ ତୁମକୁ ବିନମ୍ର ପ୍ରଣତି

ଡକ୍ଟର ତରଙ୍ଗ ଲତା ମିଶ୍ର

ହେ ପୁଣ୍ୟାତ୍ମା ମହାପ୍ରାଣ !
ନିର୍ବାପିତ କରି ତବ ଜୀବନ ଆଲୋକ
ସତେ କଣ ଉଡ଼ିଗଲା ଜୀବପକ୍ଷୀ ତବ,
ସଂସାର ବିତୃଷ୍ଣା ଆଉ ନଶ୍ୱର ଶରୀରଛାଡ଼ି
ଦୂରେ ବହୁ ଦୂରେ
ଯହୁଁ ନଫେରନ୍ତି ଆଉ କେବେ କେହି
ଏଭବ ସାଗରେ :

ଖୋଜୁ ସେ ଅମର ଆତ୍ମା କାହିଁଗଲେ
କେଉଁ ରାଇଜକୁ
ଡାକି ଲୁହ ପରାଣ ଆତୁରେ
ହେ ମହାପ୍ରାଣ ! ତୁମରି ଦୂରତ୍ୱ ଆଜି
ଏ ବ୍ୟାକୁଳ ନୟନେ ଓ ଦ୍ରବିତ ଅନ୍ତରେ
ଦୁଃଖ ଦିଏ ବାରମ୍ବାର
ଗୁରୁ ପିତୃ ତୁଲ୍ୟ ତୁମ
ସ୍ନେହର କରୁଣା ବାଣି କାହିଁ ପାବୁ
ନାହିଁ ଝରି ।

ଆହତ ହୃଦୟେ ତବ ସ୍ନେହର ପରଶ
ବିଷାଦ ଅନ୍ତରେ ଭରି ଗଲେଯେ ଅମୃତ
ସତ୍ୟ ପଥେ ଚାଲି ରଖ୍ ନାମ ଯଶ
ଚିରଦିନ ବଞ୍ଚିଥିବ ତବ ଅମ୍ଳାନ ଆଦର୍ଶ
ପ୍ରଜ୍ୱଳିତ ଦୀପ ଶିଖା ସମ ଜଳି
ଅମା ଅଜ୍ଞାନ ନାଶିଲ ଜ୍ଞାନାଲୋକଢ଼ାଳି
ସାରସ୍ୱତ ସାଧନାରେ ହୋଇ ଯେ ସାଧକ
ଧର୍ମଧାରା ହୃଦେ ଭରି
ଗଢ଼ି ଗଲେ ଅଶେଷଯେ ଶିଷ୍ୟ



Digitized by srujanika@gmail.com

ସମ୍ବେଦନ ସୁଧା ଦାନେ
ଦେଇଥିଲ ଆମ ହୃଦେ ଭରି
ପ୍ରତିଧ୍ୱନି ହୋଇ ହୃଦୟ କାନନେ
ଶୁଭଇ ଭାଷା ତୁମରି ।
ରହିଥାଉ ସଦା ମନେ
ଶ୍ରୀ ଗୁରୁଙ୍କ ପ୍ରତି
ଜନ୍ମ ଜନ୍ମାନ୍ତରେ ଗୁରୁ ଦିଅନ୍ତୁ ଶକତି
ଶେଷେ କରୁଅଛି ବିନମ୍ର ପ୍ରଣତି
ଲଭୁ ସେ ପବିତ୍ର ଆତ୍ମା ପରମସଦ୍‌ଗତି ।

□□□

# ଅନନ୍ତ ପ୍ରେମର ଗୀତ ଗାଇ ଜାଣ ବୋଲି

ଡଃ ଉପେନ୍ଦ୍ର ନାୟକ

ଅନନ୍ତ ପ୍ରେମର ଗୀତ ପଦିଏ ଗାଇଜାଣ ବୋଲି
ତୁମେ ଭଲ ପାଇ ଜାଣ ମଣିଷକୁ
ଆପଣାର କରିପାର ପ୍ରତିଟି ଚନ୍ତୀକୁ

ସୃଜନୀର ବେଣୁବାଇ
ସୃଷ୍ଟିର ଅମରାବତୀ ଗଢ଼ିଜାଣ ବୋଲି
ତୁମେ ଗଢ଼ିଦେଇଯାଇଛ ସତ୍ୟର କୋଣାର୍କ

ଗବେଷଣାର ଅମୃତ ପାନକରି ଜାଣ ବୋଲି
ତୁମେ ଖୋଜି ଆଣି ଦେଇଛ
କାହିଁ କେତେ ଅଲିଭା ଅମୂଲ୍ୟ
ଦୁଷ୍ପ୍ରାପ୍ୟ ବୋଇତ ।

ତୁମ ସାଧନାର ଶେଷ ନଥିଲା
ତୁମ ସଂଧାନର ଶେଷ ନଥିଲା
ତୁମ ସୃଷ୍ଟିର ଶେଷ ନଥିଲା ।
ତୁମ ମଣିଷକୁ ଭଲ ପାଇବାରେ ବି ଶେଷ ନଥିଲା



Digitized by srujanika@gmail.com

କେବଳ ବିସ୍ମୟ ଲାଗେ
ତୁମ ସ୍ୱପ୍ନର ସହର ଗଢ଼ିସାରିବା ପୂର୍ବରୁ
କେମିତି ଶେଷ ହୋଇଗଲା
ତୁମର ଶେଷ ଅଭିନୟ ।

ତୁମଠୁଁ ମୁଁ ସ୍ନେହ ପାଇଛି
ଜ୍ଞାନ ପାଇଛି
ପାଇଛି ମୁଁ ମଧୁବୋଳା କଥା କେଇପଦ ।
ତୁମଠୁଁ ପାଇଛି ରଂଗଭରା ଜୀବନ ବିତେଇବାର
ପ୍ରତିପଦ / ଅନେକ ଆହ୍ଲାଦ ।

ଆଜି ବିଶ୍ୱାସ କରି ପାରୁନି
ସତରେ ତୁମେ କେମିତି ଆମକୁ ପରକରି
ଚାଲି ଯାଇଛ ଆମଠୁଁ ଅନନ୍ତ କାଳ ପାଇଁ ?
କେମିତି ତୁମେ ତୁମ ସଂଧାନର
ଶେଷ ଯାତ୍ରାକୁ ପଛେ ରଖି
ହଠାତ୍ ଏମିତି ଚାଲିଗଲ ଅଲକ୍ଷ୍ୟକୁ
ସଂହାରର କାଳରଡ଼ି ଲୁଚି ଶୁଣିବାକୁ ।

ତୁମ ପ୍ରେରଣାରେ
ତୁମ ଦିଗ୍‌ଦର୍ଶନରେ
ସଂଧାନ ମୋର ହୋଇନାହିଁ ଶେଷ
କିଏ ତୁମକୁ ଚୋରାଇ ନେଲା
ହଜିଗଲା ଦଲିଲ୍ ଦସ୍ତାବିଜ୍
ହଜିଗଲା ନଥିପତ୍ର ଅନନ୍ତ ବୟସ ।

ଯେଉଁଠି ଯେମିତି ଥାଅ ତୁମେ
ସ୍ନେହ ପ୍ରେମ ସୌହାର୍ଦ୍ଦ୍ୟରୁ କରିବନି ଊଣା
ତୁମେ ଗୁରୁ ଆମେ ଛାତ୍ର
କିଏ ବା ପାରିବ ଦେଇ ଗୁରୁଦକ୍ଷିଣା
ଏଇ ଭକ୍ତିରୁ କାଣିଚାଏ
କେବଳ ବା ତୁମର ପାଉଣା ।

ତୁମ ସ୍ମୃତିକୁ ପାଥେୟ କରି
ତୁମ ନୀତିକୁ ପାଥେୟ କରି



Digitized by srujanika@gmail.com

ତୁମ ନିଷ୍ଠାକୁ ପାଥେୟ କରି
ଗତିଶୀଳ ହେଉ ମୋର
ଜୀବନର ଶୁଭ ଜୟଯାତ୍ରା
ସତ୍ୟର ପତାକାଧରି
ଶୁଣୁଥାଉ ଚିରକାଳ
ତୁମ ଶେଷ ସ୍ନେହପ୍ରେମ ବାର୍ତ୍ତା ।

❒ *ଅଭିନଚନ୍ଦ୍ର ହୋମିଓ ପାଥିକ ମେଡ଼ିକାଲ କଲେଜ,*
*ଭୁବନେଶ୍ୱର*

# ଭକ୍ତି ଅର୍ଘ୍ୟ

**ଡଃ ବସନ୍ତ କୁମାର ସାହୁ**

ତୁମେ ବ୍ରହ୍ମା, ତୁମେ ବିଷ୍ଣୁ, ତୁମେ ମହେଶ୍ୱର
ତୁମେ ପିତା, ତୁମେ ମାତା, ତୁମେ ହିଁ ଈଶ୍ୱର
କିଦେଇ ପୂଜିବି ତୁମ ପାଦ ପଦ୍ମେ
ତୁମେ ଶୂନ୍ୟ, ତୁମେ ବ୍ରହ୍ମ, ତୁମେ ଅଶରୀର ।
ଚାଲିବାକୁ ଶିଖାଇଛ ହାତଧରି
କହିବାକୁ ଶୁଣାଇଛ ଗୁରୁ ମନ୍ତ୍ରପରି
ପାଦେ ପାଦେ ତୁମ ସଙ୍ଗ
ଆଖିରେ ମୋ ତୁମ ଛବି ଲୁହଧାର ଧରି ।

ଜନ୍ମ ଜନ୍ମାନ୍ତରେ ଥାଉ ତୁମ ଅକୋମଳ ପରଶ
ଇନ୍ଦ୍ରଧନୁ ସାଜି ଦିଶ ତୁମେ ସଦା ହସ ହସ ।
ତୁମରି କରୁଣା ସଦା ଝରିଯାଉ ଲେଖନୀରେ ମୋର
ପ୍ରାଚୀନ ସାହିତ୍ୟ ସ୍ରଷ୍ଟା, ତୁମେ ହୁଅ କଳ୍ପନା ମୋର
ଲୁହର ଧାରାରେ ଭସାଇ ଆମକୁ
କେଉଁଆଡ଼େ ହଜିଗଲ ଖୋଜିବୁ ତୁମକୁ ।
ତୁମେ ସଦା ଜଳୁଥାଅ ଜ୍ଞାନଦୀପ ହୋଇ
ତୁମକୁ ଖୋଜିବି ମୁହିଁ ପୋଥି ପତ୍ର ନେଇ ।

❒ *ସାଲେପୁର ମହାବିଦ୍ୟାଳୟ,*
*କଟକ*

Digitized by srujanika@gmail.com

# ସାର୍‌ଙ୍କ ସ୍ମରଣେ

ଡଃ ବାବାଜୀ ଚରଣ ସେଠୀ

୧୭।୪।୧୯୮୨ରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କର ଆକସ୍ମିକ ବିୟୋଗ ଫଳରେ ମୋର ଗବେଷଣା କାର୍ଯ୍ୟଟି ପ୍ରାୟତଃ ବନ୍ଦ ହିଁ ରହିଥାଏ। ମା (ପ୍ରଫେସର ପ୍ରଧାନଙ୍କ ସ୍ତ୍ରୀ) ମୋତେ କହିଲେ, ପୁଅ, ତୁ କୃଷ୍ଣକୁ ଦେଖାକର। ସେ ତୋତେ ସାହାଯ୍ୟ କରିବ। ମୁଁ ଡରି ଡରି ଦିନେ ଯାଇ କୃଷ୍ଣ ସାରଙ୍କୁ ତାଙ୍କ କ୍ୱାଟରରେ ଦେଖାକଲି। ସେଦିନର ପ୍ରଥମ ସାକ୍ଷାତ୍ ଭୁଲିବାର ନୁହେଁ। ତାଙ୍କର ଉତ୍ସାହପ୍ରଦ କେଇପଦ କଥା ମୋତେ ସତେକଆପଣାର କରିନେଲା। ଗବେଷଣା କାର୍ଯ୍ୟ ଆଗେଇ ଚାଲିଲା। ୧୯୮୫ରେ ମୁଁ ପି.ଏଚ୍.ଡ଼ି. ପାଇଲି। ସେ ବର୍ଷ ମୁଁ ଦୁର୍ଘଟଣାରେ ପଡ଼ିଲି। ଗୋଡ଼ ଭାଙ୍ଗିଯିବାରୁ ମୋତେ ଦୁଇମାସକାଳ ଶେଯରେ ପଡ଼ି ରହିବାକୁ ହେଲା। ଚାରି ଆଠ ଦିନରେ ଥରେ ବାଣୀ ବିହାରରୁ ଶ୍ରୀରାମନଗର ଆସି ମୋତେ ଦେଖିଯିବା ଓ କାଳେ ଅଭାବଥିବ ଭାବି ବାରଣ କରିବା ସତ୍ତ୍ୱେ ଆର୍ଥିକ ସାହାଯ୍ୟ ଦେବା ତାଙ୍କର ମହାନୁଭବତା ଓ ଛାତ୍ରବତ୍ସଳତାର ଏକ ଅନୁପମ ନିଦର୍ଶନ।

ସାରଙ୍କ ଜନ୍ମଦିନଟି ଆମ ସମସ୍ତଙ୍କ ପାଇଁ ଏକ ପବିତ୍ର ଦିନ। ସାରଙ୍କ ଅଧୀନରେ ଗବେଷଣାରତ ସମସ୍ତ ଛାତ୍ର ଛାତ୍ରୀଙ୍କ ମଧ୍ୟରେ ସଂପର୍କ ଅତି ନିବିଡ଼। ଗୋଟିଏ ପରିବାରର ସଦସ୍ୟ ପରି। ପରିବାରର ମୁଖ୍ୟ ଆମ ସମସ୍ତଙ୍କର ପରମ ଆରାଧ୍ୟ ସାରଙ୍କୁ ଅଭିନନ୍ଦନ ଜଣାଇ ତାଙ୍କଠାରୁ ଆଶୀର୍ବାଦ ଲାଭ କରିବା ଓ ହସଖୁସି ଭିତରେ ତାଙ୍କ ସହିତ ସେ ଦିନଟି କଟାଇ ଦେଇ ଆମେମାନେ ନିଜ ନିଜକୁ ଗୌରବାନ୍ୱିତ ମଣୁଥିଲୁ। ୧୯୯୫କଥା ମନେ ପଡୁଛି। ମୁଁ ଯାଇଥିଲି ଭବାନୀପାଟଣା। ଅଶୋକାଷ୍ଟମୀଦିନ (ଜନ୍ମଦିନ) ସକାଳବେଳା ମୋତେ ନଦେଖି ଉପରବେଳା ଆସି ଆମଘରେ ହାଜର। ପଚାରିଲେ, ବାବାଜୀ କୁଆଡ଼େ ଗଲା ? ସେ କ'ଣ ଜାଣିନାହିଁ ଆଜି ମୋର ଜନ୍ମଦିନ। ଏପରି ସ୍ନେହ ସଦିଚ୍ଛା ଭରା କଥା କହି ଆପଣାର କରି ନେଉଥିବା ବ୍ୟକ୍ତିଟିର ହିମାଳୟ ପରି ହୃଦୟକୁ କଳନା କରିବା ସହଜ ନୁହେଁ।

୧୯୯୭ ଅପ୍ରେଲ ରବିବାରର ପ୍ରାତଃ ଛ'ଟା ସମୟ। ପ୍ରଭାତୀ କାକଳି ମଧ୍ୟରେ ଫେରି ଆସିବାର ପ୍ରତିଶ୍ରୁତି ଦେଇ ଉଷାକାଳ ବିଦାୟ ନେଲା। ହେଲେ ଆପଣ କାହାକୁ ହେଲେ ପଦଟିଏ କଥା ନକହି ଆଖି ମୁଦିଦେଲେ। ହଁ ଆଉ କହିବାକୁ ବାକୀ ଅଛି ବା କ'ଣ ?

ବିଦାୟ ଘେନିବାର ଠିକ୍ ସାତ ଘଣ୍ଟା ପୂର୍ବରୁ ଝିଅ ଶେଯ ପାଖରୁ ଚଦର ଉଠାଉଥିବା ଦେଖି ସ୍ୱାଭାବିକ ଭାବେ ହସି ଉଠି କହିଥିଲେ, ଆରେ ତାକୁ କାହିଁ ଉଠାଉଛୁ ? ସେ ସେଇଠି ଥାଉ। ସେଇ ଥିଲା ତାଙ୍କର ଶେଷ ହସ। ମୃତ୍ୟୁ ସହିତ ସଂଘର୍ଷରତ ଥାଇ କେତେ ଦମ୍ଭରେ କହୁଥିଲେ, "ମୋର



Digitized by srujanika@gmail.com

କିଛି ହେବନାହିଁ, ତୁମେମାନେସବୁ ଯାଅ ।'' ପ୍ରକୃତରେ ତାଙ୍କର କିଛି ହୋଇନାହିଁ । କାରଣ ''ଯଶଃ ଶରୀରେଣ ମୃତଃ ସଜୀବନ୍ତି ।''

ଏହି ଯଶସ୍ୱୀ ପୁରୁଷ ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟରେ ଥିଲେ ଜଣେ ଦିଗ୍‌ଦର୍ଶକ ଓ କାଳଜୟୀ ଗବେଷକ । ପ୍ରାଚୀନ ପୋଥି ସଂଗ୍ରହ କରିବା ଓ ଶୁଦ୍ଧ ସଂପାଦନା ସହ ସେଗୁଡ଼ିକୁ ଲୋକଲୋଚନକୁ ଆଣିବାର ତାଙ୍କର ଅପୂର୍ବ ନିଷ୍ଠା ଥିଲା । ଏପରିକି ନିଜ ହାତରୁ ସତୁରୀ ହଜାର ଟଙ୍କା ଖର୍ଚ୍ଚ କରି ବଳରାମ ଦାସଙ୍କ 'ଜଗମୋହନ ରାମାୟଣ'ର ଶୁଦ୍ଧ ସଂସ୍କରଣ ସେ ଗତବର୍ଷ ପ୍ରକାଶ କରିଥିଲେ । 'ହରିବଂଶ' ସଂପାଦନା ଶେଷ ହୋଇ ଆସିଥାଏ । ଏହାପରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ ପ୍ରକାଶ କରିବା ପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ରହିଥିଲା । ତାଙ୍କର ଅଦମନୀୟ ସ୍ୱାଧୀନ ବ୍ୟକ୍ତିତ୍ୱ, ନିର୍ଭୀକ କଥା ଓ ନିରବଚ୍ଛିନ୍ନ ଅଧ୍ୟବସାୟ ଆମମାନଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲା । ଏତେବଡ଼ ବିଦ୍ୱାନ ଥାଇ ମଧ୍ୟ ସେଥିଲେ ସରଳ ଓ ନିରାଡ଼ମ୍ବର । କାହା ପାଖରେ ମୁଣ୍ଡ ନୋଇଁବାକୁ ସେ ଘୃଣା କରୁଥିଲେ ।

ପ୍ରାଚୀନ - ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ କାନନର ସେ ମୁଗ୍ଧ ମଧୁକର ଆଜି ଆଉ ଆମ ଗହଣରେ ନାହାନ୍ତି । ଏକଥା ଭାବିଲା ବେଳକୁ କଲମ ସ୍ଥିର ରହିଯାଉଛି, ଆଖି ସଜଳ ହୋଇ ଆସୁଛି । ବିଶ୍ୱାସ ହେଉନାହିଁ, ସତେ କ'ଣ ସାର ଆମର ନାହାନ୍ତି ?

ତାଙ୍କର ପବିତ୍ର ଆତ୍ମା ତାରାଟିଏ ହୋଇ ଆମମାନଙ୍କୁ ପ୍ରୋତ୍ସାହିତ କରିବ, ଏ ବିଶ୍ୱାସ ମୋର ଅଛି ।

❒ *ଶ୍ରୀରାମ ନଗର*
*ଭୁବନେଶ୍ୱର*

# ମୋ ସ୍ମୃତିରେ ସାର୍

**ଡକ୍ଟର (ଶ୍ରୀମତୀ) ପ୍ରତିଭା ଶତପଥୀ**

ଏ ମୁହୂର୍ତ୍ତର ସତ୍ୟ, ପର ମୁହୂର୍ତ୍ତର ସ୍ମୃତି । ଠିକ୍ ଆଜିକୁ ୭ ଦିନ ତଳେ ଗୁରୁବାର ୩ ତାରିଖରେ ସାର୍‌ଙ୍କୁ ଭେଟିଥିଲି କଟକର ଲିକ୍ ନର୍ସିଂହୋମରେ । ପୂର୍ବରୁ ଶୁଣିଥିଲି, ତାଙ୍କର ଅପରେସନ୍ ହୋଇଛି ଓ ଡାକ୍ତର କିଛି ନ କାଟି ସିଲେଇ କରି ଦେଇଛନ୍ତି । ତାହାର ଅର୍ଥ, ଗୁରୁତର ନିଶ୍ଚୟ - ହୁଏତ ଆଉ ସାର୍ ସୁସ୍ଥ ହୋଇ ନ ପାରନ୍ତି । ହୁଏତ ସାର୍‌ଙ୍କ ସହିତ ଯେ ଶେଷ ଦେଖା । ଏତେ ଶୀଘ୍ର ଶେଷ ଆସିଯାଏ ! ଶୁଣିଲି ୬ ତାରିଖ ସକାଳେ ପ୍ରାଧାପିକା ଡକ୍ଟର ସଂଘମିତ୍ରାଙ୍କଠାରୁ ଟେଲିଫୋନ୍‌ରେ । ସାର୍ ଚାଲିଗଲେ । ଭାରି କଷ୍ଟ ଭୋଗୁଥିଲେ ସତରେ !



Digitized by srujanika@gmail.com

ଅଧାବୁଜିଥିବା ଆଖିକୁ କଷ୍ଟରେ ଟେକି ସେ ଦୁଇ ଥର ମୋ ଆଡ଼େ ଅନେଇଁଥିଲେ- ମୋ ପାଖରେ ପ୍ରଫେସର ଶତପଥୀ ବି ଠିଆ ହେଇଥାନ୍ତି । ମତେ ଲାଗୁଥାଏ ସାର୍ ବର୍ତ୍ତମାନ ଏ ଜଗତରେ ଶରୀର ନେଇ ଅଛନ୍ତି ସତ, ପ୍ରାଣଟା ଅଧା ଜଗତରେ, ଅଧା ଅନ୍ୟ ଏକ ଜଗତରେ । ୨ଟା ସାଲାଇନ୍ ଟ୍ୟୁବ୍, ଅକ୍ସିଜେନ୍, ପୁଣିରକ୍ତ ଦିଆଚାଲିଥାଏ । ନାକର ନଳୀଦେଇ ଆଭ୍ୟନ୍ତରୀଣ ଦୂଷିତ ରକ୍ତ ବାହାରୁଥାଏ । ଶୀତକରୁଥାଏ ବୋଲି ଅସ୍ପଷ୍ଟ ସ୍ୱରରେ ସେ ଜଣାଇଲେ । ପଙ୍ଖା ବନ୍ଦକରାହେଲା । ପାଖରେ ପୁଅ, ବଡ଼ ଝିଅ ଓ ଜଣେ କ୍ୱାଇଁ ଥାଆନ୍ତି । ଅଧାଶୁଆ ଅବସ୍ଥାରେ ଆଉଜିରହି ସାର୍ ଖାଲି ମୁଣ୍ଡ ଗଡ଼ାଉଥାଆନ୍ତି । ସାଲାଇନ୍ ଲଗା ହାତଟା ଟେକି ମୁଣ୍ଡ ଆଉଁସୁଥାନ୍ତି । କିଛି ସମୟପରେ ଫେରିଲୁ । କେତେ କଷ୍ଟ ଭୋଗୁଛନ୍ତି- କେତେଦିନ ଆହୁରି ଭୋଗିବେ ମନ ବଡ଼ କରୁଣ ଓ ଓଦାଓଦା ହୋଇ ଆସୁଥାଏ ।

ସାର୍‌ଙ୍କ ସହ ମୋର ପ୍ରତ୍ୟକ୍ଷ ସଂପର୍କ ମୋର ଗବେଷଣା କାଳରୁ, ୧୯୭୭ ମସିହାରୁ । ସାର୍ ମୋର ଗାଇଡ୍‌ଥିଲେ । ତାଙ୍କର ଉତ୍ସାହ ପ୍ରଦାନ ଶକ୍ତି ପ୍ରଚୁର- ତାଙ୍କର ସୁପରାମର୍ଶ ଓ ସାହାଯ୍ୟହେତୁ ମୋର ଗବେଷଣା କର୍ମ ସହଜ ହୋଇଥିଲା । ପିଏଚ.ଡ଼ି. ପ୍ରାପ୍ତି ପରେ ମୋର ଅଧାପକ ବନ୍ଧୁ ବାନ୍ଧବୀମାନଙ୍କଠାରୁ ଶୁଣିଲି, ସାର୍ କହୁଥିଲେ "ପ୍ରତିଭା ତ ଇଣ୍ଟରଭ୍ୟୁ ବୋର୍ଡ଼ରେ ପରୀକ୍ଷକଙ୍କ ଭୁଲ୍ ବାଛି ଦେଲେ ।" ସାର୍‌ଙ୍କର ମତେ ନେଇ ସେତକ ଆତ୍ମ ସନ୍ତୋଷଥିଲା- ମୋ ପାଇଁ ସେ ଖୁବ୍ ବଡ଼କଥା ।

ଏମିତିରେ ସାର୍‌ଙ୍କ ସହ ମୋର ଖୁବ୍ ବେଶି ଯୋଗାଯୋଗ ନଥିଲା । ମୁଁ ମୋର ସଂସାର, ଚାକିରି, ଓ ଲେଖାଲେଖିରେ ବ୍ୟସ୍ତ ରହୁଥିଲି । ସାର୍‌ବି ନିଜ ଉଚ୍ଚତର ଗବେଷଣା, ଗ୍ରନ୍ଥରଚନା ଓ ଗବେଷଣାର ଗାଇଡ୍ ଭାବରେ କାମରେ ଲାଗିଥାନ୍ତି । ତା' ଭିତରେ ଅବସର ଗ୍ରହଣ କଲେ । ରହନ୍ତି ବହୁତ ଦୂରରେ । ଖୁବ୍ ବେଶିଥର ମୁଁ ତାଙ୍କ ପାଖକୁ ଯାଇ ପାରିନାହିଁ । ତଥାପି, ମୋ ଭିତରେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ସବୁବେଳେ ରହିଥିଲା - ତାଙ୍କର ମଧ ମୋ ପ୍ରତି ସ୍ନେହ ଶ୍ରଦ୍ଧା ରହିଥିବାର ମୁଁ ବୁଝିପାରୁଥିଲି । କେତେଦିନ ତଳେ ସାର୍‌ଙ୍କୁ ଦେଖିଥିଲି - ୰କୃଷ୍ଣ ପ୍ରସାଦ ମିଶ୍ରଙ୍କ ଶ୍ରାଦ୍ଧ ସଭାରେ ମୁଖ୍ୟ ଅତିଥି ଥିଲେ ବୋଧେ ସେ କେମିତି କ୍ଳାନ୍ତ, ମ୍ରିୟମାଣ ଦିଶୁଥିଲେ- ବୋଧେବାର୍ଦ୍ଧକ୍ୟ ହେତୁ, ହୋଇଥିବ ବୋଲି ଭାବିଲି । ସାର୍ ମଞ୍ଚଉପରେ ମୋର ପୁଣି ତୁରନ୍ତ ଯିବାରଥିଲା ଅନ୍ୟ ଗୋଟେ କାର୍ଯ୍ୟକ୍ରମରେ ତଥାପି, ଅପେକ୍ଷାକରି, ସାରଙ୍କୁ ଦେଖାକରିବି, ଯିବି । ସଚେତନ ଅବସ୍ଥାରେ ତାଙ୍କ ସହିତ ସେ ମୋର ଶେଷ ଦେଖା । ସାର୍ ନାହାନ୍ତି- ତାଙ୍କର ଧୀଶକ୍ତି, ପ୍ରେରଣା, ଗବେଷଣା-ମନସ୍କତା ଓ ସଂରଚନାଶୀଳତା ସ୍ମରଣୀୟ ହୋଇ ରହିବ । ସାର୍ ବଞ୍ଚିରହିବେ ତାଙ୍କ କୃତି ମାଧମରେ, ଯଶୋଦେହରେ ।

ତଥାପି ମୁଁ ଆଜି ଆନ୍ତରିକଭାବେ ଆଶା କରୁଛି ଯେ, ସାର୍‌ଙ୍କ ପରି ବିଦ୍ୟୋତ୍ସାହୀ, ସ୍ନେହୀ ଓ ସାହିତ୍ୟପ୍ରେମୀ ଅଧାପକ ଓ ଲେଖକ ଏଇ ଓଡ଼ିଆ ମାଟିରେ ପୁଣି ଜନ୍ମ ନିଅନ୍ତୁ । ତାଙ୍କ ସ୍ମୃତିପ୍ରତି ସଭକ୍ତି ପ୍ରଣତି ଜଣାଇ, ମୁଁ ଆଶାପୋଷଣ କରୁଛି ଯେ ସାର୍ ପୁଣି ନୂଆ ଦେହ ଧରି ଏଇ ଭୂମିକୁ ଫେରି ଆସନ୍ତୁ ।

❐ *ରମାଦେବୀ ମହିଳା ମହାବିଦ୍ୟାଳୟ*

ଭୁବନେଶ୍ୱର



Digitized by srujanika@gmail.com

# ଅନ୍ତରଙ୍ଗ ବନ୍ଧୁ

ଡକ୍ଟର (ଶ୍ରୀମତୀ) ବିଜୟ ଲକ୍ଷ୍ମୀ ମହାନ୍ତି

ଏଇ ତ କାଲି ପରି ଲାଗୁଛି, ଯା ଭିତରେ କେତେବେଳେ ଏତେଗୁଡ଼ାଏ ଦିନ, ପ୍ରାୟ ୨୫/୩୦ବର୍ଷ ବିତିଗଲାଣି, କୃଷ୍ଣବାବୁଙ୍କ ସହ ପରିଚୟ ଓ ସଂପର୍କ ବଢ଼ି ଉଠିବାରେ । କୃଷ୍ଣବାବୁଙ୍କ ସହ ମୋର ପ୍ରଥମ ପରିଚୟ ହୁଏ ଯେତେବେଳେ ସେ ରାଞ୍ଚି ବିଶ୍ୱବିଦ୍ୟାଳୟ ଛାଡ଼ି ଭୁବନେଶ୍ୱର ଆସିଲେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରାଧାପକ ଭାବରେ ଯୋଗ ଦେବାକୁ । ଏ ବୋଧେ ୧୯୬୯ କି ୧୯୭୦ ମସିହା ବେଳର କଥା । ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ସେ ଯୋଗଦାନ କଲେ ଏବଂ ପରେ ପ୍ରଫେସର ଭାବରେ ବାଣୀବିହାରରେ ସ୍ଥାୟୀ ଭାବରେ ବିଶ୍ୱ ବିଦ୍ୟାଳୟ କ୍ୱାଟର୍ସରେ ରହିଲେ ।

ଆମେ ବାଣୀବିହାରରେ ଆସି କ୍ୱାଟର୍ସରେ ରହିଲୁ ୧୯୭୫ ମସିହା ଜୁନ୍ ମାସରେ । ସେହି ସମୟରୁ କୃଷ୍ଣ ବାବୁଙ୍କ ସହିତ ସଂପର୍କ ଘନିଷ୍ଠତର ହେଲା, ନିବିଡ଼ ହେଲା । ଆମ ପରିବାର ଓ ତାଙ୍କ ପରିବାର, ପାଖାପାଖି ରହଣୀକାଳ ଭିତରେ, ପରସ୍ପରର ସୁଖ ଦୁଃଖ, ଭଲମନ୍ଦରେ ଭାଗୀଦାର ହେଉଥିଲୁ । ମୋ ଶ୍ୱଶୁର ମୋ ପାଖରେ ରହୁଥିଲେ ଏବଂ ସେ କୃଷ୍ଣବାବୁଙ୍କୁ ପୁଅ ପରି ସ୍ନେହ କରୁଥିଲେ । କୃଷ୍ଣବାବୁ ଆସିଲେ, ଶ୍ୱଶୁରବେଳେବେଳେ କହନ୍ତି, 'ହେଇ ଛ'ଆଙ୍ଗୁଳିଆ କୃଷ୍ଣ ଆସିଛି ' (କୃଷ୍ଣ ବାବୁଙ୍କ ଡାହାଣ ହାତର ବୁଢ଼ା ଆଙ୍ଗଠିରେ ଥିବା ଅଧିକା ଛୋଟ ଆଙ୍ଗୁଠିଟି ତାଙ୍କର ବିଶେଷ ପରିଚୟର କାରଣ ଥିଲା ) ଭଲ ମନ୍ଦ, ଶୁଭ-ଅଶୁଭ ତଥା ବିବାହାଦି ଅନୁଷ୍ଠାନରେ ଆମେ ପରସ୍ପରକୁ ସଙ୍ଗ କରୁଥିଲୁ । ବିପଦ ଆପଦରେ ପରସ୍ପରର ପାଖରେ ଠିଆ ହେଉଥିଲୁ । ଏତେ ଦିନର ଲମ୍ବା ସଂପର୍କ ଭିତରେ କେତେ ନିତିଦିନିଆ ଛୋଟ ବଡ଼ ଘଟଣା ଘଟିଯାଇଛି । କୌଣସି ଅସୁବିଧା ବେଳରେ କୃଷ୍ଣ ବାବୁଙ୍କର ଖାଲି ଉପସ୍ଥିତି ହିଁ ସେ ସମସ୍ୟାକୁ ସହଜ କରି ଦେଉଥିଲା, ସାହସ ଦେଉଥିଲା । ମୋ ଶ୍ୱଶୁରଙ୍କର ବି ତାଙ୍କ ଉପରେ ଗଭୀର ଆସ୍ଥାଥିଲା । ଘରର ବିଭିନ୍ନ ସୁବିଧା ଅସୁବିଧା ବିଷୟରେ ଶ୍ୱଶୁର ତାଙ୍କ ସହିତ ପରାମର୍ଶ କରୁଥିଲେ ।

ଖୁବ୍ ଭଲ ମଣିଷଥିଲେ ସେ । ଅସୀମ ଧୈର୍ଯ୍ୟର ଅଧିକାରୀ ସେ ଥିଲେ । ବହୁ ପ୍ରତିକୂଳ ଅବସ୍ଥା ଭିତରେ ବି ସେ ନିଜର କାମ କରି ଯାଉଥିଲେ, ଭାଙ୍ଗି ପଡୁ ନଥିଲେ । ତାଙ୍କର ନିଷ୍ଠା ଓ ଅଧ୍ୟବସାୟ ବଳରେ ହିଁ ସେ ନିଜକୁ ଯଶସ୍ୱୀ କରି ପାରିଛନ୍ତି । ନିଜ ଅଭିଜ୍ଞତା ଭିତରୁ ଅନ୍ୟମାନଙ୍କୁ ସେ ପ୍ରେରଣା ଦେଉଥିଲେ, ଉତ୍ସାହିତ କରୁଥିଲେ କାମ କରିଯିବାକୁ, ପାଠ ପଢ଼ିବାକୁ । କେବେ ସେ ରାଗୁ ନଥିଲେ । କାହା ଉପରେ ବିରକ୍ତ ହେବାର କେବେ ମୁଁ ତାଙ୍କୁ ଦେଖିନାହିଁ । ମୁହଁରେ ସର୍ବଦା ଏକ ସହାସ୍ୟ ପ୍ରଶାନ୍ତି ଭାବ । ବିଶେଷ କାହାକୁ ନିନ୍ଦା ବା ସମାଲୋଚନା ସେ କରନ୍ତି ନାହିଁ । ଅତି ଉଦାର



Digitized by srujanika@gmail.com

ହୃଦୟର ଲୋକ ସେ ଥିଲେ । ନିଜ ପୁଅ ଝିଅମାନଙ୍କୁ ସେ ଅତ୍ୟନ୍ତ ସ୍ନେହ କରୁଥିଲେ । ଚିର ରୁଗ୍ଣସ୍ତ୍ରୀଙ୍କର ଅସୁସ୍ଥତା ତାଙ୍କୁ କର୍ମ ବିମୁଖ କରି ନଥିଲା । ନାନୀଙ୍କୁ ସେ ଅତି ଭଲ ପାଉଥିଲେ (ମୁଁ ତାଙ୍କ ସ୍ତ୍ରୀଙ୍କୁ ନାନୀ ବୋଲି ହିଁ ଡାକୁଥିଲି) । ସ୍ତ୍ରୀଙ୍କର ଅକାଳ ମୃତ୍ୟୁରେ ସେ ଅବଶ୍ୟ ଭିତରେ ଭିତରେ ଭାଙ୍ଗି ପଡ଼ିଥିଲେ । ବଡ଼ ଏକୁଟିଆ ଅନୁଭବ କରୁଥିଲେ । ନାନୀଙ୍କର ବି ନିଜ ସ୍ୱାମୀଙ୍କ ପ୍ରତି ଅଶେଷ ଶ୍ରଦ୍ଧା ଓ ସମ୍ମାନ ଥିଲା । ସେ କାଳର ଲୋକଥିଲେ ବୋଲି ନାନୀ କୃଷ୍ଣବାବୁଙ୍କ ନାଁ ତୁଣ୍ଡରେ ଧରୁ ନଥିଲେ, ପାପ ହେବ ବୋଲି ମନେ କରୁଥିଲେ ଏବଂ ମତେ ବି ସ୍ୱାମୀଙ୍କ ନାଁ ନ ଧରିବାକୁ ସେ ପରାମର୍ଶ ଦେଉଥିଲେ । କିନ୍ତୁ ତା କ'ଣ ସମ୍ଭବ !

ଜୀବନର ପ୍ରଥମ ଅବସ୍ଥାରେ, ବିବାହପରେ, ମତେ କର୍ମ ଜୀବନରେ ପ୍ରବେଶ କରିବା ପାଇଁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ସେହି ସମୟରେ କୃଷ୍ଣବାବୁଙ୍କ ଉତ୍ସାହ ଓ ପ୍ରେରଣା ଏ ଜୀବନରେ ଭୁଲିବାର ନୁହେଁ । ତାଙ୍କରି ପ୍ରେରଣାରେ ମୁଁ ଓଡ଼ିଆରେ ଏମ.ଏ. ପରୀକ୍ଷା ଦେଲି । ଏ ପରୀକ୍ଷା ଦେବାପାଇଁ ମତେ ସେ ବହୁବାର ବାଧ କରିଥିଲେ, ସାହସ ଦେଇଥିଲେ । ତାଙ୍କଠାରୁ ସାହସ ପାଇ ଓଡ଼ିଆ ଏମ.ଏ. ପାସ କରିବା ପରେ ମୁଁ ଆଜି ନିଜକୁ ସ୍ୱାବଲମ୍ବୀ କରିପାରିଛି ଏବଂ ଉଚ୍ଚତର ଗବେଷଣା କ୍ଷେତ୍ରରେ ମଧ୍ୟ ସଫଳତା ହାସଲ କରି ପରିଛି । ପରବର୍ତ୍ତୀ ସମୟରେ କୃଷ୍ଣବାବୁଙ୍କ ଅଧୀନରେ ପିଏଚ.ଡ଼ି. ଗବେଷଣା କରିବାର ଗୌରବ ମୁଁ ଲାଭ କରିଥିଲି । ବହୁ ବିଭିନ୍ନ ପୁସ୍ତକ ସଂଗ୍ରହ କରି ଆଣି ଦେବାଠାରୁ ଆରମ୍ଭ କରି, ଗବେଷଣାର ଜଟିଳ ବିଷୟ ବସ୍ତୁ ଉପରେ ସେ ଅନେକ ମୂଲ୍ୟବାନ ପରାମର୍ଶ ମତେ ଦେଉଥିଲେ । ମୋ ଗବେଷଣାର ବିଷୟବସ୍ତୁଥିଲା ଓଡ଼ିଆ ଭାଷାର ବ୍ୟାକରଣ ଚର୍ଚ୍ଚା । ଏପରି ଏକ ଜଟିଳ କିଟିମିଟିଆ ବିଷୟ ବସ୍ତୁକୁ ସହଜ ସରଳ ଉପାୟରେ ଉପସ୍ଥାପନ କରିବାର ବାଟ ସେ ବତାଇ ଦେଇଥିଲେ । 'ତମେ ତ କାମ କରୁନ, ହବ କେମିତି ?' ସେତିକି । ଅଧିକ ବିରକ୍ତ ହେବା ବା କଡ଼ାଭାବରେ କିଛି କେବେ ସେ ମତେ କହି ନାହାନ୍ତି । ମୋ ପ୍ରତି କିପରି ଏକ ପ୍ରଚ୍ଛନ୍ନ ସହାନୁଭୂତି, ସବୁବେଳେ ସବୁସମୟରେ, ତାଙ୍କ ମନ ଭିତରେ ଥିବା ମୁଁ ଅନୁଭବ କରେ । ମୋ ପାଇଁ ଯେତିକି ପରିମାଣରେ ସେ ଅନ୍ତରଙ୍ଗ ବନ୍ଧୁଥିଲେ ସେମିତି ମୋ ମାର୍ଗ ଦର୍ଶକ ମଧ୍ୟ ଥିଲେ । ବୋଧହୁଏ ତାଙ୍କର ପ୍ରେରଣା ବଳରେ ମୁଁ ଆଜି ଏତେ ଦୂର ଆଗେଇ ଆସିବାକୁ ସକ୍ଷମ ହୋଇ ପାରିଛି । କିଛି ସାରସ୍ୱତ କାମ କରି ପାରିଛି ।

ମୋର ଚାକିରୀ କ୍ଷେତ୍ରରେ ମଧ୍ୟ ସେ ମତେ ବହୁ ଭାବରେ ସାହାଯ୍ୟ କରି ଆସିଥିଲେ । ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ଅଧ୍ୟାପନା କରିବା ଅବସରରେ ଭାଷାକେନ୍ଦ୍ରର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦାନ କରି ସେ ଯେପରି ମତେ ଅକୁଣ୍ଠ ସହଯୋଗ ଯୋଗାଇ ଦେଇଥିଲେ ସେହିପରି ନିଜର ପାଣ୍ଡିତ୍ୟ ଓ ଜ୍ଞାନ ବଳରେ ବହୁ ପରାମର୍ଶ ଦେଇ ମତେ ଆଗେଇ ଯିବାପାଇଁ ଉତ୍ସାହିତ କରିଥିଲେ । ଗତ ୧୯୯୫ ମସିହାରେ ମାର୍ଚ୍ଚ ମାସରେ ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ଅନୁଷ୍ଠିତ ଅସମୀୟା, ଓଡ଼ିଆ ଓ ବଙ୍ଗଳା ଭାଷାରେ ସମ ଅର୍ଥକ ରୂଢ଼ି ସଙ୍କଳନ କର୍ମଶାଳାର ଉଦ୍‌ଯାପନୀ ଉତ୍ସବରେ ନିମନ୍ତ୍ରିତ ସମ୍ମାନିତ ଅତିଥି ଭାବରେ ତାଙ୍କୁ ଶେଷଥର ପାଇଁ ପାଇବାର ସୁଯୋଗ ମିଳିଥିଲା ।

ବିଭିନ୍ନ ସଭାସମିତି ଯାଇ ଯୋଗଦେବାକୁ ମତେ ସେ ବରାବର ଉତ୍ସାହିତ କରୁଥିଲେ । କିନ୍ତୁ କୌଣସି କାରଣ ବଶତଃ ଯାଇ ନପାରିଲେ ସେ ବିରକ୍ତି ପ୍ରକାଶ କରୁ ନଥିଲେ । ଏଥିରେ ମଧ ତାଙ୍କର ସେଇ ଅନ୍ତର୍ନିହିତ ପ୍ରଚ୍ଛନ୍ନ ସହାନୁଭୂତି ଥିବା ମୁଁ ଅନୁଭବ କରୁଥିଲି । ବୋଧହୁଏ ସେ ଭାବୁଥିଲେ



Digitized by srujanika@gmail.com

'ହଁ କୌଣସି ଅସୁବିଧା ବଶତଃ ସେ ଆସି ପାରିଲାନି', ଅସୁବିଧା ଯେତେ ଛୋଟ ବା ବଡ଼ ହେଉ ନା କାହିଁକି । ଏମିତି ବହୁବାର ଘଟିଛି ଏବଂ ମୁଁ ଏମିତି ଅବସ୍ଥାରେ ଖୁବ୍ ଲଜ୍ଜିତ ହୁଏ । ଏପରି ଦରଦୀ ବନ୍ଧୁ, ଏପରି ଆନ୍ତରିକତା ମୁଁ ବହୁ କମ୍ ଲୋକଙ୍କଠାରୁ ପାଇଛି ।

ଚାରିବନ୍ଧୁ । କୃଷ୍ଣବାବୁ, ଦେବୀବାବୁ, ରାଜେନ୍ଦ୍ରବାବୁ ଓ ଯତିବାବୁ । ସହପାଠୀ, ପ୍ରାୟ ସମବୟସ୍କ । ଚାରିହେଁ ସ୍କୁଲ, କଲେଜରେ ଏବଂ ଚାକିରୀ ଜୀବନରେ ନିଜ ନିଜ କ୍ଷେତ୍ରରେ ସଫଳତାର ସହିତ କର୍ମ ଜୀବନ ଶେଷ କରି ଚାକିରୀରୁ ଅବସର ନେଇଛନ୍ତି ସତ କିନ୍ତୁ କର୍ମବ୍ୟସ୍ତତାରୁ ଅବସର ନେଇ ନାହାନ୍ତି । ଯେପରିକି କର୍ମବ୍ୟସ୍ତତା ପୂର୍ବାପେକ୍ଷା ଅଧିକ ବେଶି ବୃଦ୍ଧି ପାଇଛି ! ଚାକିରୀରୁ ଅବସର ନେଲେ ବି ଚାରିଜଣଯାକ ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡ଼ିତ ଓ କର୍ମବ୍ୟସ୍ତ ରହିଛନ୍ତି । ବାରମ୍ବାର ଏକାଠି ହୁଅନ୍ତି, ଅତୀତରେ ବି ହେଉଥିଲେ । ବହୁ ସମୟରେ ଏକାଠି ଖିଆପିଆ ବି ହୁଏ । ନିଜ ନିଜ ଭିତରେ ବହୁ ଚର୍ଚ୍ଚା ଆଲୋଚନା, ବେଳେବେଳେ ଥଟାମଜା ବି ହୁଏ । ସବୁ ଚର୍ଚ୍ଚା କିନ୍ତୁ ଗଠନମୂଳକ, ନିଜ ଭିତରର ଅନ୍ତର୍ନିହିତ ଗୁଣକୁ ଫୁଟାଇ ବାହାରକୁ ଆଣନ୍ତି, ପରସ୍ପରକୁ ପ୍ରଭାବିତ କରନ୍ତି, ଅନ୍ୟମାନଙ୍କୁ ବି ବେଶ ପ୍ରଭାବିତ କରିପାରନ୍ତି । ବେଳେବେଳେ ପରସ୍ପରକୁ କଡ଼ା ସମାଲୋଚନା କରନ୍ତି, ମନରେ ହୁଏତ ବାହାରିଆ ଫାଟ ଦେଖାଦିଏ, କିନ୍ତୁ ତା ଅଳ୍ପକ୍ଷଣ, ପୁଣି ସେମାନେ ଏକାଠି ହୁଅନ୍ତି ଏବଂ ନିଜ ନିଜ କାମରେ ବା କୌଣସି ସମ୍ମିଳିତ କର୍ମ ଯୋଜନାରେ ପରସ୍ପରକୁ ସାହାଯ୍ୟ ସହଯୋଗ କରନ୍ତି । ମନର ଅମେଳ ଦୂର ହୁଏ, ସେମାନେ ପରସ୍ପରକୁ ଭଲ ପାଆନ୍ତି, ଅନ୍ତରଙ୍ଗ ଭାବରେ । ବାହାରକୁ ସେମାନେ ଚାରିଜଣ, କିନ୍ତୁ ଭିତରେ ସେମାନେ ଏକପ୍ରାଣ । ଏହିପରି ଅନ୍ତରଙ୍ଗ ଚାରିବନ୍ଧୁଙ୍କ ଭିତରୁ ଜଣେ ବିଦାୟନେଲେ ଚିରଦିନ ପାଇଁ । ଏତେ ଶୀଘ୍ର ସେ ଚାଲିଗଲେ ! ଆହୁରି ବହୁ ବର୍ଷ ସେମାନେ ଏକାଠି କାମ କରି ପାରିଥାନ୍ତେ ସେମାନଙ୍କ କର୍ମକ୍ଷେତ୍ରରେ, ଭୁବନେଶ୍ୱରରେ, ଏଇଠି, ଏକାଠି । କିନ୍ତୁ ତା ଘଟିଲା ନାହିଁ, ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ?

ଆମ ଘରେ ବନ୍ଧୁନିମନ୍ତ୍ରଣ ହେଲେ ଚାରିବନ୍ଧୁ ନିଶ୍ଚିତ ଏକାଠି ହେଉଥିଲେ । କାହାକୁ ବାଦଦେବା କଥା ପ୍ରାୟ ଘଟି ନଥାଏ । ଖିଆପିଆ, ଶୁଆବସା, ବିଚାର ଆଲୋଚନା ଘଣ୍ଟା ଘଣ୍ଟା ଦିନରାତି ଧରି ଚାଲେ । ସେ ଆଲୋଚନା ରାଜନୀତିଠାରୁ ଆରମ୍ଭ କରି ବିଦ୍ୟାବୁଦ୍ଧି ଅଧ୍ୟୟନର ଚର୍ଚ୍ଚା ବାଟେ ଅତି ବ୍ୟକ୍ତିଗତ ସ୍ତରରେ ପାରିବାରିକ ସ୍ତରକୁ ବି ଛୁଏଁ । ଏମିତି କେତେ ବିଚାର ଆଲୋଚନାରେ ଭାଗ ନେବାକୁ ମତେ ବି ସେମାନେ ଡାକନ୍ତି, ମତାମତ ପଚାରନ୍ତି, ପରାମର୍ଶ ଲୋଡ଼ନ୍ତି । କେତେ ରକମ ପ୍ରସ୍ତାବ ପଡ଼େ, ଯୋଜନା ହୁଏ, ହୁଏତ କାର୍ଯ୍ୟକାରୀ ହୁଏ, ନହେଲେ ଭାଙ୍ଗେ । ମୁଁ କିନ୍ତୁ ନିଜ ଅନଭିଜ୍ଞତା ଦୃଷ୍ଟିରୁ ନିଜକୁ ସେଠି କିପରି ବେଖାପ ମନେ କରେ । ବନ୍ଧୁମାନଙ୍କର ଖିଆପିଆ ବ୍ୟବସ୍ଥା କରିବାର ଭାର ପଡ଼େ ମୋ ଉପରେ । ସେମାନଙ୍କ ପାଇଁ ସେତକ କରିଦେବାକୁ ଖୁସି ଲାଗେ, ସେଥିରେ ମୁଁ ଆନନ୍ଦ ପାଏ ।

ପ୍ରଚୁର କାମ ସେ କରିଯାଇଛନ୍ତି । ଓଡ଼ିଆ ସାହିତ୍ୟକୁ ତାଙ୍କର ବିଭିନ୍ନ କୃତି ବଳରେ ସମୃଦ୍ଧ କରି ଯାଇଛନ୍ତି । ନିଜ କାମ, ପୁସ୍ତକ ରଚନା, ସଂପାଦନା ଓ ସମାଲୋଚନା ସାହିତ୍ୟ ଭିତରେ ସେ ବଞ୍ଚି ରହିବେ । ତାଙ୍କ ଅସଂଖ୍ୟ ଛାତ୍ର ଛାତ୍ରୀ ସାରା ଓଡ଼ିଶାରେ ଖେଳି ରହିଛନ୍ତି । ସେଇମାନଙ୍କ ଭିତରେ ସେ ବଞ୍ଚି ରହିବେ । ତାଙ୍କର ସାହିତ୍ୟିକ କୃତି ଗୁଡ଼ିକ ମଧ୍ୟରେ ଯୁଗ ଯୁଗ ଧରି ତାଙ୍କ ସ୍ମୃତି



Digitized by srujanika@gmail.com

ଅମର ହେଇ ରହିବ । ତାଙ୍କର 'ଜଗମୋହନ ରାମାୟଣ' ଭିତରେ, ଯେତେଦିନ ରାମାୟଣ ପୃଥିବୀରେ ଥିବ, ସେତେଦିନ ସେ ମଧ ଏ ପୃଥିବୀରେ ରହିଥିବେ, ଚିରଦିନ ପାଇଁ ।

ଆଜି ଗଭୀର ଦୁଃଖରେ ହୃଦୟ ଭାଙ୍ଗି ପଡୁଛି । ଚାରିବନ୍ଧୁଙ୍କୁ ଏକାଠି ପାଇବାର ସୁଯୋଗ ଆଉ ନାହିଁ । କୃଷ୍ଣବାବୁ ସେଇ ଅନ୍ତରଙ୍ଗ ବନ୍ଧନକୁ ଭାଙ୍ଗି ଚାଲିଗଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କଠାରେ ସେଇ ଆନ୍ତରିକ ଅନ୍ତରଙ୍ଗତାର ସ୍ପର୍ଶ ଲାଗି ରହିଥିଲା । ଦାରୁଣ ଶାରୀରିକ ଅସୁସ୍ଥତା ବଶତଃ ବାକ୍‌ରୁଦ୍ଧ ଅବସ୍ଥାରେ ମଧ ସେ ସମସ୍ତଙ୍କୁ, ବ୍ୟକ୍ତି ବିଶେଷ ଅନୁସାରେ, ଯିଏ ବି ତାଙ୍କୁ ଭେଟିବାକୁ ଯାଉଥିଲେ, କହୁଥିଲେ ସେଇ ଏକ ଶେଷଶବ୍ଦ 'ଯାଉନୁ ବା ଯାଉନ' । ବହୁତ କଥା କହିବାକୁ ଚାହୁଁଥିଲେ ବି କିଛି ସେ କହିପାରୁ ନଥିଲେ ଏବଂ ସମସ୍ତଙ୍କୁ ସତେକି ସେ ନିଜେ ବିଦାୟ ଦେଉଥିଲେ, ସେଇ ଭଙ୍ଗୀରେ ସେ ସେତିକି ମାତ୍ର ପ୍ରକାଶ କରି ପାରୁଥିଲେ ଓ ତାଙ୍କ ପାଖରୁ ଛାଡ଼ି ଚାଲିଯିବାକୁ ଅଥୟ କରୁଥିଲେ । ଚିର ବିଦାୟ ନେବାର ଦିନକ ପୂର୍ବରୁ ମୁଁ ତାଙ୍କୁ ଭେଟିବାକୁ ଯାଇ କିଛି ସମୟ ତାଙ୍କ ଶଯ୍ୟା ନିକଟରେ ବସି ରହିବା ଅବସରରେ ମତେ ବି ସେ ସେତିକି କହିଥିଲେ, 'ଯାଉନ', ତାଙ୍କ ମୁହଁର ଶେଷ ଆନ୍ତରିକ କଥା ପଦକ । ଏବେ ବି ସତେ କି କାନରେ ବାଜୁଛି ଆସି । ବିଦାୟ ନେବାର ଓ ଦେବାର ଅଭିନବ ଇଚ୍ଛା । ଈଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ, ଏତିକି ତାଙ୍କ ପାଇଁ ଶେଷ ପ୍ରାର୍ଥନା ।

❒ *ପୂର୍ବାଞ୍ଚଳ ଭାଷାକେନ୍ଦ୍ର, ଲକ୍ଷ୍ମୀସାଗର*
*ଭୁବନେଶ୍ୱର*

# ସାର୍ ଚାଲିଗଲେ

**ଡଃ ଉଦୟ ନାଥ ସାହୁ**

''ସାର୍ ଚାଲିଗଲେ''- ଏହିକଥା ପଦଟି ଏପ୍ରିଲ ୬ ତାରିଖ ରବିବାର ସକାଳ 'ଛ'ଟାରେ ଫୋନ୍‌ରେ ଅନ୍ୟମାନଙ୍କୁ ଜଣାଇବାକୁ ପଡୁଥାଏ । ସେତେବେଳେ ଆଖିରୁ ଲୁହ ଝରିଆସୁଥାଏ । ମନର କୋହକୁ ଚାପିରଖି କେବଳ ଏତିକି କହିବା ବ୍ୟତୀତ ଅନ୍ୟ କୌଣସି ଉତ୍ତର ଦେବାକୁ ଦମ୍ଭ ନଥାଏ । ଏହାର ଏକ ଘଣ୍ଟାପୂର୍ବରୁ ସାର୍‌ଙ୍କ ଘରୁ ଫୋନ୍ ପାଇ ପହଞ୍ଚିଲି । ସେତେବେଳେ ସାର୍ ନିଃଶ୍ୱାସ ପ୍ରଶ୍ୱାସ ନେବାକୁ ବହୁତ କଷ୍ଟ କରୁଥିଲେ । ଶୁକ୍ରବାର ଦିନ (୪ତାରିଖ) କଟକରୁ, ଫେରି ମୋତେ ସାଙ୍ଗେ ସାଙ୍ଗେ ଖୋଜିଲେ । ଖବର ପାଇ ପହଞ୍ଚିବା ପରେ ପାଖରେ ବସିବାକୁ ଠାରିଲେ । ଅନେକ କଥା କହିବାକୁ ଚାହୁଁଥିଲେ । କିନ୍ତୁ କେବଳ ଦୁଇପଦ କଥା ଅସ୍ପଷ୍ଟ ସ୍ୱରରେ କହିବା ବ୍ୟତୀତ ଆଉ ବିଶେଷ କିଛି କହିପାରିନଥିଲେ । ବହୁକଷ୍ଟ ନିଜେ ପାଇଥିବା ସତ୍ତ୍ୱେ ପଚାରିଲେ 'ନା' ବୋଲି ଉତ୍ତର ଦେଉଥିଲେ । ସମସ୍ତଙ୍କୁ ଗୋଟିଏ କଥା 'ଯାଅ- କିଛି ହୋଇନି ।' କିନ୍ତୁ ଏସବୁ ସ୍ୱର ଯେ ସେଦିନ ହଜିଯିବ, ଏକଥା କେହି ବିଶ୍ୱାସ କରିନଥିଲେ । ଏଇତ ଜୀବନ । ସେଇଥିପାଇଁ ଜୀବନର ଶେଷ ଦୁଇଦିନରେ କେବଳ ଜୀବ...ଜୀବନ...ବୋଲି ଦୁଇପଦ କଥା ବେଶ୍ ସ୍ପଷ୍ଟ ଭାବରେ ଉଚ୍ଚାରଣ କରିପାରୁଥିଲେ ।



Digitized by srujanika@gmail.com

ସାର୍ ଆରପୁରକୁ ଚାଲିଗଲେଣି । ସେପୁରରେ ପୁଣି କେତେ ଛାତ୍ର, କେତେ ବନ୍ଧୁବାନ୍ଧବଙ୍କ ସହିତ ସଂପର୍କ ଯୋଡ଼ି ସାରିବେଣି । କିନ୍ତୁ ଆମେ ଏଠାରେ ତାଙ୍କର ସତ୍ତାକୁ ପ୍ରତିମୁହୂର୍ତ୍ତରେ ଅନୁଭବ କରୁଅଛେ ।

ସାର୍ଙ୍କ ସହିତ ମୋର ସଂପର୍କ ବେଶ ନିବିଡ଼ । ଦୀର୍ଘ ୨୨ବର୍ଷର । ସେ କେବଳ ମୋର ସାର୍ ନଥିଲେ, ସେଥିଲେ ଆମ ପରିବାରର ଲୋକ । ଏମ୍.ଏ. କ୍ଲାସରେ ପାଠ ପଢ଼ିବା ସମୟରେ ଓ ଗବେଷଣା କ୍ଷେତ୍ରରେ ସେ କେବଳ ଦିଗ୍‌ଦର୍ଶକ ଥିଲେ ତା ନୁହେଁ ; ସେଥିଲେ ଆମ ପରିବାରର ସୁଖ ଦୁଃଖର ସମଭାଗୀ । ସୁବିଧା ଅସୁବିଧା ବୁଝିବା, ଅସୁବିଧା ବେଳେ ସାହାଯ୍ୟ କରିବା, ମଝିରେ ମଝିରେ କିଛି କାମ କରିବାପାଇଁ ତାଗିଦ୍ କରିବା, ପିଲାମାନଙ୍କ ଦେହପା ବୁଝି ପରାମର୍ଶ ଦେବାକୁ ସଦାବେଳେ ସେ ଥିଲେ ତତ୍ପର । ୨।୩ ଦିନ ଦେଖାସାକ୍ଷାତ ନହେଲେ ପ୍ରାତଃ ଭ୍ରମଣ ଅବସରରେ ଆସି ଘରେ ପହଞ୍ଚିଯାଉଥିଲେ । ମୋ ସ୍ତ୍ରୀଦ୍ୱାରା ପ୍ରସ୍ତୁତ ଚା'କୁ ସଦାବେଳେ ତାରିଫ୍ କରୁଥିଲେ । ପିଲାମାନଙ୍କ ସହ ଥଟା ମଜା କରୁଥିଲେ । ବାସ୍ତବିକ୍ ବୟସ, ଯୋଗ୍ୟତା ନିର୍ବିଶେଷରେ ସେ ଥିଲେ ସମସ୍ତଙ୍କର ବନ୍ଧୁ ।

ଅନ୍ୟକୁ ଅବିଶ୍ୱାସ କରିବା, ଏହାବୋଧହୁଏ ସାର୍ଙ୍କ ଜାତକରେ ନଥିଲା, ତେଣୁ ସମୟେ ସମୟେ ସାର୍ ଠକି ଯାଇଛନ୍ତି । କେତେବେଳେ କେମିତି ଅତୀବ ଦୁଃଖରେ ଭାଙ୍ଗିପଡ଼ିଲେ, ତାହା ପ୍ରକାଶ କରନ୍ତି । କିନ୍ତୁ ଧୈର୍ଯ୍ୟର ସହିତ ସବୁ ସମସ୍ୟାର ସମାଧାନ ସୂତ୍ର ତାଙ୍କୁ ବେଶ ଜଣାଥିଲା । କୌଣସି ପରସ୍ଥିତିରେ ମଧ ସେ ରାଗୁନଥିଲେ । ସେଥିଲେ 'ସ୍ଥିତପ୍ରଜ୍ଞ' । ଅନ୍ୟକୁ ଦେହର ଯତ୍ନ ନେବାକୁ ପରାମର୍ଶ ଦିଅନ୍ତି । ନିଜେ ବେଶ୍ ହୃଷ୍ଟପୁଷ୍ଟ ବୋଲି, ନିଜେ କେବେ ଦେହପ୍ରତି ଯତ୍ନ ନେଇନାହାନ୍ତି । କହିଲେ,-ସବୁକଥାକୁ ହସି ଉଡ଼ାଇ ଦିଅନ୍ତି । ଜୀବନରେ କେବେ ଶଯ୍ୟାଶାୟୀ ହୋଇନଥିଲେ ବୋଲି ଶେଷ ୧୫ଦିନ ଅନ୍ତିମ ଶଯ୍ୟାକୁ ଆଦରି ନେଲେ ।

ସାର୍ଙ୍କ ନିକଟରେ ବସିଗଲେ ମନ ହାଲ୍‌କା ହୋଇଯାଏ । ମନର ଯେତେ ଦୁଃଖ, ଗ୍ଲାନି ନିମିଷକେ ଅପସରି ଯାଏ । ସେଥିଲେ ସଦା ଚଳଚଞ୍ଚଳ, ଗତିମୁଖର । ଯେତେବେଳେ ଦେଖିଲେ କିଛିନା କିଛି କାମରେ ବ୍ୟସ୍ତ । ପୋଥି ପାଠକରିବା, ପୋଥିସଂଗ୍ରହ କରିବା, ପ୍ରବନ୍ଧ ଲେଖିବା, ପିଏଚ.ଡ଼ି. ସ୍କଲାରମାନଙ୍କୁ ଦିଗ୍‌ଦର୍ଶନଦେବା, ପ୍ରାଚୀନ ପାଠ ପୁନରୁଦ୍ଧାର କରିବା, ସାରଳା ମହାଭାରତ, ଭାଗବତ, ଜଗମୋହନ ରାମାୟଣ, ଦୀନକୃଷ୍ଣ ଦାସଙ୍କ ଚଉପଦୀଭୂଷଣ, ହରିବଂଶ ପ୍ରଭୃତିରୁ ଶୁଦ୍ଧପାଠ ନିର୍ଦ୍ଧାରଣ କରି ତାକୁ ଛାପିବା ପ୍ରଭୃତି କାର୍ଯ୍ୟରେ ନିୟୋଜିତ । ଏ ସମସ୍ତ କାର୍ଯ୍ୟରେ ମୁଁ ପ୍ରାୟ ସାର୍ଙ୍କ ପାଖେ ପାଖେ ରହି ଆସିଛି । କିନ୍ତୁ ସେହି ବିଶାଳ ବ୍ୟକ୍ତିତ୍ୱର ମହାସିନ୍ଧୁରୁ ଗୋଟିଏ ଜଳବିନ୍ଦୁ ମଧ ସଂଗ୍ରହ କରିବାକୁ ସକ୍ଷମ ହୋଇପାରିନି ।

ସାର ଆଉ ନାହାନ୍ତି । ସେ ଯେଉଁଠି, ଯେଉଁପୁରରେ ଥିଲେ ମଧ ତାଙ୍କର ସ୍ନେହ, ଶ୍ରଦ୍ଧା, ଆଶୀର୍ବାଦ ଆମ ପ୍ରତି ରହିବ, ଏ ବିଶ୍ୱାସ ରହିଛି । ସେହି ଅମର ଆତ୍ମା ଚିର ତୃପ୍ତି, ଚିର ଶାନ୍ତି ଲାଭ କରୁ, ଏହାହିଁ ସାର୍ଙ୍କ ଆରାଧ ଦେବତା ଜଗନ୍ନାଥଙ୍କଠାରେ ପ୍ରାର୍ଥନା କରି ରହୁଛି ।

❒ *'ବିନ୍ଦୁଶ୍ରୀ' - ପ୍ଲଟ ନଂ ୨୧୯୪ ଏ, ବିନ୍ଦୁସାରଗର ପଶ୍ଚିମ ପଟ*

*ଭୁବନେଶ୍ୱର - ୨*



Digitized by srujanika@gmail.com

# ଓଡ଼ିଆ ସାହିତ୍ୟର ଅମ୍ଳାନ ପ୍ରତିଭା
# ମୋର ପୂଜ୍ୟଗୁରୁଦେବଙ୍କ ସ୍ମରଣେ

ଡକ୍ଟର ପ୍ରାଚୀ ଭୂଷଣ ତ୍ରିପାଠୀ

ସଂସାରରେ ଜନ୍ମହେଲେ ମରିବା ନିଶ୍ଚିତ । ଏହି ନିୟମ ନିଛକ ସତ୍ୟ ହେଲେ ବି ମୋହମାୟା, ଯଶ-ଅପଯଶର ଅଧିକାରୀ କରିଦିଏ - ବାନ୍ଧିଦିଏ ମଣିଷକୁ । ରହିଯାଏ ବହୁ ଅବଶୋଷ । ମାଟିଦେହ ମିଶିଯାଏ ମାଟିରେ । ଯଶଥିଲେ ଅମର ହୋଇଯାଏ ଆତ୍ମା । ସଂପଦ ଓ ବିପଦ ସମୟରେ ମହତ ଲୋକ ହିଁ ଗୋଟିଏ ରୂପ ଧାରଣ କରନ୍ତି । ''ସମ୍ପଦୌଚ ବିପଦୌଚ ମହତାମ ଏକ ରୂପତା'' - ଏଭଳି ବ୍ୟକ୍ତିର ଅଧିକାରୀ, ଅସୀମ ଧୈର୍ଯ୍ୟବାନ, ଗୁଣୀ, ଜ୍ଞାନୀ ଓ ଉତ୍କଳ ଜନନୀର ବରପୁତ୍ର ହିଁ ଆପଣ - ମୋର ପୂଜ୍ୟ ଗୁରୁଦେବ ୰ ଡଃ କୃଷ୍ଣଚରଣ ସାହୁ । ଆପଣଙ୍କର ସେଇ ଜ୍ଞାନର ଗାରିମା, ସ୍ନେହୀମନ, ଉଦାର ହୃଦୟ ସମସ୍ତ ଛାତ୍ରଛାତ୍ରୀଙ୍କ ନିକଟରେ ଅମ୍ଳାନ ହୋଇ ରହିବ । ଆପଣ ଆମ୍ଭମାନଙ୍କୁ ଏହି ଅବିଦ୍ୟା ମର୍ତ୍ତ୍ୟରେ ଛାଡ଼ିଦେଇ ଯେପରି ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି କରିଛନ୍ତି ବ୍ୟକ୍ତିଗତ ଭାବରେ ସତ କହୁଛି - ଆପଣଙ୍କ ଉପରେ ଭାରି ଅଭିମାନ । ପାଠ ପଢ଼ିଲା ବେଳେ ମୁଁ ଆପଣଙ୍କୁ ଯେତେ ବିରକ୍ତ କରିଛି; ବୋଧହୁଏ ଆଉ କେହି କରିନଥିବେ । ତଥାପି ପ୍ରତି ସାକ୍ଷାତରେ କାହିଁକି କୁହନ୍ତି - ''ଏଇ ପାଗଳା ଆସିଗଲା'' । ପୁଣି ବେଳେ ବେଳେ ହସିଦେଇ କୁହନ୍ତି ''ହଇଓ ଆଶୁବାବୁ !! ଯାକୁ ସମ୍ଭାଳ'' । କିଏ କହୁଥିଲା ଏଭଳି ହସିବାକୁ ? କିଏ କହୁଥିଲା ଏଗୁଡ଼ାକ କହିବାକୁ ? ଏବେ ମନେପଡ଼ିଲେ ଆଖିରେ ଲୁହ ଆସିବନି ? ଏଇ ମାସେ ତଳେ ପରା ମୋତେ ରାମାୟଣ ଦୁଇଖଣ୍ଡ ଦେଇ କହିଥିଲେ - ''ମୁଁ ବୁଢ଼ାହେଲିଣି, ଘରେ ସବୁବେଳେ ବସିଛି, ଯେତେବେଳେ ଯାହା ଦରକାର ଆସି ବୁଝିଯିବୁ''। ଏବେ କେଉଁଠିକି ଯିବି କୁହନ୍ତୁ !! ଆପଣଙ୍କୁ କିଏ କହୁଥିଲା ଏତେ ଶୀଘ୍ର ଘର ସଂସାର ଛାଡ଼ିବାକୁ ?? ଯେଉଁଠିକି ଗଲେ ସେଇଠିକି କ'ଣ ଆପଣଙ୍କ ଘରକୁ ଗଲାଭଳି ମନଇଚ୍ଛା ଯାଇହେବ ? ଦେଖନ୍ତୁ, ଯେତେ ଅମଣିଷଙ୍କୁ ଆପଣ ସ୍ନେହ, ଶ୍ରଦ୍ଧା, ଜ୍ଞାନର ଆଲୋକ ଦେଇ ମଣିଷ କରିଯାଇଛନ୍ତି; ସେମାନଙ୍କ ଆଖିରୁ କିପରି ଟୋପାଟୋପା ଲୁହ ଝରିପଡୁଛି । ଶ୍ରୀ ଜଗନ୍ନାଥଙ୍କ ନିକଟରେ ମୁଁ ସେମାନଙ୍କ ସହିତ ଆଣ୍ଠୁମାଡ଼ି ବସି ଆପଣଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରାର୍ଥନା କରୁଛି । ସେ ପୁରରେ ଥାଇ ଆପଣଙ୍କର ଶୁଭାଶୀର୍ବାଦ ଆମ ଉପରେ ଝରି ପଡୁ - ଏତିକି କାମନା ।

❑ *ଅଧ୍ୟାପକ, ମୋହନ ସୁବୁଦ୍ଧି ମହାବିଦ୍ୟାଳୟ*
*ବଡ଼ମ୍ବା*



Digitized by srujanika@gmail.com

# ସ୍ମୃତି

ଡକ୍ଟର ଯଶୋବନ୍ତ ନାରାୟଣ ଧର

୧୯୭୭ ମସିହାରୁ ୧୯୯୭ ମସିହା, ସାରଙ୍କ ସହିତ ସଂପର୍କ ଏଇ କୋଡ଼ିଏ ବର୍ଷ । ଏଥର ମାର୍ଚ୍ଚ ମାସର ଏକ ଅପରାହ୍ନରେ ଭୁବନେଶ୍ୱର ପୁସ୍ତକ ମେଳାର ପ୍ରବେଶ ତୋରଣ ଠାରୁ କିଛିଦୂର ଯାଇଛି କି ନାହିଁ ହଠାତ୍ ଭେଟ ହୋଇଯାଇଥିଲା ସାର୍‌ଙ୍କ ସହିତ । କିଛି ସମୟ ନିର୍ବାକ୍ ହୋଇ ରହିଥିଲି । ଗତ ବେଶ୍ କିଛିଦିନ ହେଲା ସାରଙ୍କ ପାଖକୁ ଯାଇନଥିବା ହେତୁ ନିଜକୁ ବୋଧହୁଏ ଦୋଷୀ ଦୋଷୀ ମନେ କରୁଥିଲି । ନମସ୍କାର କରି ସେମିତି ଠିଆ ହୋଇଥାଏ । ଜଣେ ବରିଷ୍ଠ ଅଧ୍ୟାପକ ପଛପଟରୁ ଆସି ଚିହ୍ନେଇ ଦବା ଭଙ୍ଗୀରେ କହିଲେ ''ସାର୍, ଏ ଆକାଶବାଣୀର'' । ମନେ ମନେ ମୁଁ ହସିଲି । ସାର୍ ବି ହସିଥିବେ ବୋଧହୁଏ ? ସତୋତ୍ତରି ମସିହାର ପ୍ରତିଟି ପାଠ୍ୟକ୍ରମ ଆଉ ଗବେଷଣାରେ ପଦେ ପଦେ ସଂପର୍କ ରଖିଆସିଥିଲି ମୁଁ । ମାତ୍ର କଟକରେ ରହିବା ପରାଠାରୁ ବିଚ୍ଛିନ୍ନତାର ଯେଉଁ ଦୋଷ ଅର୍ଜିଥିଲି ସେଇଥିପାଇଁ ଆଜି ଆଉଥରେ ଆଉଜଣେ କିଏ ଚିହ୍ନେଇଦେଲେ ।

ସାର୍ ସେତେବେଳେ ଦିଥର ମୁଣ୍ଡ ଟୁଙ୍ଗାରି କହିଲେ ମୋ ''ଜଗମୋହନ ରାମାୟଣ'' ଦେଖିଲଣି । ଅନେକ ଦିନ ହେଲା ଅସୁସ୍ଥ ଜଣାପଡୁଥିଲେ ସାର୍ । ମୁଁ କହିଲି ''ସାର୍ ଅଫିସ୍ ପାଇଁ ଦ୍ୱିଖଣ୍ଡ କିଣିନେବି'' । ସେଇ ''ଜଗମୋହନ ରାମାୟଣ'' ପାଇଁ ମାର୍ଚ୍ଚମାସ ୨୭ ତାରିଖ ସଂଧ୍ୟାରେ କଟକରୁ ସିଧା ଯାଇ ସ୍କୁଟର୍‌ରେ ପହଞ୍ଚିଲି ସାର୍‌ଙ୍କ ଘରେ । ସେଠି ସମସ୍ତେ ଥିଲେ ଚିନ୍ତିତ । କିନ୍ତୁ କେହିକିଛି କହିନଥିଲେ ।

ମୁଁ ସାର୍‌ଙ୍କ ସହିତ ବସି ରହିଥିଲି ପ୍ରାୟ ଅଧଘଣ୍ଟାଏ ବା ପଇଁଚାଳିଶ ମିନିଟ୍ । ତାରି ଭିତରେ ସେ ଯେ କହୁଥିଲେ ଠିଆହୋଇ ପାରୁନାହାନ୍ତି ବୋଲି ସେ ଉଠି ଠିଆହେଲେ ଜଣେ ଡାକ୍ତରଙ୍କ ଉପଚାର ଓ ଔଷଧ ପ୍ରୟୋଗରେ । ମନରେ କିଛି ଶାନ୍ତି ଓ ସ୍ୱସ୍ତି ନେଇ ଫେରି ଆସିଥିଲି ଜଗମୋହନ ରାମାୟଣ ନେଇ । ସେଇ ଶେଷ ଦେଖା, ଅପ୍ରେଲ ୬ ତାରିଖରେ ସବୁଶେଷ ହୋଇଥିଲା । ସେଇ ଜଗମୋହନ ରାମାୟଣ ! ଶେଷ ପର୍ଯ୍ୟନ୍ତ ଥିଲା ସାର୍‌ଙ୍କ ସ୍ୱପ୍ନ ଓ ସାଧନା

❑ *ପ୍ରୋଗାମ୍ ଏକ୍‌ଜିକ୍ୟୁଟିଭ୍*

*ଆକାଶବାଣୀ, କଟକ*

Digitized by srujanika@gmail.com

# ମହାତ୍ମାର ମହାଯାତ୍ରା

ଡକ୍‌ଟର ପ୍ରସନ୍ନ କୁମାର ମହାନ୍ତି

ମଣିଷ ହସିହସି ଆଖିବୁଜିଦେବା କେବଳ ସିନେମାରେ ଆମେ ଦେଖିଛୁ । ସେ କିନ୍ତୁ ସତରେ ଏମିତି ହସି ହସି ଚାଲିଗଲେ ଯେ.....

ପ୍ରଫେସର ଡଃ କୃଷ୍ଣଚରଣ ସାହୁ ଓଡ଼ିଆ ସାହିତ୍ୟକୁ ଯେଉଁ ଅମୂଲ୍ୟ ନିଧି ଦେଇଯାଇଛନ୍ତି ତାହା ଅନେକଙ୍କୁ ଜଣା । ମାତ୍ର ସାହିତ୍ୟଠୁ ଜୀବନ ବହୁତ ବଡ଼ ବୋଲି ଆମେ ସବୁବେଳେ କହିଆସିଛୁ । ଡଃ ସାହୁଙ୍କର ଜୀବନଟି କେମିତି ଥିଲା ? କେମିତି ମଣିଷଟିଏ ଥିଲେ ସେ ? ପରୋପକାରୀ, ସ୍ନେହୀ, ଉଦାର, କ୍ଷମାଶୀଳ, ତ୍ୟାଗମୟ, ସମ୍ବେଦନଶୀଳ, ନିର୍ଲୋଭ, ନିରହଂକାର.... ବୋଲି କହିଲେ ଯଥେଷ୍ଟ ହେବ କି ? ସଂସାରବ୍ୟାପୀ ପାପର ଏ ପ୍ରଶସ୍ତପଙ୍କ ଭିତରେ ସେଇ ମହମହ ବାସୁଥିବା ଲୋଭନୀୟ ଉଜ୍ଜ୍ୱଳ ପଦ୍ମଫୁଲଟି କାହିଁକି ଫୁଟିଥିଲା କେଜାଣି ? ହୁଏତ କ୍ଲାନ୍ତି ଓ ଅବସାଦର ଏଇ ଅଦିଗନ୍ତବ୍ୟାପୀ କଲୁଷ ଭିତରେ କଦବା ଏମିତି ପଦ୍ମଟିଏ ଫୁଟେ ବୋଲି ହିଁ ଏ ସଂସାର ଆଜିଯାଏଁ ଜୀଇଁ ରହିଛି । ସେଇ ପୁଣ୍ୟମୟ ପଦ୍ମର ମୁଗ୍ଧରୂପ ଓ ସମ୍ମୋହକ ସୁଗଂଧରେ ଆଖପାଖର କଲୁଷ କେରାଏ ଆଲୁଅରେ ଟିକେ ରାହା ପାଇଯାଉଛନ୍ତି ।

ମଣିଷ ମରିଗଲାପରେ ଲୋକେ ତା'ର ସୁଗୁଣସବୁ ଖୋଜି ବସନ୍ତି । ମୁଁ କିନ୍ତୁ ଡଃ ସାହୁଙ୍କର ଦୁର୍ଗୁଣଟିଏ ଖୋଜୁଛି । ତାଙ୍କର ଗୋଟିଏ ମାତ୍ର ଦୁର୍ଗୁଣ ମୋ' ଆଖିକୁ ଦିଶୁଛି । ଛଳନା, କପଟ, ସ୍ପର୍ଦ୍ଧା, ଅହଂକାର, ସ୍ୱାର୍ଥସର୍ବସ୍ୱତା ଓ କୁଟିଳତାର ଏ ସଂସାରରେ ଏସବୁରୁ ରହିତ ସେ ଥିଲେ ଏକ ବ୍ୟତିକ୍ରମ । ଏଇ ବ୍ୟତିକ୍ରମ ହିଁ ହୁଏତ ତାଙ୍କର ଏକମାତ୍ର ଦୁର୍ଗୁଣ !

ସେଥିଲେ ମୋ' ଛାତ୍ରଜୀବନର ଅନ୍ତିମ ସୋପାନର ଶିକ୍ଷା-ଗୁରୁ । ଅଥଚ ଗୁରୁ-ଶିଷ୍ୟର ସେ ସଂପର୍କ କେତେବେଳେ ଯେ ଏକ ସଂଜ୍ଞାବିହୀନ ନିବିଡ଼ତର ଆତ୍ମିକ ବଂଧନରେ ରୂପାନ୍ତରିତ ହୋଇଯାଇଥିଲା, ମୁଁ ଜାଣିପାରି ନଥିଲି । ଯେତେବେଳେ ସ୍ମିତ ହସଟିଏ ସହ ମୋ' ନାମଟି ତାଙ୍କ ମୁହଁରୁ ଉଚ୍ଚାରିତ ହେଉଥିଲା, ତାହା ଗଭୀର ଆତ୍ମୀୟତାବୋଧର ଏକ ଅପୂର୍ବ ଅଭିଜ୍ଞତାରେ ପରିଣତ ହେଉଥିଲା । ତାଙ୍କର ଏତେ ଶ୍ରଦ୍ଧାର ପାତ୍ର ହେବାର ଯୋଗ୍ୟତା ନିଶ୍ଚେ ମୋର ନଥିଲା; ଯେଉଁଥିଲାଗି ସଅଳ ସେ ସୌଭାଗ୍ୟ ଛଡ଼ାଇ ନେଲା ଅଦୃଷ୍ଟ !

ବିଶ୍ୱାସ ଘାତକ, ଆତ୍ମଗୋପନ ପ୍ରବଣ ମାୟାବୀ କର୍କଟ ରୋଗର ବାହାନାଛଡ଼ା କପଟୀ ଈଶ୍ୱରଙ୍କୁ ଆଉ କିଛି କୌଶଳ ଅଣ୍ଟିଲାନି ପରା ! ବୋଧହୁଏ ବର୍ଷେ କି ଦୁଇବର୍ଷ ତଳୁ ତାଙ୍କ ପେଟରେ



Digitized by srujanika@gmail.com

(କଲୋନ୍) କର୍କଟ ରୋଗର କାଳସର୍ପ ଛାଡ଼ିଦେଇଥିଲେ ଈଶ୍ୱର । ସଫା ସୁତୁରା ସୁନ୍ଦର ଫଳଟିକୁ ଦେଖି ପରୀକ୍ଷିତ ରାଜା ମନେମନେ ହସି ହସି ବିଦ୍ରୂପ କରିଥିବେ ସେଦିନ । ତକ୍ଷକ ଦଂଶିବ ପରା ମୋତେ ? ହାଃ ଠିକ୍ ପର ମୁହୂର୍ତ୍ତରେ କିନ୍ତୁ ରାଜାଂକର ସ୍ୱତନ୍ତ୍ରଭାବେ ସୁରକ୍ଷିତ ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ ସବୁକିଛି ଓଲଟପାଲଟ ହୋଇଯାଇଥିଲା ସେଦିନ ! କୃଷ୍ଣ ଚରଣଙ୍କର କର୍କଟ ରୋଗର ଅଦୃଶ୍ୟ ପରୱାନାଟି ସେମିତି କାହାରି ଆଖିକୁ ଦିଶିନଥିଲା । ଏପରିକି ମୃତ୍ୟୁର ୧୫ଦିନ ପୂର୍ବ ପର୍ଯ୍ୟନ୍ତ ସେ ତାଙ୍କର ଦୀର୍ଘ ଦିନର ଅଭ୍ୟାସ ମୁତାବକ ଘଣ୍ଟା ଘଣ୍ଟା ବସି ଲେଖାପଢ଼ାରେ ମଗ୍ନ ରହୁଥିଲେ ।

ପାରିବାରିକ କ୍ଷେତ୍ରରେ ତାଙ୍କର ଥିଲା ଦୁଃଖଦ ପ୍ରତିକୂଳତା । ପତ୍ନୀଙ୍କର ଦେହାନ୍ତ ହୋଇସାରିଥିଲା କିଛିବର୍ଷ ପୂର୍ବେ । ଏକମାତ୍ର ପୁତ୍ର ବିଭୂତି ସୁଦୂର ଦେୱାସ୍‌ରେ କାର୍ଯ୍ୟରତ । ତିନି କନ୍ୟାଙ୍କର ବିବାହ ସରିଥିଲେହେଁ ଆହୁରି ଦୁଇଟି କନ୍ୟାଙ୍କର ବିବାହ ତଥାପି ବାକି । ଅଥଚ ଏସବୁ ଭିତରେ ସୁଦ୍ଧା ତାଙ୍କ ମୁହଁର ପରିଚ୍ଛନ୍ନ ହସ ଓ ତାଙ୍କର ହୃଦୟଭରା ସମ୍ଭାଷଣ ତାଙ୍କୁ ସଂସାରର ସବୁଠୁ ସୁଖୀ ଓ ସନ୍ତୁଷ୍ଟ ଲୋକ ଭାବେ ଚିହ୍ନାଇ ଦେଉଥିଲା ।

ନାନା ସଂଘାତ, ନାନା ବାଧା ବିପରି, ନାନା ସଂଘାତ ସଂକଟ ବିରୁଦ୍ଧରେ ଆବାଲ୍ୟ ଲଢ଼ି ଲଢ଼ି ସେ ଜୀବନ-ପଥରେ ଏକ ଅକ୍ଳାନ୍ତ ଯୋଦ୍ଧାଭାବେ ବାଟ ଚାଲିଥିଲେ ଓ ତଥାପି ଉତ୍ସର୍ଗୀକୃତ ସାହିତ୍ୟ ସାଧନାରେ ନିମଗ୍ନ ରହିଥିଲେ । କିଛିବର୍ଷତଳେ ଥରେ ପ୍ରସଂଗକ୍ରମେ ସେ ମୋତେ କହିଲେ "ତୁମ ମାନଙ୍କର ସମସ୍ୟା ଓ ସଂଗ୍ରାମ ତ ସାମାନ୍ୟ ପ୍ରସଙ୍ଗ ! ମୋ ଜୀବନରେ କେତେଯେ ସଂଘାତ ସଂଘର୍ଷ ଭିତରେ ବାଟ୍ ଚାଲିଚି ମୁଁ । ରାଶି ରାଶି ଦୁଃଖ କଷ୍ଟ ମୋର ଏ ଦେହରେ ଅହରହ ଧକ୍କା ଦେଇ ଦେଇ ଏ ଦେହ ଚିକ୍‌କଣ ହୋଇଯାଇଛି । ଦୁଃଖ ଯନ୍ତ୍ରଣାସବୁ ଆଜିକାଲି ଏ ପିଛିଳ ଦେହରେ ଗୋଡ଼ ଖସେଇ ଖସଡ଼ି ଯାଆନ୍ତି ।"

ତାଙ୍କର ଦୀର୍ଘଦିନ ଧରି ହେଉଥିବା ପେଟ ଓ ଅଂଟା ପାଖର ଯନ୍ତ୍ରଣାକୁ କର୍କଟରୋଗ ବୋଲି ଧରିପାରି ନଥିଲେ ଚିକିତ୍ସକମାନେ । ଚିକିତ୍ସା ଚାଲିଥିଲା ଅନ୍ୟଏକ ରୋଗର । କର୍କଟ ରୋଗ ବୋଲି ଜଣାପଡ଼ିଲା ବେଳକୁ ସବୁକିଛି ଡାକ୍ତରମାନଙ୍କ ଅକ୍ତିଆର ବାହାରକୁ ପାଦ ବଢ଼ାଇ ସାରିଥିଲା । ବମ୍ବେର ବିଶିଷ୍ଟ ଚିକିତ୍ସକ ଡଃ ପରିଖ୍ ଅସ୍ତ୍ରୋପଚାର କଲେ, ମାତ୍ର କଲୋନ୍‌ର ହତ୍ୟାକାରୀ ଶତ୍ରୁକୁ ଓ ତା'ର ବିଷାକ୍ତ ବ୍ୟାପ୍ତିକୁ ନିର୍ମୂଳ କରି ପାରିନଥିଲେ । ସେତେବେଳକୁ ଯକୃତ୍ ମଧ୍ୟ କର୍କଟାକ୍ରାନ୍ତ ହେବାକୁ ଆରମ୍ଭ କରିସାରିଥିଲା । ନିଃଶ୍ୱାସରେ ବାଧା ସୃଷ୍ଟିକଲା । ସାଲାଇନ୍ ଓ ଅମ୍ଳଜାନ ଦିଆଚାଲିଲା । ଡଃ ସଂଘମିତ୍ରା ମିଶ୍ର, ଡଃ ଉଦୟନାଥ ସାହୁ ପ୍ରଭୃତି ସାର୍‌ଙ୍କର ପ୍ରିୟ ଛାତ୍ରଛାତ୍ରୀ ସାର୍‌ଙ୍କ ଆତ୍ମୀୟମାନଙ୍କ ସହ ମ୍ରିୟମାଣ ହୋଇ ବସିଥାନ୍ତି ।

ଶେଷ ଦୁଇଦିନର ପରିସ୍ଥିତିଥିଲା ଅତ୍ୟନ୍ତ ମର୍ମନ୍ତୁଦ ଓ ଅସହ୍ୟ ତୀବ୍ର ବେଦନା, ବିଷର୍ଣ୍ଣତା ଓ ନୈରାଶ୍ୟବୋଧ ମଧ୍ୟରେ ଆମେ ସେସବୁ କଠୋର ମୁହୂର୍ତ୍ତ ଗୁଡ଼ିକୁ ସାମ୍ନା କରୁଥିଲୁ । ୪ ତାରିଖ ସକାଳେ ଡାକ୍ତରମାନେ ଆଶା ଛାଡ଼ିଦେଲେ ଓ ନାସ୍ତିବାଣୀ ଶୁଣାଇ ସାର୍‌ଙ୍କୁ ଘରକୁ ଫେରାଇଦେଲେ ।



Digitized by srujanika@gmail.com

ଅକ୍ସିଜେନ୍ ନାହିଁ, ସାଲାଇନ୍ ନାହିଁ, ଔଷଧ ପତ୍ର ଚିକିତ୍ସା ନାହିଁ, ପାଟିବାଟେ ମଧ୍ୟ କିଛି ଖାଦ୍ୟ ପାନୀୟ ନାହିଁ। କେବଳ ନିଶ୍ଚିତ ମରଣର ନିଷ୍ଠୁର କାଳାନ୍ତକ ମୁହୂର୍ତ୍ତକୁ ଅପେକ୍ଷା ! ଅଥଚ ସେ ନିଜେ ଥାଆନ୍ତି ସବୁ ଆଶା ଆଶଂକାର ଉର୍ଦ୍ଧ୍ୱରେ ! ସେତେବେଳେ କ'ଣ ଭାବୁଥାନ୍ତି ସେ ?

ଘଣ୍ଟା ଘଣ୍ଟା ତାଙ୍କ ପାଦପାଖେ ବା ମୁହଁପାଖେ ବସି ତାଙ୍କ ପାଦ ବା କପାଳକୁ ଆଉଁସି ଦେଉଥାଏ ମୁଁ। ତାଙ୍କ ହାତ ପାପୁଲିକୁ ମୋ ହାତ ପାପୁଲି ଉପରେ ରଖି ସାଉଁଳାଉଥାଏ। ପଚାରିଲି - ''ସାର୍, ବହୁତ କଷ୍ଟ ହେଉଛି ନାଁ ?'' ହସି ହସି ସେ ଉତ୍ତର ଦିଅନ୍ତି - ''ନାଁ, କିଛି ନାହିଁ।'' କି ପରିଚ୍ଛନ୍ନ, ଉଜ୍ଜ୍ୱଳ ଓ ସ୍ୱର୍ଗୀୟ ସେ ହସ ! ଜୁଳୁ ଜୁଳୁ ଚାହିଁ ଥାଆନ୍ତି। କିଛିହେଲେ ଅଭିବ୍ୟକ୍ତି ଦେଖାଇ ଦେଉ ନଥାନ୍ତି ସେ ଚାହାଣିରେ। ନିରୀହ, ନିଷ୍କମ୍ପ, ସହଜ, ସରଳ, ପ୍ରଶ୍ନହୀନ, ବେଦନାହୀନ, ଅସଂତୋଷହୀନ, ଆକାଂକ୍ଷାହୀନ...... ଆଶ୍ଚର୍ଯ୍ୟ ସେ ଚାହାଣି ! ତାଙ୍କ ଆଗରେ କାନ୍ଦିବିନି ବୋଲି ଉଠିଗଲି। ବାହାରେ ଏକ କୋଣରେ ଠିଆହୋଇ ଚୁପ୍‌ଚାପ୍ ଲୁହ ଢାଳି କିଛି ସମୟପରେ ପୁଣି ଫେରିଲି ତାଙ୍କ ପାଖକୁ।

ଆଉ ତାଙ୍କ ଆଖିକୁ ଚାହିଁପାରୁନଥାଏ ମୁଁ। ମତେ ଲାଗୁଥାଏ ମୁଁ ହିଁ ଯେମିତି ତାଙ୍କୁ ମାରିଦେଉଛି। ନିଜକୁ ବଡ଼ ଦୋଷୀ ଦୋଷୀ; ପାପୀ ଓ ଅପରାଧୀ ପରି ଲାଗୁଥାଏ। - ଆପଣ ମରି ଯାଉଛନ୍ତି ମୋ' ଆଖି ଆଗରେ, ମୁଁ କିଛି କରିପାରୁନି। ଆମେ କେହି କିଛି କରିପାରୁନୁ .....। ଆପଣ ଯଦି ଆପଣଙ୍କ ଆଖିରେ ଆଖିରେ ସେଇକଥା ପଚାରି ଦେବେ - ''ପ୍ରସନ୍ନ ! ମୁଁ ମରିବାକୁ ଚାହେଁନାରେ, ମତେ ବଂଚା !'' ମୁଁ କ'ଣ କରିବି ?

ଶେଷ ଦୁଇଦିନ ଖାଲି କହୁଥାନ୍ତି ''କଣ ଯିବନାଇଁ ? ଯାଉନା ! ଯାଅ ଶୋଇବ ଯାଅ। ତମେ ସବୁ ଗଲେ ମୁଁ ଶୋଇବି''। ମଝିରେ ମଝିରେ ଧୀରେ ଧୀରେ କହୁଥାନ୍ତି - ''ନାଁ, ଯିବନି। ଆଜି ଯିବନି।'' ସେତେବେଳେ ସେ ନିଶ୍ଚେ ତାଙ୍କ ଜୀବନ (ଆତ୍ମା)ର ମହାଯାତ୍ରା କଥା ହିଁ କହୁଥାନ୍ତି।

ଶେଷ ପର୍ଯ୍ୟନ୍ତ ସାର୍ ଲୋକ ଚିହ୍ନୁଥାନ୍ତି। ମୃତ୍ୟୁର ମାତ୍ର କେଇ ଘଣ୍ଟା ପୂର୍ବ ପର୍ଯ୍ୟନ୍ତ କଷ୍ଟ ହେଉଛି କି ବୋଲି ପଚାରିଲେ ''ନାଇଁ, କିଛି ନାଇଁ'' ବୋଲି କହି ସେ ଯେଉଁ ମଧୁର ହସଟିଏ ହସି ଦେଉଥାନ୍ତି ତାହାହିଁ ଆମ ସମସ୍ତଙ୍କ ପ୍ରାଣକୁ କନ୍ଦାଇ ପକାଉଥାଏ।

ମଝିରେ ମଝିରେ ପୁଣି କହୁଥାନ୍ତି - ''ଟିକେ ବାଣୀ ବିହାର ଯିବି।'' ଦୀର୍ଘ ୧୯ ବର୍ଷକାଳ ଯେଉଁଠାରେ ସେ ଜୀବନର ସମସ୍ତ ଏକାଗ୍ରତା ଓ ଉତ୍ସର୍ଗ ସହ ବାଣୀଙ୍କର ମହାସମୁଦ୍ରରେ କଲମ୍ବସ୍‌ଙ୍କ ପରି ଦିଗ୍‌ବିଜୟର ସେ ପ୍ରୟାସୀ ଥିଲେ, ନିଜର ସେଇ ପ୍ରିୟତମ କର୍ମସ୍ଥଳୀକୁ ଶେଷ ପର୍ଯ୍ୟନ୍ତ ଝୁରୁଥିଲେ।

ସ୍ୱର୍ଗଦ୍ୱାରରେ ସାର୍‌ଙ୍କ ମରଶରୀରକୁ ଘେରି ହୁଡ୍ ହୁଡ୍ ନିଆଁ ଜଳି ଉଠିଲା। ଆଶ୍ଚର୍ଯ୍ୟ ହେଇ ଦେଖିଲି ତାଙ୍କର ବାମ ହାତଟି ଧୀରେ ଧୀରେ ଉପରକୁ ଉଠିଲା। ଅଚ୍ଛ ଅଚ୍ଛ ହୋଇ କିଛି ସମୟ



Digitized by srujanika@gmail.com

ମଧରେ ହାତଟି ମହାଶୂନ୍ୟରେ କାହାକୁ ହାତଠାରି ଡାକିଲାପରି ସିଧା ଆକାଶ ଆଡ଼କୁ ଊର୍ଦ୍ଧ୍ୱମୁଖୀ ହୋଇ ସଳଖ ହୋଇଗଲା । ସତେଯେମିତି ଆକାଶକୁ ହାତ ଦେଖାଇ ସେ କହୁଥାନ୍ତି - "ଏଥର ଯାଅସବୁ । ମୁଁ ସେଇ, ଆକାଶର ସେ ଅନନ୍ତ ନୀଳିମା ଭିତରେ ଥିବା ଅଜଣା ରହସ୍ୟ ଆଡ଼କୁ ଚାଲିଲି । ବିଦାୟ !!"

❑ *ଅଧ୍ୟାପକ, ବିଜେବି କଲେଜ*
ଭୁବନେଶ୍ୱର

# ସାର୍‌ଙ୍କୁ ଯେମିତି ଜାଣିଛି

**କବିତା ପ୍ରତିହାରୀ**

ବାବୁଜୀ, କୃଷ୍ଣ, ଡକ୍ଟର ସାହୁ, ସାର୍ ଆଦି ବହୁ ସମ୍ବୋଧନର ଅଧିକାରୀ ମଣିଷ ଜଣକ ଆଜି ଆଉ ନାହାନ୍ତି । ଏକଥା ଯେତେ ସତ ହେଲେ ବି ବିଶ୍ୱାସ କରିହେଉନାହିଁ । ଗବେଷକ, ଐତିହାସିକ, ସମାଲୋଚନାରେ ନୂତନ ଧାରାର ପ୍ରବର୍ତ୍ତକ, ରାମାୟଣ ତଦ୍‌ବିଦ୍ ଭାବରେ ସେ ଯେତିକି ପରିଚିତ ଜଣେ ଭଲ ମଣିଷ ଭାବରେ ତାଙ୍କର ପରିଚିତି କଳି ହେବାର ନୁହେଁ । ଗଭୀର ଭାବରେ ସଂସାରୀ ଥାଇ ବି ସେ ସଂସାରରେ ନଥିଲେ । ଏଇ ଋଷିପ୍ରତିମ ଭାବ ହିଁ ତାଙ୍କୁ ବୋଧେ ଗଭୀର ଅଭିନିବେଶ ଦେଉଥିଲା । ତେଣୁ ସଂସାରର ବହୁ ସମସ୍ୟାରେ ସେ ସ୍ଥିର ଦିଶୁଥିଲେ । ନିଜ ଜୀବିତ ମନର ମାପକାଠିରେ ଆମକୁ କେବଳ ସେମତି ଦିଶୁଚି ବୋଲି ଲାଗୁଥିଲା । କିନ୍ତୁ ସତକୁ ସତ ସେ ସେୟା ହିଁ ଥିଲେ । ନଚେତ୍ ପୋଥି ସଂପାଦନା ସାଙ୍ଗକୁ ନୂଆ ନୂଆ କଥା ଚିନ୍ତା କରିବା, ସମସ୍ୟା ଘେରରେ ମଣିଷକୁ ବିଶ୍ୱାସ ଦେବା, ଭାଙ୍ଗିପଡୁଥିବା ମଣିଷ ଭିତରେ ଆସ୍ଥା ସଂଚାର କରିବାର ଅଦ୍ଭୁତ କ୍ଷମତା ତାଙ୍କୁ କେମିତି ମିଳୁଥିଲା ? ଜଣେ କେତେ ବ୍ୟାପ୍ତ ହେଲେ ନିଜକୁ କେତେ ପ୍ରସାରିତ କରିପାରିବ ଏକଥା ତାଙ୍କଠି ଦେଖିଥିଲି । ସେ ନିତି ଦିନିଆ ଜୀବନ ହେଉ, ବା ସାହିତ୍ୟ ହେଉ - ସବୁକ୍ଷେତ୍ରରେ ସେ ଥିଲେ ଅଦ୍ଭୁତ ଭାବରେ ପ୍ରସାରଣଶୀଳ । ବାଣୀବିହାରରେ ସାରଳା ପଞ୍ଚସଖା ପଢ଼ାଉଥିଲାବେଳେ ସେ ଆଖିବୁଜି ପଢ଼ାନ୍ତି, ଆମର ହାତ ଚାଲେ, ହେଲେ ମନଭିତରେ ବିସ୍ମୟ ଭରିଥାଏ । କେତେ ଗୂଢ଼ ରହସ୍ୟର କଥା, ପିଣ୍ଡ ବ୍ରହ୍ମାଣ୍ଡ ବାଦର ତାତ୍ତ୍ୱିକ ବିଶ୍ଳେଷଣ ସେଇମିତି ସହଜ ସୁଲଭ କଥା କହିବା ଢ଼ଙ୍ଗରେ ଝରି ଆସେ । ପୁଣି ପୂରାପୂରି ଆଧୁନିକ କାଳର ନାଟକ 'ଅରଣ୍ୟଫସଲ' ପଢ଼ାଉଥିଲାବେଳେ ତାଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣର ପରିବେଷଣ ଭଙ୍ଗୀ ଆମକୁ



Digitized by srujanika@gmail.com

ହତବାକ୍ କରେ । ସାଧାରଣତଃ ଦେଖାଯାଏ ଗବେଷକ ବା ତଦ୍‌ବିଦ୍‌ମାନେ ଦୁଇଚାରି ଶତାବ୍ଦୀ ଭିତରେ ନିଜକୁ ସୀମାବଦ୍ଧ କରିଥାନ୍ତି । କିନ୍ତୁ ଏଠିଥିଲା ବ୍ୟତିକ୍ରମ ।

ବ୍ୟକ୍ତିଗତ ଭାବରେ ସେଇ ସ୍ନେହୀ, ସରଳ ଅଥଚ ଦୃଢ଼ମନା ମଣିଷ ବହୁ ନିଷ୍ଠାସାଧନା, ଅଧ୍ୟବସାୟ ସର୍ବୋପରି କଷ୍ଟକର ଝଂଝାଳ ଭିତରେ ନିଜକୁ ଠିଆ କରେଇଥିଲେ । ଈଶ୍ୱରଦତ୍ତ ସେଇ ଦୃଢ଼ ଚେହେରାରେ ଅନମନୀୟ ଭାବଥିଲା । ଚାଲିବା ବେଳେ କିଛି ଗୋଟେ ଭାବିଲାପରି ଅନ୍ୟମନସ୍କ ରହୁଥିଲେ, କିନ୍ତୁ କେହି ପରିଚିତ ଦେଖାହେଇଗଲେ ପୁଣି ସେ ଖୁସି ହେଇଯାଉଥିଲେ ନିଜ ସ୍ୱାଭାବିକ ଢ଼ଙ୍ଗରେ । ତାହାହିଁ ତାଙ୍କର ଆତ୍ମୀୟ ଭାବ, ପିତୃସୁଲଭ ଆକର୍ଷଣ । ମଣିଷ ମନର କ୍ଷତକୁ ବୁଝିବା ତାଙ୍କ ଆବଶ୍ୟକ କାଳରେ ସ୍ନେହ ସଦିଚ୍ଛା ଓ ନିଜପଣ ଦେଇ ସାହାଯ୍ୟ କରିବା ତାଙ୍କର ଏକ ବଡ଼ଗୁଣ ଥିଲା । ଅନ୍ୟର ଖୁସିରେ ଖୁସି ହବା ଆଜିକାଲି କ୍ୱଚିତ୍ ଦେଖିବାକୁ ମିଳେ । ଚାକିରି ପାଇଛି ବୋଲି ସରକାରରୁ ମିଳିଥିବା ଚିଠିଖଣ୍ଡିକ ନେଇ ତାଙ୍କ ପାଖରେ ପହଞ୍ଚି ଚିଠିଟି ବଢ଼ାଇଦେଲି । ପାଖରେ ଥିବା ଚେୟାରରେ ମୋତେ ବସିବାକୁ କହି ବଡ଼ପାଟିରେ ଭୋଳକୁ ଡାକ ପକାଇଲେ । 'ଶୀଘ୍ର ଯା' ମିଠା ନେଇ ଆ ' । ସେଦିନ ସେ ରୁମ୍‌ରେ ବସିଥିବା ଦୁଇଜଣ ପୁରାତନ ଛାତ୍ର ଓ ନିଜେ ଭୋଳ ଏ ଆକସ୍ମିକତାରେ ଚମକିପଡ଼ିଲେ । ସେ ଛାତ୍ରଙ୍କ ଭିତରୁ ଜଣେ କହିଲେ ''ଏ କି କଥା ସାର୍, ଯେ ଚାକିରି ପାଇଛି ସେ ସିନା ମିଠା ଖୁଆଇବ, ଆପଣ କାହିଁକି ?'' ସାର୍ କହିଲେ, ''ପିଲା ଚାକିରି ପାଇଲେ ବେଶୀ ଖୁସି କିଏ ହବ ? ତା ବାପା, ନହେଲେ ତା'ର ଗୁରୁ । ଏବେ କୁହ, ତମେମାନେ କାହାହାତରୁ ମିଠା ଖାଇଲେ ଖୁସି ହେବ ?'' ସେମାନେ ସେତେବେଳକୁ ଚୁପ୍ ହେଇଯାଇଥିଲେ ।

ତାଙ୍କ ସାଙ୍ଗମାନଙ୍କୁ ଦେଖିଲେ ସେ ଛୋଟପିଲାପରି ଖୁସି ହଉଥିଲେ । ଏମିତି ଖୁସି ସେମାନେ ହୁଅନ୍ତି । ଆମକୁ ଲାଗେ ସେମାନେ ଏବେ ବୋଧେ ଚତୁର୍ଥ, ପଞ୍ଚମ ଶ୍ରେଣୀର ଛାତ୍ର । ଖୁବ୍ ଈର୍ଷା ହୁଏ ଏଇ ବନ୍ଧୁତାର ଗଣ୍ଠିଟାଣ ଦେଖି । ଛୋଟପିଲାଙ୍କ ପରି ଚିଡ଼ା ଚିଡ଼ି ହୁଅନ୍ତି, ଯେତେବେଳେ ମନେପଡ଼େ କେହି ପିଲା ବସିଛନ୍ତି, ସେତେବେଳେ ସମସ୍ତଙ୍କୁ ତଡ଼ିଦିଅନ୍ତି । କାରଣ ସେ ସମୟ ସେମାନଙ୍କର ଏକାନ୍ତ ନିଜସ୍ୱ ଅନୁଭୂତିର କଣ୍ଢାକଣ୍ଢି ବେଳ । ସାର୍‌ଙ୍କ ଏଇ ନଥିବା ବେଳରେ ସେମାନେ କେତେ କ୍ଷତିଗ୍ରସ୍ତ ତାହା ହିଁ କେବଳ ସେଇମାନଙ୍କୁ ଜଣା ।

ଛାତ୍ର ଛାତ୍ରୀମାନଙ୍କ ସହ ଯେତେ ନୁହେଁ, ତାଙ୍କ ପିଲାମାନଙ୍କ ସହ ସେ ସେତେ ସଂପୃକ୍ତଥିଲେ । ବୟସ ଅନୁସାରେ ସବୁ ସ୍ତରର ଲୋକଙ୍କ ସହ ସେ ମିଶି ପାରୁଥିଲେ । ଛୋଟ ଛୋଟ କଥା ମନେ ରଖୁଥିଲେ । ଥରେ ତାଙ୍କର ପୁରୁଣା ଭୁବନେଶ୍ୱରର ସେଇ ଘର ସାମ୍ନାରେ ବସି ପଢ଼ା ପଢ଼ି ଚାଲିଥିଲା । ଗୋଟେ ଚଢ଼େଇର ଶବ୍ଦଶୁଣି ମୁଁ ସାର୍‌ଙ୍କୁ ପଚାରିଦେଲି, ସାର୍ ଏ ଚଢ଼େଇର ନା କ'ଣ ? ଆଉ ଯେ କେହି ହେଇଥିଲେ, ହଠାତ୍ ଏ ପ୍ରଶ୍ନଟାକୁ ଠିକ୍‌ରେ ଗ୍ରହଣ କରିନଥାନ୍ତେ, ନିଶ୍ଚୟ ରାଗିଥାନ୍ତେ । ସାର୍ ସେମିତି ଗମ୍ଭୀରଥାଇ ପଚାରିଲେ, ତୋର ତା' ନାଁ' ଜାଣିବା କଣ ଦରକାର ? ମୁଁ କହିଲି ମୋ ପୁଅ ପଚାରିଲା ଯେ, ମୁଁ ନାଁ କହିପାରିଲିନି । ସାର୍ ନିଜେ ଜାଣିନଥିଲେ, ତେଣୁ କହିଲେ 'ରହ ମୁଁ ଜାଣିଲେ ତୋତେ କହିବି ।' ଏବେ ପଢ଼ା ପଢ଼ିକର । ସତକୁସତ ସେ କଥା ତାଙ୍କର



Digitized by srujanika@gmail.com

ମନେଥିଲା । ଅନେକ ଦିନପରେ ମୋତେ କହିଲେ 'ତୁ ତୋ ପୁଅକୁ ସେ ଚଢ଼େଇ ନା କହିଲୁ ନା ନାହିଁ ? ଜାଣିଛୁ ସେ ଚଢ଼େଇ ଯେତେବେଳେ ବୋବାଉଛି, ମୁଁ ତୋ ପୁଅ କଥା ମନେ ପକାଉଚି ।'' ମୁଁ ଆଶ୍ଚର୍ଯ୍ୟ ହେଲି, କେତେ ବଡ଼ ବଡ଼ ଚିନ୍ତା ଭିତରେ, କେତେ ବିସ୍ତୃତ ଜଂଜାଳ ଭିତରେ କେମିତି ଏତେ ଛୋଟ ଛୋଟ କଥା ତାଙ୍କର ମନେ ରୁହେ ? ନିଜ ବ୍ୟସ୍ତତା ନେଇ କେବେ ତାଙ୍କ ପାଖକୁ ଗଲେ ସେ ଗାଳି ଦିଅନ୍ତି ନାହିଁ, ବରଂ ଉଦାହରଣ ଦେଇ ନିଜ ଜୀବନର ବହୁ ଦୃଷ୍ଟାନ୍ତ ଦିଅନ୍ତି । ସେଇଥିରୁ ନିଜକୁ ଛୋଟ ଛୋଟ ଲାଗେ । ଆପଣା ଛାଏ ସଂକୁଚିତ ହେଇଯାଉ ଆମେ ।

ଆଜି ଏତିକି ଲେଖିଲା ବେଳେ ତାଙ୍କୁ ଯେମିତି ଜାଣିଚି, ସେଇମିତିରୁ କିଛି ଲେଖୁଚି ଭାବି ଲେଖୁଚି । କାରଣ, କେତେକଥା ମନକୁ ଆସୁଚି । ସେଇ ବିଶାଳ ବ୍ୟକ୍ତିତ୍ୱର ଦୃଢ଼ତା, ବିସ୍ତୃତ ଜୀବନର ଇତିବୃତ୍ତ ଭିତରେ ଆମେ ସବୁ ଛୋଟ ଛୋଟ ଅନୁଭୂତି ଟିକେ ମାତ୍ର । ତାଙ୍କୁ ଲେଖିପାରିବୁ ପରିପୂର୍ଣ୍ଣ ଭାବରେ, ଏ ବିଶ୍ୱାସ ଅନ୍ତତଃ ମୋର ନାହିଁ । ତାଙ୍କଠାରୁ ଶିଖିବା ପାଇଁ ବହୁ ସୁଯୋଗ ପାଇଥିଲେ ବି, ସବୁକୁ ଜୀବନରେ ଉପଯୋଗ କରିପାରି ନାହିଁ, ତାହାହିଁ ନିଜର ଅକ୍ଷମତା । ଶିକ୍ଷକ ଭାବରେ ଓ ମଣିଷ ଭାବରେ ସେ ସବୁଦିନ ଜୀଇଁ ରହିବେ ଓଡ଼ିଶାର ଭାଷା ସାହିତ୍ୟରେ, ଆମମାନଙ୍କ ସାଧାରଣ ଜୀବନ ଚର୍ଚ୍ଚାର ପ୍ରେରଣା ଭାବରେ । ସିଏ ଏବେ ମଣିଷରୁ ଆତ୍ମା ପାଲଟିଚନ୍ତି । ତାଙ୍କ ଆତ୍ମାର ସଦ୍‌ଗତି ହେଉ ଏଇ ପ୍ରାର୍ଥନା କରୁଚି ।

❑ *ଅଧ୍ୟାପିକା, ରାଜଧାନୀ ମହାବିଦ୍ୟାଳୟ*

*ଭୁବନେଶ୍ୱର*

# ଗବେଷକ ଓ ଗବେଷଣାର ଦିଗ୍‌ଦର୍ଶକ

ଡକ୍‌ଟର ବିଜୟଲକ୍ଷ୍ମୀ ସ୍ୱାଇଁ

ଗବେଷଣା ଏକ ମହାନ୍, ଦୁରୂହ ତଥା ଆୟାସପୂର୍ଣ୍ଣ କଳା । ଗବେଷଣାରେ ମଜ୍ଜି ରହିଲେ ପ୍ରୀତିପାଗଳ ବ୍ୟକ୍ତି ଅସନ ବସନ ସ୍ନାନ ଭୋଜନକୁ ବିଷବତ୍ ପ୍ରତୀତ କଲାପରି ଗବେଷକ ସମସ୍ତ ପ୍ରକାର ସାଂସାରିକ ସୁଖକୁ ଅଳୀକ ତଥା ତୁଚ୍ଛ ମନେକରେ । ଏକମାତ୍ର ଗବେଷଣା ହିଁ ତା'ର ଜୀବନ । ଏ ସଂସାରରେ ପ୍ରକୃତ ପକ୍ଷେ ଆବିର୍ଭୂତ ହୋଇଥିବା ନିହାତି ନଗଣ୍ୟ ସଂଖ୍ୟକ ଗବେଷକଙ୍କ ମଧ୍ୟରୁ ଡଃ କୃଷ୍ଣ ଚରଣ ଥିଲେ ଅନ୍ୟତମ । ସତେ ଯେପରି କେବଳ ଗବେଷଣା ହିଁ ଥିଲା ତାଙ୍କ



Digitized by srujanika@gmail.com

ଜୀବନ ଧାରଣାର ମାର୍ଗ । ପ୍ରତ୍ୟେକ କଥାକୁ ଟିକିନିଖି ଉଖାରି ନିଖାରି ବିଶ୍ଳେଷଣ କରିବା ଥିଲା ତାଙ୍କର ପ୍ରବୃତ୍ତି । ତାଙ୍କ ସମ୍ପର୍କରେ ଆସିଥିବା ପ୍ରତ୍ୟେକ ବ୍ୟକ୍ତିର ଏହା ଥିଲା ଅନୁଭବ୍ୟ ।

ତୁଳସୀ ଦୁଇପତ୍ରରୁ ବାସିବା ଭଳି ଛାତ୍ରାବସ୍ଥାରେ ତାଙ୍କ ଦ୍ୱାରା ରଚିତ ଅଚ୍ୟୁତାନନ୍ଦଙ୍କ ସମ୍ପର୍କିତ ପ୍ରଥମ ପ୍ରବନ୍ଧରୁ ଗବେଷଣାର ଆଭିମୁଖ୍ୟ ଅତ୍ୟନ୍ତ ସ୍ୱଚ୍ଛ । ୧୯୫୧ ମସିହାରେ ରଚିତ ହୋଇଥିବା ଉପରୋକ୍ତ ପ୍ରବନ୍ଧ ତତ୍କାଳୀନ ସମାଲୋଚନା ଜଗତରେ ଚହଳ ସୃଷ୍ଟି କରିଥିଲା । ଛାତ୍ରୋତ୍ତର ଜୀବନରେ ଅଧ୍ୟାପନା ବୃତ୍ତିକୁ ଆଦରିନେଇ ଗବେଷଣାକୁ ସେ ଜୀବନର ବ୍ରତ ରୂପେ ଗ୍ରହଣ କରିନେଇଥିଲେ । ଆଦ୍ୟ ଅଧ୍ୟାପକ ଜୀବନରେ ବିଶ୍ୱବିଖ୍ୟାତ ରାମାୟଣ ବିଶେଷଜ୍ଞ ଫାଦର କାମିଲ ବୁଲ୍‌କେ ଥିଲେ ତାଙ୍କର Friend Philosopher and Guide. ରାମାୟଣରୁ ତାଙ୍କ ଗବେଷଣାର କ୍ଷେତ୍ର ଆରମ୍ଭ ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ତାହା ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗକୁ ପ୍ରସାରିତ ହୋଇଥିଲା ।

ରାଞ୍ଚି ବିଶ୍ୱବିଦ୍ୟାଳୟରେ ପ୍ରଥମେ ଦିଗ୍‌ଦର୍ଶକର ଭୂମିକା ଗ୍ରହଣ କରିଥିଲେ ହେଁ ବାସ୍ତବରେ ଉତ୍କଳ ବିଶ୍ୱବିଦ୍ୟାଳୟ ହୋଇଥିଲା ତାଙ୍କ ଗବେଷଣା ଓ ଦିଗ୍‌ଦର୍ଶନର କର୍ମସ୍ଥଳୀ । ୧୯୭୧ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରିବାପରେ ଏକାଧାରରେ ଗବେଷଣା ଓ ଦିଗ୍‌ଦର୍ଶନ ପ୍ରଦାନ ତାଙ୍କ ଜୀବନର ଅଙ୍ଗ ହୋଇପଡ଼ିଲା । ଓଡ଼ିଆ ସାହିତ୍ୟର ଆଦିମତମ ସମୟ ପ୍ରାକ୍ ସାରଳା ସାହିତ୍ୟଠାରୁ ଆରମ୍ଭ କରି ଅତ୍ୟାଧୁନିକ କବି ସୀତାକାନ୍ତ, ଔପନ୍ୟାସିକ ଗୋପୀନାଥ, କଥାଶିଳ୍ପୀ ଅଖିଳ ମୋହନ ଏବଂ ନାଟ୍ୟକାର ମନୋରଞ୍ଜନଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ନିର୍ଦ୍ଦେଶନାର ପରିସର ଭୁକ୍ତ । ମୋର ମନେହୁଏ, ଓଡ଼ିଆ ଗବେଷଣା ନିବନ୍ଧ ନିର୍ଦ୍ଦେଶନା ଦେବାରେ ସେ ଅଦ୍ୟାବଧି ଅନତିକ୍ରମଣୀୟ । ଅନ୍ୟୂନ ଅଶୀଜଣ ଛାତ୍ରଛାତ୍ରୀ ତାଙ୍କ ଅଧୀନରେ ଗବେଷଣାକରି ଉପାଧିପ୍ରାପ୍ତ । କେବଳ ସଂଖ୍ୟାରେ ନୁହେଁ । ଗୁଣାତ୍ମକ ମାନରେ ତାଙ୍କ ତତ୍ତ୍ୱାବଧାନରେ ପ୍ରସ୍ତୁତ ନିବନ୍ଧଗୁଡ଼ିକ ନିଜସ୍ୱ ଗୁଣରେ ଋଦ୍ଧିମନ୍ତ । ତାଙ୍କ ନିର୍ଦ୍ଦେଶିତ ସମସ୍ତ ନିବନ୍ଧ ପ୍ରକାଶିତ ହେଲେ ଓଡ଼ିଆ ସାହିତ୍ୟ ବହୁବିଧ ତଥ୍ୟ ଓ ତତ୍ତ୍ୱରେ ସମନ୍ୱିତ ହୋଇ ନୂତନ ରୂପରେ ଆତ୍ମ ପ୍ରକାଶ କରିବ ।

ନିର୍ଦ୍ଦେଶନା କ୍ଷେତ୍ରରେ ଡଃ ସାହୁଙ୍କ ବୈଶିଷ୍ଟ୍ୟ ଥିଲା - ପୁଙ୍ଖାନୁପୁଙ୍ଖ ଭାବେ ବହୁ ପ୍ରଶ୍ନ ପଚାରି ଗବେଷକର ଦୃଷ୍ଟିକୋଣକୁ ଉନ୍ମୁକ୍ତ ତଥା ପ୍ରସାରିତ କରିବା । ଏ ସମ୍ପର୍କରେ ବହୁଘଟଣା ସ୍ମୃତିକୁ ଆନ୍ଦୋଳିତ କରୁଥିଲେ ହେଁ ବ୍ୟକ୍ତିଗତ ଅନୁଭୂତିରୁ ମାତ୍ର ଦୁଇଟିକୁ ଉଲ୍ଲେଖ କରୁଛି । ପ୍ରଥମଟି ହେଲା ୧୯୮୩ ମସିହାରେ ମୁଁ ମୋର ଗବେଷଣା ନିବନ୍ଧ ପ୍ରସ୍ତୁତ କଲାବେଳେ ଦିନେ ହଠାତ୍ ପ୍ରଶ୍ନକଲେ - ''ରୁଦ୍ର ସୁଧାନିଧିର ମୁଖ୍ୟ ରସ କଅଣ ?''

ମୋର ଉତ୍ତର - ''ଭକ୍ତି ରସ''

ସେ ପଚାରିଲେ - ''କେମିତି ?''

ମୁଁ କହିଥିଲି - ''ରୁଦ୍ର ସୁଧାନିଧିରେ ବୈଷ୍ଣବ ଧର୍ମର ମହାତ୍ମ୍ୟ ପ୍ରକାଶିତ । ବୈଷ୍ଣବ ଧର୍ମ ସହ ଭକ୍ତିର ସମ୍ପର୍କ ଅତ୍ୟନ୍ତ ନିବିଡ଼ ।''



Digitized by srujanika@gmail.com

ନିରାଶ ହୋଇ ସେ ପୁନର୍ବାର ପଚାରିଥିଲେ - '' ଆଉ କେଉଁ ରସ ?''

ଦ୍ୱିଧା ବିମୁକ୍ତ ମନରେ ମୁଁ ଉତ୍ତର ଦେଲି - ''ବୀଭତ୍ସ ରସ''

ତାଙ୍କ ପ୍ରଶ୍ନର ପୁନରାବୃତ୍ତି - ''କେମିତି''

ମୁଁ ରୁଦ୍ର ସୁଧାନିଧିର ବୀଭତ୍ସ ବର୍ଣ୍ଣନାକୁ ପ୍ରକାଶକଲି । ତାଙ୍କ ମୁଖରେ ଅପ୍ରସନ୍ନର ଭାବ । ଦୁଇ ଦୁଇଥର ପରାଜିତ ହେବାପରେ ଅନନ୍ୟୋପାୟ ହୋଇ ମୁଁ କହିଥିଲି - ''ଆଉଥରେ ବହି ପଢ଼ି ମୁଁ ଆପଣଙ୍କୁ ଉତ୍ତର ଦେବି ।''

ଏକ ବିଚିତ୍ର ଭଙ୍ଗୀରେ ହସ ପ୍ରକାଶ କରି ସାନ୍ତ୍ୱନା ପ୍ରଦାନ ପୂର୍ବକ ସେ କହିଥିଲେ - ''ଏଇ ସାମାନ୍ୟ କଥା ପାଇଁ ପୁଣି ରୁଦ୍ର ସୁଧାନିଧି ପଢ଼ିବୁ ?'' ଏହାପରେ ସେ ବ୍ୟାଖ୍ୟା ଆରମ୍ଭକଲେ - ରସ କଅଣ ଓ କେତେ ପ୍ରକାର । ରୁଦ୍ରସୁଧାନିଧିରେ ବିଭିନ୍ନ ରସର ପ୍ରୟୋଗ ଓ ଅବତାରଣା । ଏହିପରି ଆଠଗୋଟି ରସ ସମ୍ପର୍କରେ କହିବା ପରେ ମୋତେ ପଚାରିଲେ କେଉଁ ରସ ବାକି ରହିଲା ?

ମୁଁ କହିଲି - 'ଅଦ୍‌ଭୁତ ରସ'

ତାଙ୍କର ଉତ୍ତର ଥିଲା - ''ତାହାହିଁ ରୁଦ୍ରସୁଧାନିଧିର ମୁଖ୍ୟ ରସ''

ମୁଁ ଆକାଶରୁ ପଡ଼ିବା ଭଳି ଚାହିଁ କହିଲି - ଷୋଡ଼ଶ ଶତାବ୍ଦୀରେ ଅଦ୍‌ଭୁତ ରସକୁ ଉପଜୀବ୍ୟ କରି ଗ୍ରନ୍ଥ ରଚନା !!

କିଞ୍ଚିତ ପରିହାସ ଭଙ୍ଗୀ ପ୍ରକାଶ ପୂର୍ବକ ତାଙ୍କ ଉତ୍ତର - ''ତୁମ ସନ୍ଦେହ ମୋଚନ ନିମନ୍ତେ ଅସ୍ତ୍ର ଆମ୍ଭ ନିକଟରେ ଅଛି ''।

ମୁଁ ଚକିତ ହୋଇ ଚାହିଁ ରହିଥିଲି-

ସେ ପୁନର୍ବାର ବୁଝାଇବାକୁ ଲାଗିଲେ - ଚମତ୍କାରିତା ପ୍ରଦର୍ଶନ ଅଦ୍‌ଭୁତ ରସର ମୂଳଲକ୍ଷ୍ୟ । ଘଟଣାକ୍ରମେ ରୁଦ୍ର ସୁଧାନିଧିରେ ପ୍ରସଙ୍ଗ ଗୁଡ଼ିକୁ ସେ ଏଭଳି ଭାବେ ସଂଯୋଜନା କରିଦେଲେ ଯେ ତାହା ପରସ୍ପରର ସମ୍ପର୍କିତ ହୋଇ ମୋର ସକଳ ସନ୍ଦେହକୁ ସମ୍ପୂର୍ଣ୍ଣ ରୂପେ ଦୂର କରିଦେଲା ।

ଦ୍ୱିତୀୟ ଘଟଣାଟି ଠିକ୍ ତାହାର ପରଦିନ କଥା । ରୁଦ୍ର ସୁଧାନିଧି ଗ୍ରନ୍ଥକୁ କେନ୍ଦ୍ରକରି ଆଉ ଏକ ପ୍ରଶ୍ନ - ରୁଦ୍ର ସୁଧାନିଧିରେ ସୁଫୀ ଧର୍ମର ପ୍ରଭାବ ଅଛିକି ?

ମୋର ଉତ୍ତର ଥିଲା - ହଁ !

ସେ କାରଣ ଜାଣିବାକୁ ଚାହିଁଥିଲେ ଏବଂ ମୁଁ ଗ୍ରନ୍ଥ ମଧ୍ୟରୁ ପ୍ରସଙ୍ଗ ଗୁଡ଼ିକୁ ସମ୍ପର୍କିତ କରି ଉତ୍ତର ବୁଝାଇଦେଇ ଥିବାରୁ ସେ ସନ୍ତୁଷ୍ଟ ହୋଇଥିଲେ ।

କହିବା ବାହୁଲ୍ୟ, ମୋର ଗବେଷଣା ସହ 'ରୁଦ୍ର ସୁଧାନିଧି'ର ବିଶେଷ କିଛି ସମ୍ପର୍କ ନଥିଲା ।



Digitized by srujanika@gmail.com

ଗବେଷକ ଛାତ୍ରର ସୁବିଧା ଅସୁବିଧା ହୃଦୟଙ୍ଗମ କରିବା ସହ ତାଙ୍କୁ ବହି ପ୍ରଦାନ କରି ସାହାଯ୍ୟ କରିବାରେ ତିଳେ ହେଲେ କାର୍ପଣ୍ୟ ନଥିଲା । ବହୁ ସମୟରେ ଛାତ୍ର ଛାତ୍ରୀଙ୍କ ଘରେ ହଠାତ୍ ପହଞ୍ଚିଯାଇ କିଏ କିପରି ପଢ଼ାପଢ଼ି କରୁଥିଲା ତାହାର ମଧ ତଦାରଖ କରୁଥିଲେ । ଏ ସମ୍ପର୍କରେ ସେ କହୁଥିଲେ - 'କାହାଘରେ ପହଞ୍ଚି ଯିବାପରେ ତାହାର ବହିଗୁଡ଼ିକୁ ଦେଖିନେଲେ ସେ କିପରି ପଢ଼ାପଢ଼ି କରୁଛି ମୁଁ ଠିକ୍ ଧରିନିଏ । ନିର୍ଦ୍ଦେଶନାର ଏହି ଅନନ୍ୟଗୁଣ ଗୁଡ଼ିକ ଯୋଗୁ ଆମେ କହୁଥିଲୁ - As a Guide he is second to none".

ପାରିବାରିକ ଜୀବନରେ ତାଙ୍କ କକାଝିଅ ଭଉଣୀ ଥିଲେ ମୋର ମାଇଁ । ତାଙ୍କ ତୃତୀୟ ଓ ସାନଝିଅ ବିବାହ ପରେ ଆମ ପରିବାର ସହ ବିଭିନ୍ନ ସୂତ୍ରରେ ଜଡ଼ିତ ହୋଇଥିଲେ ବି ଆମ ଭିତରେ ସବୁଠାରୁ ଶ୍ରେଷ୍ଠ ସମ୍ପର୍କଥିଲା - ଗୁରୁ-ଛାତ୍ରୀ ସମ୍ପର୍କ । ତାଙ୍କ ଅଧୀନରେ ଗବେଷଣା କ୍ରମରେ ମୋର ସଂଖ୍ୟା ଥିଲା ସତର । କେଜାଣି କେମିତି ତାଙ୍କ ଅଧୀନରେ କାମ କରୁଥିବା ଛାତ୍ର ଛାତ୍ରୀଙ୍କ ମଧ୍ୟରୁ ଗବେଷଣା ନିମନ୍ତେ ମୋ ଉପରେ ଅଧିକ ନିର୍ଭରଶୀଳ ହୋଇଯାଇଥିଲେ । ମୁଁ କାମ ଆରମ୍ଭ କଲାବେଳକୁ ତାଙ୍କ ରଚିତ 'ଓଡ଼ିଆ ଲେଖକ ପରିଚୟ' ଶେଷ ପର୍ଯ୍ୟାୟରେ ପହଞ୍ଚିଥାଏ । ସେଥିରେ ସହାୟତା କରିବା ଥିଲା ମୋର ପ୍ରଥମ କାର୍ଯ୍ୟ । ଏହା ପରେ ପରିମଳା, ମଧ୍ୟକାଳୀନ ସାହିତ୍ୟ, ପ୍ରେମଭକ୍ତି ବ୍ରହ୍ମଗୀତା, ବ୍ରହ୍ମାଣ୍ଡ ଭୂଗୋଳ, ଚଉପଦୀ ଭୂଷଣ ଓ ଅନ୍ୟାନ୍ୟ କବିତା ପ୍ରଭୃତି ବହୁଗ୍ରନ୍ଥ ପ୍ରସ୍ତୁତି କାର୍ଯ୍ୟରେ ସହାୟତା କରିବା ଥିଲା ମୋ ପକ୍ଷରେ ଅତ୍ୟନ୍ତ ସୌଭାଗ୍ୟର ବିଷୟ । ମଝିରେ ବହୁବର୍ଷ ଧରି ତାଙ୍କ ଅଧୀନରେ ପ୍ରସ୍ତୁତ ନିବନ୍ଧଗୁଡ଼ିକୁ ମୋ ଦ୍ୱାରା ପଢ଼ାଇ ସାରିବା ପରେ ଦାଖଲ କରାଉଥିଲେ । ଜଗମୋହନ ରାମାୟଣ, ହରିବଂଶ, ସାରଳା ମହାଭାରତ (ସ୍ୱର୍ଗାରୋହଣ ପର୍ବ) ସମ୍ପାଦନା ନିମନ୍ତେ ଆମେ ଉଭୟେ ବହୁ ଗୀଷ୍ମର ନିଦାଘ ହୁତାଶ ଏବଂ ଦାରୁଣ ଶୀତର ହିମ ଶୀତଳ ସ୍ପର୍ଶକୁ ଅକାତରେ ହସି ହସି ଅତିକ୍ରମ କରିଥିଲୁ । ଦିନରେ ଶୁଦ୍ଧପାଠ, ନିର୍ଣ୍ଣୟ, ପ୍ରୁଫ ସଂଶୋଧନ ଆଦି ହେଉଥିବାବେଳେ ରାତ୍ରିରେ ସନ୍ଦେହ ଗୁଡ଼ିକ ଆଲୋଚିତ ହେଉଥିଲା । ଉପରୋକ୍ତ ଗ୍ରନ୍ଥଗୁଡ଼ିକର ପ୍ରସ୍ତୁତିରେ ମୁଁ ସକ୍ରିୟ ଅଂଶ ଗ୍ରହଣ କରିଥିବାରୁ ମୋ ମନରେ ମଧ କିଛି କମ୍ ଗର୍ବ ଓ ଗୌରବବୋଧ ନଥିଲା । କିନ୍ତୁ ଆଜି ସେହି ଟେବୁଲ ସେହି ଚୌକି ଏବଂ ମୋ ଘରର ସେହି ସୋଫା ଥିଲେ ବି ମୁଖ୍ୟ କର୍ତ୍ତା ନାହାନ୍ତି ।

ଡଃ ସାହୁ ଦୀର୍ଘଜୀବନ ବଞ୍ଚିବାର କାମନା କରି ମୋ ଉପରେ ତିନିଗୋଟି ଦାୟିତ୍ୱ ନ୍ୟସ୍ତ କରିଥିଲେ - (୧) ସମଗ୍ର ସାରଳା ମହାଭାରତର ଶୁଦ୍ଧ ସମ୍ପାଦନା ଆମ ଉଭୟଙ୍କ ଦ୍ୱାରା ସମ୍ପାଦିତ (୨) ଏକ ପୂର୍ଣ୍ଣାଙ୍ଗ ଜୀବନୀ ପ୍ରକାଶନ (ସଂଘମିତ୍ରା ଲେଖିଥିଲେ ବି ମୁଁ ତୋତେ ଅନେକ କଥା କହିବି ଏବଂ ତୁ ମୋ ଉପରେ ୩୦୦/୪୦୦ ପୃଷ୍ଠାର ବହୁ ତଥ୍ୟ ଭିତ୍ତିକ ଜୀବନୀ ଲେଖିବୁ । (୩) ପଞ୍ଚସ୍ତରୀ ବର୍ଷ ପୂର୍ତ୍ତି ଅବସରରେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ପ୍ରକାଶନ (ସମ୍ପୂର୍ଣ୍ଣରୂପେ ତୋର ସମ୍ପାଦନାରେ) । ତନ୍ମଧ୍ୟରୁ ସାରଳା ମହାଭାରତର କାର୍ଯ୍ୟ ଅଳ୍ପ ଆରମ୍ଭ ହୋଇଥିଲା । ମାତ୍ର କ୍ରୂର ଅବିଶ୍ୱାସୀ କାଳ ସମସ୍ତଙ୍କ ଅଗୋଚରରେ ଆସି ତାଙ୍କୁ ଆମ ନିକଟରୁ ନେଇଯିବା ଫଳରେ ତାଙ୍କ ଆଶା ହିଁ ଆଶାରେ ରହିଗଲା ।

❑ *ଅଧାପିକା, ପ୍ରାଣନାଥ ମହାବିଦ୍ୟାଳୟ*
*ଖୋର୍ଦ୍ଧା*



Digitized by srujanika@gmail.com

# ଆମ ସାର୍

ଡକ୍ଟର ଦୃପ୍ତିପ୍ରଭା ମହାନ୍ତି

ମୋ' ଶବ୍ଦ ଭିତରୁ ଆନ୍ତରିକତାର ଯେଉଁ ଅସ୍ଫୁଟ ଭାବଟି ବାହାରି ଆସେ, ସେଇ ଭାବ ସହିତ ସାମିଲ ହୋଇଯାଇଥିଲେ ମୋ' ତଥା ଆମ ସାର୍ ଡଃ କୃଷ୍ଣଚରଣ ସାହୁ। ୧୯୭୪-୧୯୭୬ ପର୍ଯ୍ୟନ୍ତ ସାର୍‌ଙ୍କ ପାଖରେ ପାଠ ପଢ଼ିଥିଲେ ହେଁ ତାଙ୍କ ସଂସ୍ପର୍ଶ ତଥା ସାନ୍ନିଧରେ ଆସିଥିଲି ପିଏଚ୍.ଡ଼ି କରିବା ସମୟରେ ଅର୍ଥାତ୍ ୧୯୭୭ ପରଠାରୁ। ସେତେବେଳେ ସେ ବାଣୀବିହାର ଓଡ଼ିଆ ବିଭାଗର ରିଡ଼ର ପଦରେ ଅଧିଷ୍ଠିତ ଥିଲେ । ତାଙ୍କର ଅଗାଧ ଜ୍ଞାନ ଓ ପାଣ୍ଡିତ୍ୟ ନିକଟରେ ମୁଣ୍ଡ ନୋଇଁ ହୋଇଯାଏ ଆପେ ଆପେ। ଜ୍ଞାନ ଗାରିମା ପରି ଧୀଶକ୍ତିର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ। ଗବେଷଣା ସଂପର୍କୀୟ କୌଣସି ଲେଖା ଦେଖାଇବା ବେଳେ ନିର୍ବୋଧଭାବେ ଚାହିଁ ରହିଥାଏ ସାର୍ କ'ଣ କହିବେ। ଲେଖା ଯେମିତି ହୋଇଥିଲେ ବି କୌଣସି କଟୁମନ୍ତବ୍ୟ ନ ଦେଇ ଧୈର୍ଯ୍ୟର ସହ ସେ ସବୁ ପଢ଼ନ୍ତି । ମନରେ ବିଶ୍ୱାସ ଆସେ - ଦୃଢ଼ତା ଆସେ, ହତାଶା ଦୂରେଇଯାଏ । ହୁଏତ ମୋ ଦେଇ କିଛି ହୋଇ ପାରିବ ଏହି ବିଶ୍ୱାସରେ। ମନୋବଳ ଓ ଦୃଢ଼ତା ସେ ଯେମିତି ଭିଆଇ ପାରନ୍ତି ସେହିଭଳି ମନଭିତରୁ ହୀନ ମନ୍ୟଭାବକୁ ସେ ଦୂରେଇ ଦେଇ ପାରନ୍ତି । ସାର୍ଥକ ମଣିଷ ସୃଷ୍ଟିକରିବାରେ ଏହି ପ୍ରୟାସ, ଆମ ସାର୍ ହିଁ କରିପାରନ୍ତି। ଏଭଳି ବ୍ୟକ୍ତିତ୍ୱକୁ ବୁଝାଇ ହୁଏ ନାହିଁ କେବଳ ଅନୁଭବ କରିହୁଏ। ଚିରନ୍ତନ ପ୍ରଜ୍ଞା ଭିତରେ ସେ ଚିର ଅମଳାନ। ଅଥଚ ସାମାନ୍ୟତମ ଅହଂ, ଗର୍ବ ବା ହେୟ ଭାବ କେବେ ବି ତାଙ୍କଠି ଦେଖିନି । ସ୍ନେହୀ - ଆତ୍ମୀୟତାର ମଣିଷଟିଏ ଥିଲେ ସିଏ। ସମସ୍ତଙ୍କ ପାଇଁ ସମଦର୍ଶୀଭାବ ତାଙ୍କ ପାଖରେ ଥିଲା । ଯେତେବେଳେ ଯିଏ ଯେମିତି ସାହାଯ୍ୟ ଚାହିଁଛି ତାଙ୍କଠୁ ପାଇଛି । କୌଣସି ସମସ୍ୟାନେଇ ତାଙ୍କ ପାଖକୁ ଗଲେ ତତ୍‌କ୍ଷଣାତ୍ କୁଣ୍ଠାବୋଧ ନକରି ସମାଧାନ କରିଦିଅନ୍ତି। ଭାରି ଆଶା-ଭରସାର ମଣିଷ ସିଏ। ତାଙ୍କ ସଂପର୍କରେ ଯେତେ କହିଲେ ବି ଅନେକ କଥା ଅକୁହା ରହିଯିବ।

ଗବେଷଣା କାର୍ଯ୍ୟରେ ସେ ନୂତନ ଦିଗ୍‌ଦର୍ଶନ ଯେଉଁଭଳି ଦିଅନ୍ତି ସେହିଭଳି ଶିଷ୍ୟ ଶିଷ୍ୟାଙ୍କର କାର୍ଯ୍ୟରେ ଉନ୍ନତି ଦେଖିଲେ ସେ ଅତୀବ ଖୁସି ହୋଇ ପଡ଼ନ୍ତି । ମୋର ମନେପଡ଼େ ଦୀର୍ଘ ୧୯ ବର୍ଷ ତଳେ ଗବେଷଣା ସମ୍ବନ୍ଧୀୟ ମୋର ପ୍ରକାଶିତ ପ୍ରଥମ ପ୍ରବନ୍ଧଟି ଝଙ୍କାରରେ ଦେଖି ସାର୍‌ଙ୍କ ଖୁସି । ଆଜି ବି ତାହା ମୋର ଅଲିଭା ସ୍ମୃତି ହୋଇ ରହିଛି। ଝୁଣ୍ଟି ପଡୁଥିବା ପ୍ରତ୍ୟେକ ସମୟରେ ସେ ଆଲୋକର ସନ୍ଧାନ ଦେଇ ରାସ୍ତା ଧରାଇଛନ୍ତି ।



Digitized by srujanika@gmail.com

ତାଙ୍କର ନିର୍ବିକାର ଚିତ୍ତରେ କର୍ମ କରିବାର ପ୍ରବୃତ୍ତିକୁ ଦେଖିଲେ ଯେ କେହି ଅଭିଭୂତ ହୋଇପଡ଼ିବ । ବିଭିନ୍ନ ପ୍ରକାରର ସମସ୍ୟା ଭିତରେ ବି କର୍ମ କରିବାର ଔଜ୍ଜ୍ୱଲ୍ୟକୁ ସେ ହରାଉ ନଥିଲେ । ତାଙ୍କ ରୁମ୍, ପରିବେଶ ତଥା ବ୍ୟକ୍ତିତ୍ୱ ଏପରିଥିଲା ଯେ ଅନେକ ସମୟରେ ବିରତ ହୋଇଥିବା ଗବେଷଣା କାର୍ଯ୍ୟ ଓ କର୍ମ କରିବାର ପ୍ରେରଣା ଓ ସାହସ ସଂଚୟ ପାଇଁ ଆମେ ସେଠିକି ଯାଇଥାଉ । ଆଜି କୌଣସି ସମସ୍ୟା ବା ଅବୁଝା ପ୍ରଶ୍ନର ଉତ୍ତର ଦେବାପାଇଁ ସାର୍ ଯେ ନାହାନ୍ତି ଭାବିଲା ବେଳକୁ ଅନେକ କିଛି ହରାଇବା ପରି ଲାଗୁଛି । ସାର୍‌ଙ୍କ ଭଳି ଜଣେ ସିଦ୍ଧ ସାହିତ୍ୟିକ ଯୋଗୀଙ୍କ ଆଶିଷ ଲାଭ କରିଥିବାରୁ ଆମେ ସର୍ବଦା ଗର୍ବ ଅନୁଭବ କରୁ । ସାର୍‌ଙ୍କ ସ୍ନେହୀଭାବ ତଥା ବାତ୍ସଲ୍ୟ ଚିର ଅଭୁଲା ।

ତାଙ୍କ ସାହିତ୍ୟିକ ଜୀବନ ସଂପର୍କରେ ପଦେ ନ କହିଲେ ଲେଖାଟି ଅପୂର୍ଣ୍ଣ ହେବ । ସେ ମୁଖ୍ୟତଃ ପ୍ରାଚୀନ ଓ ମଧ୍ୟକାଳ ସାହିତ୍ୟର ସାହିତ୍ୟିକ ବୋଲି ମନେ ହୋଇଥିଲେ ହେଁ ତାଙ୍କର ସର୍ବକାଳୀନ ସାହିତ୍ୟରେ ଯଥାର୍ଥ ଅନୁପ୍ରବେଶ ତାଙ୍କ ଅଗାଧ ଜ୍ଞାନର ପରିସୀମାକୁ ଦର୍ଶାଇଥାଏ । ଶ୍ରେଣୀଗୃହରେ ତାଙ୍କ ଉତ୍ଭଟ ନାଟକ ସଂପର୍କୀୟ ବ୍ୟାଖ୍ୟାକୁ ଆଜି ବି ଭୁଲି ହୋଇନି । ଏଥିରୁ ସ୍ପଷ୍ଟ ଯେ ଆଧୁନିକ ସାହିତ୍ୟରେ ମଧ୍ୟ ତାଙ୍କର ପ୍ରବେଶ କିଭଳି ଥିଲା । ତାଙ୍କ ଅବର୍ତ୍ତମାନରେ ଓଡ଼ିଆ ସାହିତ୍ୟ ଜଣେ ବିଶିଷ୍ଟ ସର୍ବକାଳୀନ ସାହିତ୍ୟିକ, ସମାଲୋଚକ ତଥା ଗବେଷକଙ୍କୁ ହରାଇ ବସିଲା । ଆଜି ତାଙ୍କର ମରଶରୀର ଚାଲିଗଲାବେଳେ ସାହିତ୍ୟ କ୍ଷେତ୍ରରେ ଜଣେ ଉପଯୁକ୍ତ ପଥପ୍ରଦର୍ଶକର ଯେ ତିରୋଧାନ ଘଟିଲା ଏହା ନିଶ୍ଚିତ ।

❑ *ଅଧ୍ୟାପିକା, ମହର୍ଷି ମହାବିଦ୍ୟାଳୟ,*
*ଭୁବନେଶ୍ୱର*



Digitized by srujanika@gmail.com

# ଚଳନ୍ତି - ଗୁରୁ ପ୍ରତିମା

**ଡକଟର ସନ୍ତୋଷ ତ୍ରିପାଠୀ**

- ମୁଁ କମିତି କହିବି ଯେ - ଆପଣ ଚାଲିଗଲେ ......... !!

- ବାଡି ବରକୋଳି, ନରେନ୍ଦ୍ର ପୋଖରୀ, କୃଷ୍ଣଜପାମାଳି, ଦେବୀନଈ ବାଲି - କ'ଣ କେବେ କେଉଁଠିକି ଚାଲିଯାଏ ??? ଆପଣଙ୍କ ଭାଷାରେ ଏସବୁ ଅମର ତିଜ ସାଙ୍ଗରେ ନିଜକୁ ମିଶାଇ ଦେବାଟାହିଁ ତ ଅମର । ଯିଏ ମିଶାଇ ଦେଇଛି ସେ ମରେନି, ହଜେନି, ଲିଭେନି ।

- ଅନେକଙ୍କ ଗହଣରେ ମୁଁ କେମିତି ଭୁଲିଯିବି ଯେ ଆପଣ ମୋ ପରି 'ମୋ-ମାନଙ୍କ' ପାଇଁ ଥିଲେ, ଅଛନ୍ତି ଓ ଥିବେ ଦେବୀ ନଈର ସରୁବାଲିର ଶେଷ ହୀନ ସ୍ମୃତି ପରି ଅମର, ଅକ୍ଷର ଓ ଅମ୍ଳାନ ।

- ସେଇଥିପାଇଁ ମୋ ସ୍ନାୟୁକୁ ଚହଲାଇ ଦେଇଛି ଗୋଟିଏ ପ୍ରଶ୍ନ ଅମ୍ଳାନମାନେ କ'ଣ ଚିତା ଧୂଆଁରେ ମ୍ଳାନ ହୋଇଯା'ନ୍ତି, ଲିଭି ଯା'ନ୍ତି, ଚାଲିଯା'ନ୍ତି ???

ଯେବେଠାରୁ ଦେବୀନଈ କୂଳରେ ପାଦ ଦେଇ ଗୁରୁଆଜ୍ଞା ଅବନାପାଠ ପଢ଼ିବସିଲି ସେବେଠାରୁ କାନକୁ କାନ ଦେଇ ଜାଣିବାକୁ ପାଇଲି - ଆପଣ ଏଇ ନଈ ପଠାରେ ଚାଲିଛନ୍ତି ନଟମାଷ୍ଟ୍ରଙ୍କ ହାତଧରି । 'ସାହୁମାଷ୍ଟ୍ରେ' - ସର୍ବନାମ ଧରି ଅନେକଙ୍କୁ ମଧ ଚାଲି ଶିଖେଇଛନ୍ତି । ଆପଣ କୁହନ୍ତୁତ ଦେବୀନଈ ବୁଲିଆକୁ ନଈପଠାରେ ଦେଖା ହେଲେ ମୁଁ ତାଙ୍କୁ କେମିତି କହିବି ଯେ - ଆପଣ ଚାଲିଗଲେ ??? ଏବେ ବି ଆପଣଙ୍କ ପାଦଚିହ୍ନକୁ ସେମାନେ ଗୌରବର ସହିତ ସରୁବାଲିରେ ସାଇତି ରଖିଛନ୍ତି ।

ସହଜ ବୁଝିଲା ଶିଷ୍ୟଟିଏ ହୋଇଯିବା ପରେ ମୁଁ ଅନେକବାର ଅନେକ ବଡ଼ପଣ୍ଡାଙ୍କଠାରୁ ଶୁଣିବାକୁ ପାଇଲି ସାହୁମାଷ୍ଟ୍ରେ ଆମ ନଈକୂଳିଆମାନଙ୍କ ନାଁ ବଢ଼େଇ ଦେଇଛନ୍ତି । ସେ ଖୁବ୍ ଚାଲି ପାରିଛନ୍ତି, ଆହୁରି ଚାଲିବେ ମଧ । ଅଷ୍ଟ ଦଶକର ପ୍ରଥମ ଚୈତାଳୀ ସକାଳ - । ଜ୍ୟୋତିବିହାରର ନରମ ବାତାବରଣ ଭିତରେ ଏକଲବ୍ୟମାନଙ୍କ ଭିତରେ ଗୁଂଜରଣଟିଏ ଖେଳିଗଲା - ସାହୁମାଷ୍ଟ୍ରେ ଆସିଛନ୍ତି - ରୁଦ୍ର ସୁଧାନିଧି ଉପରେ ନୂଆ କଥା କହିବେ । ତାଙ୍କ କହିବାରେ ଏକ ସ୍ୱତନ୍ତ୍ର ବାଙ୍କଚୂଲିଆ ଢ଼ଙ୍ଗ ବି ରହିଛି । ଆଚାର୍ଯ୍ୟ ସ୍ୱର୍ଗତ ଗୋପାଳ ଚନ୍ଦ୍ର ମିଶ୍ରଙ୍କଠାରୁ ଜାଣିବାକୁ ପାଇଲୁ - ପାଶ୍ଚାତ୍ୟ ପ୍ରୟୋଗବାଦୀ କଳାଭଙ୍ଗୀର ଦିବ୍ୟାସ୍ତ୍ର ସହିତ ପ୍ରାଚ୍ୟ ପାରଂପରିକ ଅମୋଘ ଶରକୁ ମିଶାଇ ଦେଇ



Digitized by srujanika@gmail.com

ଆପଣ ଓଡ଼ିଆ ସାହିତ୍ୟର ବନ୍ଧୁର ନଈ ପଠାରେ ଖୁବ୍ ଚାଲିଛନ୍ତି । ଆପଣଙ୍କ ଭାରି-ପଦପାତ ଭାଷା-ସାହିତ୍ୟର ସ୍ରୋତକୁ ତୀବ୍ର, କ୍ଷୀଣ ଓ ପ୍ରଚଣ୍ଡ କରି ତୋଳିଛି ।

ଅନେକ ଏକଲବ୍ୟଙ୍କ ସମ ମୋର ହୃଦୟସ୍ଥ ପ୍ରତୀକ୍ଷାମାତଣା ଇଚ୍ଛା ଶକ୍ତି ଚାହିଁ ରହିଥାଏ - କେତେବେଳେ ଏରୁଣ୍ଡି ଡେଇଁ ବିଦ୍ୟା ପ୍ରକୋଠେରେ ପଡ଼ିବ ଆପଣଙ୍କ ଦ୍ରୋଣାଚାର୍ଯ୍ୟୀୟ ପଦପାତ । ଶେଷରେ ତେଜସ୍ୱୀ ଆର୍ଯ୍ୟଋଷିଟିଏ ପରି ଧୀର-ଶାନ୍ତ ଅଥଚ ଗମ୍ଭୀର ପଦଚିହ୍ନଟିଏ ଆଙ୍କି ଦେଇ ଆପଣ ପ୍ରବେଶ କଲେ ବିଦ୍ୟା ପ୍ରକୋଷ୍ଠକୁ । ପ୍ରାୟତଃ ସମବେତ ସମସ୍ତ ଏକଲବ୍ୟ ଛିଡ଼ା ହୋଇଗଲେ, ନମସ୍କାରବି କଲେ । ମାତ୍ର କରିବି ନ କରିବି, ଛିଡ଼ା ହେବି ହେବି ମଧରେ ମୁଁ ବସି ରହି ଦେଖୁଥିଲି ତାଳୁରୁ ତଳିପା - ଆଉ ମୋ ଆଖି ସାମ୍ନାରେ ଭାସି ଉଠୁଥିଲା - ପ୍ରାଚୀନ ସାହିତ୍ୟ, କହେ କୃଷ୍ଣ ଦାସ କବି, ରୁଦ୍ର ସୁଧାନିଧି, ସାରଳା ମହାଭାରତ..... ଏପରି ଅନେକ ସାହିତ୍ୟ-ଦେବୀ-ନଈର ଏକ ଏକ ଗୀତିମୟ, ଭାବମୟ, ନାଦମୟ ତରଙ୍ଗ । ହଠାତ୍ ଯନ୍ତ୍ର ଚାଳିତ ବିଦ୍ୟୁତ୍ ବିଞ୍ଚଣାର ଚଇତାଳିରେ ଆପଣଙ୍କ ପାଚିଲା କେଶଗୁଡ଼ାକ ଏଣେତେଣେ ଉଡ଼ି ବୁଲିଲେ । ମୋତେ ଲାଗିଲା ଦେବୀ ନଈ ଅନେକ ଧାର ହୋଇ ନାଟୀ-ସିଠାଳ, କୁଣ୍ଡେଶ୍ୱର ଦେଇ ଯେପରି ବହି ଆସୁଛି ।

ସତ କହିବାକୁ ଗଲେ ଆମେ ଜ୍ୟୋତି ବିହାରୀଗଣ ଆପଣଙ୍କ ନିର୍ମିତ-ଅର୍ଜୁନ, ଯୁଧିଷ୍ଠିର, ଅଶ୍ୱଥମା, ଦୁର୍ଯ୍ୟୋଧନ - ନଥିଲୁ - ଥିଲୁ ଆପଣଙ୍କ ପ୍ରକୃଷ୍ଟ ପ୍ରଯତ୍ନ - ପ୍ରାଚୀନ ସାହିତ୍ୟ, କହେ କୃଷ୍ଣଦାସ କବି ଇତ୍ୟାଦି ଅମୋଘ ଅସ୍ତ୍ରାନୁପ୍ରେରିତ ଓ ପରୋକ୍ଷାଶାସିତ ଏକ ଏକ ଏକଲବ୍ୟ । ମୋର ଏବେ ବି ସେହି ଦିନର ଚଲାଦୃଶ୍ୟ ମନେ ଅଛି - ଆପଣ ଏକଲବ୍ୟମାନଙ୍କୁ ବୁଢ଼ାଙ୍ଗୁଳି ନମାଗି ମାଗିଥିଲେ - ''ଓଡ଼ିଆ ସାହିତ୍ୟକୁ ଅନେକ ରକ୍ତନଦୀ ସନ୍ତରଣ କରିଯିବାକୁ ହେବ । ଏଥିପାଇଁ ମୁଁ ପ୍ରତ୍ୟେକ ସାହିତ୍ୟପ୍ରାଣ ଛାତ୍ରଙ୍କଠାରୁ ପ୍ରତିଦିନ ମାତ୍ର ଏକ ଘଣ୍ଟା ଭାଷା ସାହିତ୍ୟର ସ୍ୱାଭିମାନ ନିମନ୍ତେ ନିଷ୍ଠାପର ସାଧନାର ସମୟ ମାଗୁଛି । ଯଦି ଏତିକି ମାତ୍ର ସମୟ ଦେଇପାରିବ ତେବେ ମନେରଖ - ତାଳପତ୍ର ପୋଥିରେ ଓଡ଼ିଆ ଜାତିର ପରିଚୟ ପତ୍ର ଲୁଚି ରହିଛି । ଏହି ପରିଚୟ ବିଶ୍ୱ ଦରବାରରେ ପ୍ରଚାରିତ କରାଇବାର ଦାୟିତ୍ୱ ସାହିତ୍ୟ ପ୍ରାଣ ଛାତ୍ରର'' ।

ଆଜି ଆପଣ ତାଳପତ୍ର ପୋଥିଟିଏ ପାଲଟି ଗଲେ । ମୁଁ ଜାଣେ ଆପଣ ପୃଷ୍ଠାପରେ ପୃଷ୍ଠା ଲେଉଟି ଚାଲିବେ । ଆପଣଙ୍କ ସ୍ୱାଭିମାନର ପଦପାତ ଓ ପୃଷ୍ଠା ଉନ୍ମୋଚନ ଆମକୁ ଚଲାଉଥିବ, ଚଲାଉଥିବ - ଯେତେଦିନ ପର୍ଯ୍ୟନ୍ତ ଦେବୀ ନଈ ଚାଲିଥିବ ଏବଂ ବାଡ଼ି ବରକୋଳି ନଈର ସୁଅରେ ଭାସି ଚାଲିଥିବ । ଏଥର କୁହନ୍ତୁ ତ - ମୁଁ କେମିତି କହିବି ଆପଣ ଦେବୀ ନଈକୂଳିଆଙ୍କ ପାଖରୁ ଚାଲିଗଲେ ???

❑ *ଅଧ୍ୟାପକ, ପତ୍ର ବିନିମୟ ନିର୍ଦ୍ଦେଶାଳୟ*
*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ଅନୁପସ୍ଥିତର ବାସ୍ନା

**ଡକ୍‌ଟର ହରପ୍ରସାଦ ପରିଚ୍ଛା ପଟନାୟକ**

ମହାଯାତ୍ରାର ପଥିକ ପଛକୁ ଫେରି ଚାହେଁନା । ଶର, ଶବ୍ଦ, ସୁଯୋଗ ଓ ସମୟ ଲେଉଟି ଦେଖେନା କେବେ । ଏପରି ଭାଗ୍ୟ ଯଦିଓ ସମସ୍ତଙ୍କ ପାଇଁ ଅବଶ୍ୟମ୍ଭାବୀ ତେବେ ଯିଏ ପ୍ରଥମେ ପାଇଯାଏ ସେ ନିସ୍ତାର ପାଏ ଏ ମାୟାରୁ । ମୃତ୍ୟୁ ସଂପର୍କରେ ଅସଂଖ୍ୟ ପୃଷ୍ଠା ଲେଖାଯାଇଛି, ମୃତ୍ୟୁକୁ ଅନୁଭବ କରିନଥିବା ମଣିଷମାନଙ୍କ ଦ୍ୱାରା । ଥରେ ଯିଏ ଅନୁଭବ କରିଦେଲା, ଏପରି ଅମୃତ ପାଇଗଲା ଯେ କିପରି ତାକୁ ବର୍ଣ୍ଣନା କରିବ ତାର ଭାଷା ନ ପାଇ ନୀରବ ରହିଗଲା । ଆଖି ଆଉ ଖୋଲିଲା ନାହିଁ, ନିଷ୍ପନ୍ଦ ହେଲା ହୃଦୟ, ସାରା ଶରୀର ହିମଶିତଳ ହୋଇଗଲା ।

ଏଭଳି ଏକ ଅନୁଭୂତି ପାଇବା ପାଇଁ କୃଷ୍ଣ ସାର୍ ସେଦିନ ଯେପରି ବ୍ୟାକୁଳ ହେଉଥିଲେ ତାହା ମୋ ପାଇଁ ଯେତିକି ଆଶ୍ଚର୍ଯ୍ୟ ଜନକ ଥିଲା ସେତିକି ଅସହ୍ୟ । ତାପରଦିନ ସକାଳୁ ଶୁଣିଲି କୃଷ୍ଣ ସାର୍ ଆଉ ନିଦରୁ ଉଠୁ ନାହାନ୍ତି ।

କେଉଁ ଏକ ସଭାରେ କୃଷ୍ଣ ସାର୍ ଭାଷଣ ଦେଉଥିବା ପ୍ରଥମେ ଶୁଣିଥିଲି ୯୭୬ ମସିହାରେ । କାହିଁକି କେଜାଣି ସେଦିନଠୁ ତାଙ୍କ ପ୍ରତି ମୋର ଗଭୀର ସମ୍ମାନବୋଧ ବଢ଼ିଯାଇଥିଲା । ସେ ଭାଷଣରେ ବିଷୟବସ୍ତୁ ଭରି ରହିଥିଲା, ଭରି ରହିଥିଲା ପ୍ରକାଶ ଭଂଗୀର ସରଳତା ଓ ଆତ୍ମୀୟତା । ସାଧାରଣ କଥା କହିଲା ବେଳେ ଯେପରି ହସ, ବକ୍ତୃତା ଦେଲାବେଳେ ମଧ୍ୟ ସେହିପରି । ପରେ ପରେ ବହୁ ଜାଗାରେ ଦେଖାହୁଏ ଏବଂ ଖୁବ୍ କମ୍ କଥାବାର୍ତ୍ତା ମଧ୍ୟରେ ଦେଖା ସରିଯାଏ । କିନ୍ତୁ ସମ୍ମାନ ଓ ଶ୍ରଦ୍ଧା ସେପରି ଅକ୍ଷୁର୍ଣ୍ଣ ରହିଥାଏ ।

କିଛି ବର୍ଷ ତଳେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଡ଼ଃ ଆଇଅପ୍ପା ପାନିକରଙ୍କ ମୁଖ୍ୟ ସଂପାଦକତ୍ୱରେ 'ମଧ୍ୟଯୁଗୀୟ ଭାରତୀୟ କବିତା'ର ଇଂରାଜୀ ଅନୁବାଦ କରିବାର ଯୋଜନା ହାତକୁ ନେଇଥିଲେ । ଓଡ଼ିଆ ବିଭାଗର ସଂପାଦନା ଦାୟିତ୍ୱରେ କୃଷ୍ଣ ସାର୍ ଥିଲେ । କବି ଦୀନକୃଷ୍ଣ ଦାସଙ୍କ କବିତା ଅନୁବାଦ କରିବା ପାଇଁ ମତେ ଡଃ ଆଇଅପ୍ପା ପାନିକର ଓ ପରେ ପରେ କୃଷ୍ଣ ସାର୍ ଚିଠି ଲେଖିଲେ । ଦୀନକୃଷ୍ଣ ଦାସଙ୍କ କବିତାର ଅର୍ଥ, ଛନ୍ଦ ଓ ଲାଳିତ୍ୟକୁ ଇଂରାଜୀ ଭାଷାରେ ଫୁଟାଇବା ମୋ ପକ୍ଷରେ କଷ୍ଟ ହୋଇଥିବା ଯୋଗୁଁ ମୁଁ କୌଣସି ଉତ୍ତର ନଦେଇ ନୀରବ ରହିଗଲି । କିଛିଦିନ ପରେ କୃଷ୍ଣ ସାର୍ ଏକ ଔପଚାରିକ ଚିଠି ଲେଖି ଅନୁବାଦ କରିବା ପାଇଁ ମତେ ସ୍ମରଣ କରାଇଦେଲେ । ତଥାପି ମୁଁ ନୀରବ ରହିଲି । ତା'ର କିଛିଦିନ ପରେ ମତେ ଟେଲିଫୋନ୍‌ରେ ନୀରବତାର କାରଣ



Digitized by srujanika@gmail.com

ପଚାରି ଅନୁବାଦ କରିବା ପାଇଁ ପ୍ରଣିଥରେ ପ୍ରବର୍ତ୍ତାଇଲେ । ସେତେବେଳେ ମୋର ଅକ୍ଷମତାର କାରଣ ମୁଁ ତାଙ୍କୁ ସ୍ପଷ୍ଟ ଭାବରେ ଜଣାଇଲି । ସାର୍ ଠୋ ଠୋ ହସିଲେ, କହିଲେ ''ସାବାସ୍ ଏମିତି ପିଲାମାନେ ହିଁ କବି ହୁଅନ୍ତି । ସେ ମୋ ସହ ଏକମତ ହୋଇଥିଲେ ଯେ ଗୋଟିଏ ଭାଷାରୁ ଆଉ ଗୋଟିଏ ଭାଷାକୁ ଅନୁବାଦ କଲାବେଳେ ଅନୁବାଦକମାନେ ଦକ୍ଷ ନହୋଇଥିଲେ ମହାକବିମାନଙ୍କୁ କ୍ଷତବିକ୍ଷତ କରିପକାନ୍ତି । ତୁମେ କବି ହୋଇଥିବାରୁ କବିଙ୍କୁ ଚିହ୍ନି ଉପଯୁକ୍ତ ସମ୍ମାନ ଦେଇଛ ।'' ଏହି ଟେଲିଫୋନ୍ ଆଲୋଚନା ପରେ ତାଙ୍କର ମୁକ୍ତଚିନ୍ତନ, ଯାହା ଜଣେ ସଂପାଦକର ସର୍ବନିମ୍ନ ଆବଶ୍ୟକତା, ପ୍ରତି ମୋର ସମ୍ମାନବୋଧ ଆହୁରି ବଢ଼ିଗଲା ।

ତାଙ୍କ ସଂପାଦିତ ବିଭିନ୍ନ ପୁରାଣର ଶୁଦ୍ଧ ସଂସ୍କରଣ ପଢ଼ିଲେ ଜଣେ ଜ୍ଞାନୀ ଗବେଷକର ଶ୍ରମ, ନିଷ୍ଠା ଓ ବିଚାରବୋଧ ସହଜରେ ଅନୁମାନ କରିହେବ । ତାଛଡ଼ା ସେ ଉଚ୍ଚମନା ଓ ବନ୍ଧୁକାଙ୍କ୍ଷୀ ହୋଇଥିବା ଯୋଗୁଁ ଅନେକଙ୍କ ହୃଦୟକୁ ନିଜର କରିପାରିଥିଲେ ।

ସାହିତ୍ୟ ଏକାଡେମୀ ତରଫରୁ ଆୟୋଜିତ ଗତ ତା ୨୮-୨-୯୭ ଓ ତା ୧-୩-୯୭ ରିଖ ଦିନ ଆର୍ତ୍ତ ବଲ୍ଲଭ ମହାନ୍ତି ସ୍ମାରକୀ ବକ୍ତୃତା ଦେବାପାଇଁ ଡ଼ଃ ବିଦ୍ୟାନିବାସ ମିଶ୍ର ଆସିଥିଲେ । ଉକ୍ତ ସଭାରେ ମୁଖ୍ୟ ଅତିଥି ହେବାପାଇଁ ମୁଁ ତାଙ୍କୁ ଯେତେବେଳେ ଟେଲିଫୋନ୍‌ରେ ଅନୁରୋଧ ଜଣାଇଲି ସେ ଏପରି ଭାବେ ଗଦ୍ ଗଦ୍ ହୋଇ 'ହଁ' ଭରିଲେ ଯେ ମୋର ଆନନ୍ଦର ସୀମା ରହିଲା ନାହିଁ । ସାହିତ୍ୟ ଏକାଡେମୀ ସହ ତାହା ଥିଲା ତାଙ୍କର ଶେଷ ସଂପର୍କ ।

ପ୍ରାଚୀନ ସାହିତ୍ୟର ଗବେଷଣାରେ ସେ ଯେପରି ବୁଦ୍ଧିସଂପନ୍ନ, ନିଜର ଚେହେରା ଓ ବ୍ୟକ୍ତିତ୍ୱରେ ମଧ୍ୟ ମର୍ଯ୍ୟାଦାବନ୍ତ ପ୍ରାଚୀନ ପୁରୁଷ ପରି ।

ଉପସ୍ଥିତଙ୍କ ଅପେକ୍ଷା ଅନୁପସ୍ଥିତର ବାସ୍ନା ଓ ସ୍ମୃତି ମନକୁ ଅଧିକ ଘାରେ । ସେ ବାସ୍ନା ଏ ଜୀବନ ଥିବା ଯାକେ ଆଉ ହଜିବାର ନୁହେଁ ।

❑ *ଭି.ଆର୍-୫୫, ୟୁନିଟ୍-୬*

ଭୁବନେଶ୍ୱର



Digitized by srujanika@gmail.com

# ସିଏ ଚାଲିଗଲେ

ଡକ୍ଟର ନାରାୟଣ ସାହୁ

ସମସ୍ତଙ୍କୁ ଦିନେ ନା ଦିନେ ଯିବାକୁ ପଡ଼ିବ । କିନ୍ତୁ ହଇରାଣ ହରକତ ହେଇ ଗଲେ ନିଜ ଲୋକମାନଙ୍କୁ ବେଶି ବାଧେ । ସାର୍ ଗଲେ । ସେଥିପାଇଁ ସମସ୍ତଙ୍କ ମନରେ ଦୁଃଖ । ଛାତ୍ର ଛାତ୍ରୀ, ଚିହ୍ନା ପରିଚିତ ସମସ୍ତେ ଝୁରି ହଉଛନ୍ତି ତାଙ୍କ ପାଇଁ । କଥା କଥାକେ ସେ ସଦାବେଳେ 'ଆଉ' ଶବ୍ଦଟି ଲଗେଇଥାନ୍ତି । ସେ 'ଆଉ' ଶବ୍ଦ ଆଉ ଶୁଭିବ ନାହିଁ ।

ସାର୍‌ଙ୍କ ବିହୁନେ କାନ୍ଦୁଛନ୍ତି ତାଙ୍କ ସାଙ୍ଗସାଥୀ ଆଉ ଆତ୍ମୀୟ ସ୍ୱଜନ । ସବୁଠୁଁ ବେଶି କାନ୍ଦୁଛନ୍ତି ତାଳପତ୍ର ପୋଥି ଆଉ ସେମାନଙ୍କୁ ଆଶ୍ରାକରି ବଞ୍ଚୁଥିବା ଉଇଦଳ ଏବଂ ସେ ସବୁକୁ ମଛିଚକଟି ଘାଣ୍ଟୁଥିବା ମଣିଷମାଳ । ପ୍ରାଚୀନ ସାହିତ୍ୟର ସିଏ ବୋଧେ ଶେଷରଥୀ ! ତାଙ୍କପରେ ପୋଥି ଗବେଷଣା ନିଶ୍ଚୟ ହେବ ବାଟବଣା । ସତ କହିବାକୁ ଗଲେ ଗବେଷଣା ହେବ, ହେଲେ ପୋଥିକୁ ଭଲପାଉଥିବା ମଣିଷର ଅଭାବ ଘଟିବ ।

ସିଏ ଚାଲିଗଲେ । ଯେଉଁ ଶୂନ୍ୟସ୍ଥାନ ସୃଷ୍ଟିହେଲା, ତାହା ଆଉ ପୂରଣ ହେଇ ପାରିବନି । ଈଶ୍ୱର କରନ୍ତୁ, ତାଙ୍କ ଆତ୍ମା ଶାନ୍ତି ପାଉ ।

❑ *ଅଧ୍ୟାପକ, ପତ୍ରବିନିମୟ ନିର୍ଦ୍ଦେଶାଳୟ*
*ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର*



Digitized by srujanika@gmail.com

# ସାର୍‌ଙ୍କୁ ଯେମିତି ଜାଣିଛି

**ଶ୍ରୀଯୁକ୍ତ ବିଜୟ କୁମାର ଦାଶ**

ସାର୍‌ଙ୍କୁ ଜାଣିଥିଲି ଗତ ୧୪ବର୍ଷ ଧରି, କିନ୍ତୁ ୧୯୮୩ରୁ ୧୯୮୯, ୬ବର୍ଷ ଅତି ନିକଟରୁ । ୧୯୮୩ରେ ମୁଁ ଓଡ଼ିଆ ବିଭାଗକୁ ବଦଳି ହୋଇ ଗଲି ୯ ଡଃ ବଂଶୀଧର ମହାନ୍ତି ଥାନ୍ତି ବିଭାଗୀୟ ମୁଖ୍ୟ । କିନ୍ତୁ ଅଧିକାଂଶ ପ୍ରଶାସନିକ ଓ ପରୀକ୍ଷା ସମ୍ବନ୍ଧୀୟ କାର୍ଯ୍ୟଭାର ନ୍ୟସ୍ତଥିଲା ସାର୍‌ଙ୍କ ଉପରେ । ୧୯୮୫ରେ ଡଃ ମହାନ୍ତି ଅବସର ନେବାପରେ ୧୯୮୯ ଏପ୍ରିଲ ପର୍ଯ୍ୟନ୍ତ ସାର୍ ବିଭାଗୀୟ ମୁଖ୍ୟ ଦାୟିତ୍ୱରେ ରହିଲେ । ସମସ୍ତଙ୍କ ସହିତ ସଂପର୍କ ଖୁବ୍‌ଭଲ । ଆମେ ୫ଜଣ ଅଣ ଶିକ୍ଷକ କର୍ମଚାରୀ - ମୁଁ, ମହାପାତ୍ରବାବୁ, ଭୋଳ, କେଦାର ଓ ଗୋକୁଳି - କାହା ଉପରେ ସେ କେବେ ପ୍ରଭୁତ୍ୱ ଜାହିର କରି ନାହାନ୍ତି - କିନ୍ତୁ ସେ ନିର୍ଦ୍ଦେଶ ଦେଇଥିବା ସମସ୍ତ କାର୍ଯ୍ୟ ଠିକ୍ ଭାବରେ ହୁଏ । ତାଙ୍କର ମଧୁର ବ୍ୟବହାର କାହାର ଭୁଲିବାର ନୁହେଁ । ସାର୍‌ଙ୍କ ଅଧୀନରେ ସହକାରୀ ହିସାବରେ କାର୍ଯ୍ୟ କରିବାରେ ଯେଉଁ ଆନନ୍ଦ ମୁଁ ପାଇଛି ତାହା ଅନ୍ୟତ୍ର ମିଳିବ ନାହିଁ । ଆମ୍ଭମାନଙ୍କୁ ଗଭୀର ସ୍ନେହ କରିବା ସହିତ ଆମ ଉପରେ ପ୍ରଗାଢ଼ ବିଶ୍ୱାସ ସେ ରଖୁଥିଲେ । ତେଣୁ ବୋଧହୁଏ ସବୁକାମ ଠିକ୍ ଠିକ୍ ହେଉଥିଲା । ହଷ୍ଟେଲ୍‌ର ୱାର୍ଡେନ୍ ଏବଂ ଛାତ୍ର ସଂସଦର ଉପଦେଷ୍ଟା ହିସାବରେ କାର୍ଯ୍ୟ କଲାବେଳେ ଅନେକ ଜଟିଳ ପରିସ୍ଥିତିକୁ ସେ କିପରି ଭାବରେ ଅତି ଚତୁରତା ଓ ସାହସିକତାର ସହ ସାମନା କରୁଥିଲେ ତାହା ମୁଁ ବହୁ ନିକଟରୁ ଦେଖିଛି ଏବଂ ଜାଣିଛି । ସାର୍ ଚାଲିଯିବାର ଖବର ଶୁଣି କିଛି ସମୟ ନିର୍ବାକ୍ ହୋଇ ଯାଇଥିଲି । ଆଗ ପଛ ହୋଇ ସମସ୍ତେ ନିଶ୍ଚୟ ଯିବେ । କିନ୍ତୁ ଜୀବନ ଥିବାଯାଏ ତାଙ୍କର ସ୍ନେହଶ୍ରଦ୍ଧା ଭୁଲି ହେବ ନାହିଁ । ଭଗବାନ ତାଙ୍କର ଆତ୍ମାକୁ ଶାନ୍ତିରେ ରଖନ୍ତୁ - ଏହାହିଁ ପ୍ରାର୍ଥନା ।

❑ *ପୂର୍ବତନ ସହକାରୀ*
*ଓଡ଼ିଆ ବିଭାଗ*



Digitized by srujanika@gmail.com

# ତାଙ୍କଠାରେ ଋଣୀ ମୁଁ

ଶ୍ରୀଯୁକ୍ତ ଦ୍ୱିଜବର ଭୋଳ

୧୯୭୧ ମସିହା ଜୁଲାଇ ମାସଠାରୁ ମୁଁ ସାର୍‌ଙ୍କ ସହିତ ପରିଚିତ ହେଲି । ସାରେ ସେତେବେଳେ କଟ୍ଟନା ଏରିଆରେ ଘର ଭଡ଼ା ନେଇ ରହିଥାନ୍ତି । ମୁଁ ସେଇ ବାଟଦେଇ ମୋ ଗାଁକୁ ଯିବା ଆସିବା କରେ । ମୁଁ ଗାଁକୁ ଗଲାବେଳେ ସାର୍‌ଙ୍କ ବସା ବାଟ ଦେଇଯାଏ ଓ ତାଙ୍କ ଘରେ ଚା, ଜଳଖିଆ ଖାଇଯାଏ । ଏହି ପରି କିଛି ଦିନ ଗଲା ପରେ ସାରେ ବାଣୀ ବିହାରରେ କ୍ୱାଟର ପାଇଲେ । ଦିନକର ଘଟଣା, ମୋତେ ସାରେ କହିଲେ ଭୋଳ ତୁ ଅପରେସନ ହୋଇ ପଡୁନୁ । ମୁଁ ଟିକେ କୁଣ୍ଠାବୋଧ କଲି ସେଇ ଅପରେସନ କଥାଶୁଣି । ଦିନେ ଠିକ୍ କଲି ଅପରେସନ ହେବି । ୬ ନମ୍ବର ଡାକ୍ତରଖାନାରେ ମୋର ଅପରେସନ ହେବ ବୋଲି ସବୁ ଠିକ୍ ଠାକ୍ ହୋଇ ସାରିଥାଏ । କେବଳ ସିଟ୍ ମିଳିଲା ନାହିଁ । ୬ନମ୍ବର ଡାକ୍ତର ମହାଶୟ କହିଲେ ତୁମେ ଚାରିଟା ବେଳକୁ ଆସ ସିଟ ଦିଆଯିବ । ମୁଁ ମୋର ବଡ ଭାଇଙ୍କୁ କହିଲି ଚାଲ ବାଣୀବିହାର । ଆସି ପ୍ରଥମେ ସାରଙ୍କ ଦେଖା କଲି । ସାରେ କହିଲେ 'କିରେ କ'ଣ ଆସିଲୁ ଭାରି, ଅପରେସନ ହେଲାନିକି ?' ସାରେ ମୋତେ ଏତିକି ଯେମିତି କହିଛନ୍ତି ମୁଁ କାନ୍ଦି ପକାଇଲି । ସାରେ କହିଲେ 'ସାମାନ୍ୟ ଅପରେସନ ପାଇଁ କାନ୍ଦୁଛୁ । ତୁ ଏତେ ବାଟରେ ଅପରେସନ ହେଉଛୁ ଆମେ ଦେଖିବାକୁ ଯାଇ ପାରିବୁତ ? 'ତୁ ସହିଦ ନଗର ଡାକ୍ତ ଜଗନ୍ନାଥ ବାବୁଙ୍କ କ୍ଲିନିକ୍‌ରେ ହେଉନୁ । ରହ, ମୁଁ ପଚାରେ' । ୧୯୮୪ ମସିହା ଡିସେମ୍ବର ମାସ ସାରେ ସେତେବେଳେ ଥାନ୍ତି ସମସ୍ତ ହଷ୍ଟେଲର ଓ୍ୱାର୍ଡେନ, ତାଙ୍କୁ ଉତ୍କଳ ୟୁନିଭରସିଟିରୁ ଗୋଟେ ଫୋନ୍ ଦିଆଯାଇଥାଏ । ସାରେ ସଙ୍ଗେ ସଙ୍ଗେ ଡାକ୍ତର ଜଗନ୍ନାଥ ସାରଙ୍କ ପାଖକୁ ଫୋନ କଲେ । ଡାକ୍ତର ମହାଶୟ କହିଲେ ସାରେ ଭୋଳକୁ କୁହନ୍ତୁ ୪ଟା ବେଳକୁ ମୋ ପାଖକୁ ଆସିବାକୁ । ମୁଁ ଏକା ନ ଯାଇ ସାରେ ମୋ ସାଥିରେ ଗଲେ । ଡାକ୍ତରଙ୍କ ସହିତ କଥାବାର୍ତ୍ତା ହୋଇ କହିଲେ କାଲି ତୋର ଅପରେସନ୍ ହେବ । ତା ଆରଦିନ ମୋର ଅପରେସନ ହେଲା । ଅପରେସନ ଦିନ ୪-୩୦ ମିନିଟ୍‌ରେ ସାରେ କିଛି ଫଳ ଓ ଗୋଟେ ପାଉଁରୁଟି ନେଇ ମୋତେ ଦେଖିବାକୁ ଗଲେ । ମୁଁ ଯେତେଦିନ ଡାକ୍ତରଙ୍କ କ୍ଲିନିକ୍‌ରେ ରହିଛି ସାରେ ସବୁଦିନ ମୋ ପାଖକୁ ଯାଇ ମୋର ଖବର ବୁଝିଛନ୍ତି ଓ ଅପରେସନ ଖର୍ଚ୍ଚ କଥା ସେ ବୁଝିଛନ୍ତି ।

ସାର୍‌ଙ୍କ ପୁଅର ବାଣୀବିହାର କ୍ୱାଟରରେ ବିଭାଘରହେଲା ଦିନ ଆମେ ଭୋଜି ଖାଇବାକୁ ଯାଇଥିଲୁ । ସେଦିନ ଭୋଜିଖାଇ ସାରିଲା ବେଳକୁ ରାତି ପ୍ରାୟ ସାଢ଼େ ୯ କିମ୍ବା ୧୦ଟା ଭିତରେ ହେବ ।



Digitized by srujanika@gmail.com

ସାର୍‌ଙ୍କର ବଡ଼ ଭଉଣୀ ଆମ ଗାଁ ପାଖରେ ବିଭା ହୋଇଛନ୍ତି । ତାଙ୍କର ଭଣଜା ଯାଇଥାନ୍ତି ସାର୍‌ଙ୍କ ପୁଅ ବିଭାଘରକୁ । ସେ ଭୋଜିଖାଇ ଘରକୁ ଆସିବେ ବୋଲି ବାହାରିଲେ । ମୁଁ ତାଙ୍କୁ କହିଲି ମୁଁ ଯିବି । ତାଙ୍କର ଭଣଜା କହିଲେ ବାହାର । ମୁଁ ସେଇ ସମୟରେ ସାର୍‌ଙ୍କୁ କହିଲି ସାରେ ମୁଁ ଘରକୁ ଯିବି । ସାରେ କହିଲେ 'ଏତେ ରାତିରେ କିପରି ଯିବୁ ?' ମୁଁ କହିଲି ସାରେ ଆପଣଙ୍କ ଭଣଜା ଯିବେ ମୁଁ ତାଙ୍କରି ସାଥିରେ ଯିବି । ସେ ସଙ୍ଗେ ସଙ୍ଗେ ତାଙ୍କ କ୍ୱାଇଁ ଡଃ ବିଜୟ କୁମାର ସେନାପତିଙ୍କୁ ଡାକି କହିଲେ, 'ଭୋଳ ଘରକୁ ଯିବ । ତା ପିଲା ପାଇଁ କ'ଣ ଟିକେ ଦେଇ' । ସେ ଶୁଣିଲେନି । ସାରେ ନିଜେ ଯାଇ ୪ଟା ବଡ଼ ଅମୁଲ ଡବା ଆଣି ଗୋଟେ ଡବାରେ ମାଛ ଭଜା, ଆଉ ଗୋଟେ ଡବାରେ ମାଛତରକାରୀ ଏବଂ ଦୁଇଟି ଡବାରେ ଖିରୀ ଭରିଦେଲେ । ତାଙ୍କୁ ସବୁ ଥୋଇ ସାରି ପୁଣି ଘରକୁ ଯାଇ ମିଠା (ରସଗୋଲା) ଦଶଟା ଗୋଟେ ଟିଫିନ୍ କ୍ୟାରିଅରରେ ଆଣି ତାଙ୍କ ଭଣଜାକୁ କହିଲେ, 'ଭୋଳକୁ ତା ବସାରେ ଛାଡିଯିବୁ' । ମୁଁ ଯେତେବେଳେ ସାରଙ୍କ ଘର ପୁରୁଣା ଭୁବନେଶ୍ୱର ଯାଏ ସାର ତାଙ୍କ ବାଡ଼ିରେ ପଡ଼ିଥିବା କଦଳୀ କେତେଥର ମୋତେ ଦେଇଛନ୍ତି ।

ଏବେ ଏଇ ଗୋଟାଏ ମାସ ହେବ । ସାର୍‌ଙ୍କର ଗୋଟେ ଚେକ୍ ନେଇ ମୁଁ ତାଙ୍କ ଘରକୁ ଯାଇଛି । ତାଙ୍କ ବାଡ଼ିରେ ପଡ଼ିଥିବା କଦଳୀ ଗଛଟା ଭାଙ୍ଗି ପଡ଼ିଥାଏ । ସେଥିରେ କଦଳୀ ଥାଏ । ସାରେ ମୋତେ ତାଙ୍କ ବାଡ଼ିକୁ ନେଇ କହିଲେ କଦଳୀ ଗଛକୁ କାଟି ଦେ, ସେ କଦଳୀ ତକ ନେଇ ଯା । ମୁଁ କହିଲି ସାରେ ଏତେ କଦଳୀ ମୁଁ କ'ଣ କରିବି । ଟିକିଏ ବିବ୍ରତ ହୋଇ କହିଲେ, 'ଫୋପାଡ଼ିଦେବୁ । କହିଲା କ'ଣ ନା କ'ଣ କରିବି ।' ମୋର ଯେତେବେଳେ ପଇସା ପତ୍ର ଅଭାବ ହୁଏ ସେତେବେଳେ ମୁଁ ସାର୍‌ଙ୍କୁ କୁହେ 'ସାରେ ଆଜି କିଛି ପଇସା ଦେବେ' । ସେ ମୋତେ ବହୁତ ସାହାଯ୍ୟ କରିଛନ୍ତି । କାହିଁକି ସେ ମୋତେ ଏତେ ସ୍ନେହ କରନ୍ତି ତାହା ମୁଁ ଜାଣେ ନାହିଁ । ମୁଁ ଭାବେ ବୋଧେ ଆର ଜନ୍ମରେ ମୁଁ ସାରଙ୍କର ଆତ୍ମୀୟ ଥିଲି । ସାର୍‌ଙ୍କର ଯେତେବେଳେ ଶ୍ରାଦ୍ଧ କିମ୍ୱା ପର୍ବ ପର୍ବାଣି ହୁଏ ସାର୍ ଆସି ମୋତେ କହିଯାଆନ୍ତି 'ଭୋଳ ଅମକ ତାରିଖରେ ଆମ ଘରକୁ ଯିବୁ' । ଜୀବନଥିଲା ତାଙ୍କର ଗରିବ ମାନଙ୍କ ପ୍ରତି ସ୍ନେହ ସାଉଁଟାର ଜୀବନ । ଭାବ ପ୍ରବଣତାର ଆବେଗମୟୀ ନଦୀଧାରା । ଆଜି ସେ ଆମ ପାଖରୁ ଚାଲିଗଲେ ସତ କିନ୍ତୁ ତାଙ୍କର ସାହାଯ୍ୟ, ସହାନୁଭୂତିକୁ ମୁଁ ଭୁଲି ପାରିବି ନାହିଁ । ଶେଷରେ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛି ସାର୍‌ଙ୍କ ଆତ୍ମାର ସଦ୍‌ଗତି ହେଉ ।

❑ *ସ୍ନାତକୋତ୍ତର ଓଡ଼ିଆ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ*



Digitized by srujanika@gmail.com

# ସ୍ମୃତିର ସଙ୍କେତ

**ଶ୍ରୀଯୁକ୍ତ ଲକ୍ଷ୍ମଣ ସାହୁ**

ଏଇଗଲା ଶିବରାତ୍ରୀ ଦିନ ସାର୍‌ଙ୍କ ନିକଟରେ ମୋର ଏକ ଜରୁରୀ କାମ ଥିଲା । ଭାଇଙ୍କଠାରୁ ଶୁଣିଲି ସାର କାଲି ଶାନ୍ତିନିକେତନ ଯିବେ । ଆସିବାରେ ଡେରି ହୋଇପାରେ । ଶୁଣିଲାପାରେ ସେଇ ଦ୍ୱିପହରେ ସାର୍‌ଙ୍କ ପାଖକୁ ଚାଲିଲି । ସାର୍ ନିଘୋଡ଼ ନିଦ୍ରାରେ ବିଶ୍ରାମ ନେଇଥାନ୍ତି । କଲିଂ ବେଲ୍ ଶୁଣି ମୋତେ ତାଙ୍କ ବେଡ୍ ପାଖକୁ ଡାକିଲେ । ବିନା ଦ୍ୱିଧା, ବିନା ସଂକୋଚରେ ତାଙ୍କ ପାଖରେ ମୋର କେବଳ ନୁହେଁ ସମସ୍ତଙ୍କର ଅବାଧ ପ୍ରବେଶ । ତାଙ୍କ ପାଖରେ ମୋର ଅଳି ଅଝଟ ଅନେକ । ଶୋଇ ରହି ସେ ମୋ କାମଟି କରିଦେଲେ । ତା'ପର ଦିନ ସାର୍ ଶାନ୍ତିନିକେତନ ଗଲେ ।

ହଠାତ୍ ସେ ଅସୁସ୍ଥ ହୋଇ ପଡିଥିବା ଓ କଟକ କ୍ଲିଂକ ନର୍ସିହୋମ୍‌ରେ ଶଯ୍ୟାଶାୟୀ ହୋଇଥିବା କଥା ମୁଁ ଯେତେବେଳେ ଭାଇ (ଡକ୍‌ଟର ଉଦୟନାଥ ସାହୁ)ଙ୍କ ଠାରୁ ଶୁଣିଲି ମନବଡ଼ ତାଙ୍କୁ ଦେଖିଯିବାକୁ ଛଟ ପଟ ହେଲା । ଗତ ୩ ତାରିଖ (ଗୁରୁବାର) ସକାଳ ନ'ଟାରେ ତାଙ୍କ ସହ ମୋର ଦେଖା । ବେଡ୍‌ରେ ପଡ଼ି ରହି ସେ ମୋତେ ବାରମ୍ବାର କଡ଼ଲେଉଟାଇ ଚାହୁଁଥିଲେ । ତାଙ୍କ ପାଟିରୁ କିଛି ଅସଷ୍ଟ ଅକୁହା କଥା ମୋ ପାଇଁ ବାହାରି ଆସୁଥିଲା । ମୁଁ ସେ ତାଙ୍କର ଦୁଇହାତ ବାରମ୍ବାର ଟେକି ମୋ ପାଇଁ ଆଶୀର୍ବାଦ ଭରି ଦେଉଥିଲେ । ସେ କେବଳ ମୋ ପାଇଁ ନୁହଁନ୍ତି ସମସ୍ତଙ୍କର ଅତି ଆପଣାର କୃଷ୍ଣସାର.....

ସାର୍ ଏତେ ଶୀଘ୍ର ଶାନ୍ତିର ସ୍ଥାନ ଖୋଜିନେବେ ଆମ ସମସ୍ତଙ୍କୁ ଦୁଃଖ ଦେଇ ତାହା ସମସ୍ତଙ୍କ କଳ୍ପନା ବାହାରେ ଥିଲା । ମଣିଷ 'କାଳ'ର ଅଧୀନ - କାଳ ଫାଶରୁ ସେବା କିପରି ଠକି ରହିଥାନ୍ତେ? ହେଲେ କାଳ ଯେ ଏତେ ଶୀଘ୍ର ଦାଉ ସାଧିବ ତାହାହିଁ ସବୁରି ମନରେ ଗଭୀର ଦୁଃଖ ଭରିଦେଉଛି ।

ସାର୍ ଥିଲେ ଆମ ସମସ୍ତଙ୍କର ଏକ ଆଲୋକ ବର୍ତ୍ତିକା । ଯେତେବେଳେ ତାଙ୍କ ପାଖକୁ ଗଲେ ଚୁପ୍ ଚାପ୍ ଗଭୀର ଧ୍ୟାନ ଦେଇ କିଛି ନା କିଛି ଲେଖୁଥିବେ । ପହଞ୍ଚିଗଲେ ସେଇଠି ତାଙ୍କ କାମ ବନ୍ଦରଖି ଆମ କାମରେ ହାତ ଦିଅନ୍ତି । କାମବେଳେ ସମୟକୁ ଭୁଲି ଯାଆନ୍ତି । ମୋ ଗବେଷଣା ସନ୍ଦର୍ଭ ପ୍ରସ୍ତୁତିପାଇଁ ଯାଇଛି । ଆଲୋଚନା କରୁ କରୁ ଦେଖିଛି ତାଙ୍କ ଗାଧୋଇବାର, ପୂଜା କରିବାର ସମୟ ଗଡ଼ି ଚାଲିଗଲେ ବି ସେଥିପ୍ରତି ନଜର ନଦେଇ ସେ ସେମିତି ପୂର୍ବବତ୍ ଗପିଚାଲିଥିବେ । ପାଖରେ ରଖାଯାଇଥିବା ଚା' ଅଣ୍ଟା ହୋଇଯାଏ । ଥରେ ଥରେ ତାଙ୍କୁ କହି ଆସିଥିବା ସମୟରେ ନ ପହଞ୍ଚିଲେ ସେ ବିରକ୍ତ ହୁଅନ୍ତି । ସତରେ ସେ ବିରକ୍ତ ହୁଅନ୍ତି ନାହିଁ । ଥଟ୍ଟା କରନ୍ତି - କହନ୍ତି କେତେ



Digitized by srujanika@gmail.com

ଅଳସୁଆ ତୋ ଦେଇ ଏ ଗବେଷଣା କାର୍ଯ୍ୟ ହେବ ନାହିଁ । ସତରେ ମୁଁ ଦେଖେ - ସାର୍ କେଡ଼େ ବଡ଼ି ଭୋରୁ ଉଠି ପ୍ରାତଃ ଭ୍ରମଣ କରି ଆସି ପ୍ରାଚୀନ ପୋଥି ଗବେଷଣାରେ କିବା ଅଭିଧାନ ପାଇଁ ଶବ୍ଦ ବାଛିବାରେ ହେଉ । ଅଥବା ପ୍ରବନ୍ଧ ପ୍ରସ୍ତୁତି କରିବାରେ ହେଉ କିଛି ନା କିଛିରେ ସେ ଏକ ନିଷ୍ଠ ହୋଇଥାଆନ୍ତି ।

ଥରେ ମୋ' ସଂପାଦନାରେ ପ୍ରକାଶ ପାଉଥିବା 'ନିୟନ୍ତା' ପାଇଁ ତାଙ୍କଠୁ ସାକ୍ଷାତ୍‌କାରଟି ଆଣିବାକୁ ଗଲି । ସେ ମୋ ଉପରେ ବିରକ୍ତ ହୋଇ ପଡ଼ିଲେ । କହିଲେ - ସାକ୍ଷାତ୍‌କାର ଦେଇ ଆତ୍ମ ପ୍ରଚାର କରିବାକୁ ମୋର ବେଳ କାହିଁ ? ବରଂ ଅନ୍ୟ କିଛି ନେ । ମୋର ମନେ ପଡୁଛି ଆତ୍ମ ପ୍ରଚାର ବିମୁଖ, ସରଳ, ଅମାୟିକ, ଦୟାଳୁ, ହୃଦୟବାନ ସାର୍‌ଙ୍କଠାରୁ କେତେ କଷ୍ଟରେ ସାକ୍ଷାତକାର ଟି ପ୍ରସ୍ତୁତ କରିଥିଲି ।

ଆଜି ଦୁଃଖ ଲାଗୁଛି ସେଇଥି ପାଇଁ, ସାର୍ ସେଦିନ କଥା ପ୍ରସଙ୍ଗରେ ଅନେକ କିଛି କରିବାକୁ ତାଙ୍କର ବାକି ଅଛି ବୋଲି କହିଥିଲେ । ଆଉ ମଧ ସୂଚାଇ ଦେଇଥିଲେ - ଦିନ ମୋର ସରିଯିବ, କାମ କିନ୍ତୁ ସରିବନି ସବୁକିଛି ଅଧା ହୋଇ ରହିଯିବ । ତାଙ୍କୁ ମୋର ପ୍ରଶ୍ନଥିଲା ସାର୍ ପ୍ରାଚୀନ ପୋଥି ଉପରେ ଆପଣ କେବଳ ବୁଡ଼ିରହିଛନ୍ତି - କିଛି ମୌଳିକ ଲେଖା କବିତା ଉପନ୍ୟାସ ଲେଖୁଛନ୍ତି କି ? ସେ ହସିଉଠି କହିଥିଲେ 'ଏଇ ଶ୍ରୀକୃଷ୍ଣଙ୍କର ବହୁମୁଖୀ ଜୀବନକୁ ନେଇ 'ରଙ୍ଗାବତାର' ଉପନ୍ୟାସ ଶେଷ କରିଛି । ଯାହା ଏପର୍ଯ୍ୟନ୍ତ ଅପ୍ରକାଶିତ ଅଛି । ଭାବୁଛି ଏହାର ପରବର୍ତ୍ତୀ 'ଧର୍ମ ରାଜ ଯୁଧିଷ୍ଠିର' ନାମକ ଏକ ବ୍ୟଙ୍ଗାତ୍ମକ ଉପନ୍ୟାସ ଲେଖିବି ।'' ସେ ଦିନର ଉପନ୍ୟାସର ପରିକଳ୍ପନାଟି କରିଥିବା ସାରାଂଶକୁ ସଂକ୍ଷେପରେ ମୋତେ କହିଥିଲେ । ବହୁବାର ମୁଁ ସେଇ ଉପନ୍ୟାସଟି କେବେ ଆରମ୍ଭ କରିବେ ବୋଲି ପଚାରି ଆସୁଛି । ହଁ କରୁଛି - କରୁଛି କହି ସେ ରହିଗଲେ ।

ତାଙ୍କ ବସିବା ଚେୟାର ଟେବୁଲ ଆଜି ଶ୍ରୀହୀନ ଦେଖାଯାଉଛି ସତ, ସେ ଯେ ନାହାନ୍ତି, ଏକଥା ପରତେ ହେଉନି । ତାଙ୍କର ସ୍ମୃତି ଆମର ଚିରନ୍ତନ ଅଭୁଲା ହୋଇ ରହିବ । ସେଇ ଶାନ୍ତି ନିରାମୟ ଦେବଲୋକରୁ ତାଙ୍କ ଆଶୀର୍ବାଦ ଆମ ପାଇଁ ବର୍ଷିଯାଉଥିବ । ସେ ପରା ସଂପୂର୍ଣ୍ଣ ଆମର 'ଚିର ନମସ୍ୟ' ।

❑ *ଅଧ୍ୟାପକ,*

*ମହାନଦୀ ବିହାର ମହିଳା ମହାବିଦ୍ୟାଳୟ*

*କଟକ - ୪*



Digitized by srujanika@gmail.com

# ଆମ ସାରେ

**ଶ୍ରୀଯୁକ୍ତ ରାଜକିଶୋର ସାହୁ**

ସାର୍ ଆଉ ନାହାନ୍ତି । ପ୍ରତିଦିନ ସନ୍ଧ୍ୟାରେ ସେ ଆସର ଆଉ ଜମୁନି । ସେ ଶୂନ୍ୟସ୍ଥାନ ପୂରଣ କରିବ ଆଉ କିଏ ? ପ୍ରତିଦିନ ସନ୍ଧ୍ୟାରେ ସେ ଆସନ୍ତି ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ବସନ୍ତି । ସେହି ଷ୍ଟୁଲ ଉପରେ । ଆଉ ମିଶନ୍ତି ଆମ ଖଟିରେ । ସେ ତ ପିଲାଙ୍କ ସାଙ୍ଗରେ ପିଲା ଟୋକାଙ୍କ ସାଙ୍ଗରେ ଟୋକା ଆଉ ବୁଢ଼ାଙ୍କ ସାଙ୍ଗରେ ବୁଢ଼ା । ଆଉ କିଏ କହିବ ଯେତେବେଳେ ଆମ ସାଙ୍ଗରେ ବସିଥାନ୍ତି ସେ ଜଣେ ଏତେ ବଡ଼ ପ୍ରଫେସର ବୋଲି । କେତେକ ଲୋକେ ପସନ୍ଦ କରନ୍ତିନି ସାର୍‌ଙ୍କ ଆମ ସହିତ ମିଶିବା ଓ ବସିବାକୁ । ସାର୍ କିନ୍ତୁ ତାଙ୍କୁ କଡ଼ା ଜବାବ ଦେଇଛନ୍ତି । ଆମ୍ଭେ ସାର୍‌ଙ୍କର ଛାତ୍ର ନୋହୁଁ । ତଥାପି ସେ ଆମର ସାର୍ । ଆମମାନଙ୍କ ମଧ୍ୟରେ (ଦୋକାନ ଭାଇ) ଯଦି କିଛି ବିଷୟରେ ଯୁକ୍ତି ତର୍କ ଲାଗିଥାଏ , ସମାଧାନ କରନ୍ତି ସାର । ଅପେକ୍ଷା କରିଥାଉ ସାର୍‌ଙ୍କ ମତାମତକୁ । ମାନିଯାଉ ଧୀରସ୍ଥିର ଭାବରେ । ଦୋକାନକୁ ଆସୁ ଆସୁ ଖୋଜନ୍ତି ଆମ ବେଣୁକୁ । ଆଉ ବେଣୁ ଗୋଟେ ଫର୍ମୁଲା ଜାଣିଛି, ସାର୍‌କୁ ରଗାଇବା ପାଇଁ ସାର୍ ଯେଉଁ କାମ ପାଇଁ କହିଥାନ୍ତି ବେଣୁକୁ ସେହି କାମଟିକୁ କରିମଧ ମିଛରେ କହେ ମୁଁ କରିନି ଏବଂ ଅପେକ୍ଷା କରେ ସାର୍ କିପରି ବିରକ୍ତ ହୁଅନ୍ତୁ । କିନ୍ତୁ କାହିଁ ସାର୍‌ଙ୍କର ବିରକ୍ତ ହେବା ତ ଆମେ କେବେ ଦେଖିନୁ, କି ରାଗିବାର ଆମେ ଦେଖିନୁ । ସାର୍‌ଙ୍କର କି ଧୈର୍ଯ୍ୟ !

ମୋ ସାନଭାଇ ଗୋଟେ ବଡ଼ ହୁଣ୍ଡା । ତାର କଥାବାର୍ତ୍ତା ବି ହୁଣ୍ଡାଳିଆ । ସାର୍‌ଙ୍କ ସାଙ୍ଗରେ ତାର ଭାରି ଥଟା ମଜାହୁଏ । ତା' ପ୍ରଶ୍ନର ସେ ମଜାମଜା ଉତ୍ତର ଦିଅନ୍ତି । ଆମେ ହସି ହସି ବେଦମ ହେଉ ।

ଆମେ ବିଶ୍ୱାସ କରିନଥିଲୁ ଯେ, ସାର୍ ଆମଠାରୁ ୧୫ ଦିନ ଭିତରେ ବିଦାୟ ନେଇଯିବେ । ସାର୍ ଯେତେବେଳେ ୧୫ ଦିନ ପୂର୍ବରୁ ଶେଷଥର ପାଇଁ ଦୋକାନକୁ ଆସିଥିଲେ, ଖାଲି କହୁଥିଲେ ମୁଁ ଭାରି ଝଡ଼ି ଗଲିଣି । ମୋ ପ୍ୟାଣ୍ଟ ଗୁଡାକ ଭାରି ଢ଼ିଲା ହୋଇଗଲାଣି । ମୁଁ ତାଙ୍କୁ ବେଲ୍‌ଟ ଭିଡ଼ିବା ପାଇଁ କହିଥିଲି । ତାଙ୍କ ଝଡ଼ିଯିବା ଭିତରେ ସେ ଏତେବଡ଼ ରୋଗର ଶିକାର ହୋଇ ସାରିଥିଲେ ଆମେ ବିଶ୍ୱାସ କରିପାରିନଥିଲୁ । ବାସ୍ ଏତିକି, ତାପରେ ଯାହା, ଘରେ ବେଡ଼ରେ ଦେଖା । ଶେଷ ପର୍ଯ୍ୟନ୍ତ ସେ କେବେ ବି କହିନାହାନ୍ତି ମୋର କିଛି ହୋଇଛି । ଖାଲି କହୁଥାନ୍ତି ମୋର କିଛି ହୋଇନି ତୁମ୍ଭେମାନେ ମୋପାଇଁ ଜମା ବ୍ୟସ୍ତ ହୁଅନି ।

ସାର୍ କିନ୍ତୁ ଆଉ ଆସିବେନି କି ସେହି ଷ୍ଟୁଲ ଉପରେ ଆଉ ବସିବେନି । କିନ୍ତୁ ଆମର ଯେତେବେଳେ ସେ ଷ୍ଟୁଲ ଉପରେ ନଜର ପଡୁଛି, ସାର୍‌ଙ୍କର ମୁଖ ମଣ୍ଡଳ ଆମ ଆଖି ଆଗରେ ନାଚି ଉଠୁଛି । ସାର୍ ଆଉ ଶରୀରରେ ସିନା ଆସିବେନି କିନ୍ତୁ ଆମ ମନଭିତରେ, ଦୃଷ୍ଟି ଭିତରେ ସେ ସବୁଦିନେ ଆସିବେ ଏବଂ ଆମକୁ କିଛି ଉପଦେଶ ଦେଇ ଖୁସି ଗପକରି ଚାଲିଯାଉଥିବେ ।

❑ *ପଦ୍ମିନୀ ବସ୍ତ୍ରାଳୟ, ଉତ୍ତରଦ୍ୱାର ଲିଙ୍ଗରାଜ ମନ୍ଦିର*
*ଭୁବନେଶ୍ୱର - ୨*



Digitized by srujanika@gmail.com





ପ୍ରଫେସର କୃଷ୍ଣ ଚରଣ ସାହୁ, ପତ୍ନୀ ଶ୍ରୀମତୀ ସରଳା ଦେବୀଙ୍କ ସହ

Digitized by srujanika@gmail.com



ଝିଅମାନଙ୍କ ଗହଣରେ ପ୍ରଫେସର କୃଷ୍ଣ ଚରଣ



ଶ୍ରେଷ୍ଠ ଛାତ୍ରୀ ସଂଘମିତ୍ରା, ବିଜୟଲକ୍ଷ୍ମୀ ଏବଂ ଛାତ୍ର ଉଦୟଙ୍କ ଗହଣରେ ପ୍ରଫେସର କୃଷ୍ଣଚରଣ

Digitized by srujanika@gmail.com



ସ୍ନାତକୋତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟରେ ସହକର୍ମୀ ଏବଂ
ଆଦରଣୀୟ ଛାତ୍ର-ଛାତ୍ରୀମାନଙ୍କ ଗହଣରେ ପ୍ରଫେସର କୃଷ୍ଣ ଚରଣ



ଜନ୍ମଦିନ ଉପଲକ୍ଷେ ଆୟୋଜିତ ସମ୍ବର୍ଦ୍ଧନା ଅବସରରେ ପ୍ରଫେସର କୃଷ୍ଣ ଚରଣ

Digitized by srujanika@gmail.com







ଷଷ୍ଠିପୂର୍ତ୍ତି ଉପଲକ୍ଷେ ଆୟୋଜିତ ସମ୍ବର୍ଦ୍ଧନା ଅବସରରେ ପ୍ରଫେସର କୃଷ୍ଣ ଚରଣ

Digitized by srujanika@gmail.com

